

# ନେତାଜୀ ସୁଭାଷ : ଏକ ଅନିର୍ବାଣ ଶିଖା

ଶ୍ରୀ ନରସିଂହ ମିଶ୍ର



# ନେତାଜୀ ସୁଭାଷ :
# ଏକ ଅନିର୍ବାଣ ଶିଖା

ଲେଖକ :

**ଶ୍ରୀ ନରସିଂହ ମିଶ୍ର,** ଏମ୍. ଏ.

ଗ୍ରନ୍ଥମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ, ସୁତାହାଟ, କଟକ

ପ୍ରଥମ ମୁଦ୍ରଣ : ୧୯୮୭

ମୂଲ୍ୟ : ଟ ୨୮-୦୦
ସାଦା ବନ୍ଧେଇ : ଟ ୨୪-୦୦

ମୋର ପ୍ରିୟ ନାତି ନାତୁଣୀ

**ଲିପି, ବାଠୁ, ମିଠୁ ଓ ରୋମାନୀ**

ହାତରେ ।

ଜେଜେବାପା/ଅଜା

# ପୁସ୍ତକ-ପ୍ରବେଶ

ସୁଭାଷଚନ୍ଦ୍ର ବୋଷ ଭାରତୀୟ ଯୁବଶକ୍ତିର ପ୍ରତୀକ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନ୍ ରଥୀ । ଭାରତର ମୁକ୍ତି ସଂଗ୍ରାମରେ ସୁଭାଷଙ୍କର ଭୂମିକା ଏକାଧାରରେ ବହ୍ନ୍ୟୁଦ୍ଦୀପକ ଓ ଅଲଙ୍ଘନୀୟ । ସେ ଥିଲେ ବିପ୍ଳବର ଏକ ଆଖ୍ୟାତ ଆଗ୍ନେୟଗିରି । ବହ୍ନିମାନ ବ୍ୟକ୍ତିତ୍ୱର ପରିପ୍ରକାଶ । ପରିସ୍ଥିତି ସହିତ ସାଲିସ୍ କରିବାକୁ ସେ ଘୃଣା କରୁଥିଲେ ତାଙ୍କ ଭାଷାରେ, "ସାଲିସ୍ ହେଉଛି ମାନସିକ ମୁହ୍ୟମାନତାର ଚିହ୍ନ ଓ ଏହା ଉଦ୍ଦାମତାର ପରିପନ୍ଥୀ ।"

ଆଗାମୀ ବଂଶଧରମାନଙ୍କ ପାଇଁ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ ଏକ ସ୍ୱପ୍ନକଳ୍ପ । ସୁଭାଷଚନ୍ଦ୍ର ବୋଷଙ୍କ ଜୀବନୀ ସେତେବେଳେ ଏକ ପୌରାଣିକ ଆଖ୍ୟାୟିକା ପରି ପ୍ରତୀୟମାନ ହେଉଥିବ । ବାସ୍ତବତାର ଦୂର ଦିଗନ୍ତକୁ ସେତେବେଳର ସ୍ୱାଧୀନତା ସଂଗ୍ରାମୀମାନେ ଅପସରି ଯାଇ ଏକ ଅସ୍ପଷ୍ଟ ଅବଚ୍ଛାୟା ପରି ମନେହେଉଥିବେ । ଆଗାମୀ ଯୁବମାନସକୁ ସତ୍ୟ ଓ ବାସ୍ତବତାର ଜୀବନ୍ତ ତଥ୍ୟସମ୍ଭାର ଉପହାର ଦେବାପାଇଁ ଏହା ମୋର ଏକ କ୍ଷୀଣ ପ୍ରଚେଷ୍ଟା । ଆଜିର ଯୁବସମାଜ ତଥା ଆଗାମୀ ଦିନର ଜନମାନସ ପାଇଁ ଏହା କିଛି ମାତ୍ରାରେ ପ୍ରୋତ୍ସାହନର ପାଥେୟ ଯୋଗାଇଲେ ଶ୍ରମ ସାର୍ଥକ ହେବ ।

ଭୁବନେଶ୍ୱର — ନରସିଂହ ମିଶ୍ର

## ( ୧ )

ଉଦ୍ୟାନଟି ଅତ୍ୟନ୍ତ ଲୋଭନୀୟ ଥିଲା । ବହୁବର୍ଣ୍ଣ ପୁଷ୍ପର ବିଚିତ୍ର ସମାହାର । ସମସ୍ତଙ୍କ ମଧ୍ୟରେ ସୌନ୍ଦର୍ଯ୍ୟର ନିବିଡ଼ ପ୍ରତିଯୋଗିତା ଚାଲିଛି । ନିଜର ରୂପବିଭବ ପ୍ରକାଶ କରିବାରେ ସମସ୍ତେ ସ୍ୱତନ୍ତ୍ର ଶୈଳୀ ଗ୍ରହଣ କରିଛନ୍ତି । ଚମତ୍କାର···ଚମତ୍କାର ଏ ଶୋଭାସଙ୍ଗମ ! ତା'ରି ଭିତରେ ଏଇ ତ କିଏ ମଲ୍ଲି ପୁଷ୍ପଟିଏ, ବିରାଟ ସୌନ୍ଦର୍ଯ୍ୟମେଳାରେ ମାଟି ପ୍ରଦୀପ ପରି ମିଞ୍ଜି ମିଞ୍ଜି ହୋଇ ଜଳୁଛି । ତାରାଭରା ଆକାଶ ତଳେ କ୍ଷୀଣ ଆଲୋକବର୍ତ୍ତୀ ଖଦ୍ୟୋତଟିଏ । ଅପ୍ରଚୁର ଆଲୋକରେ ପ୍ରଚୁର ଆଶାର ଉଚ୍ଛ୍ୱାସ । ସୌନ୍ଦର୍ଯ୍ୟ-ସମ୍ଭାର ଭିତରେ ତା'ର ଅବଦାନ ସେତେ ଆକର୍ଷଣୀୟ ନୁହେଁ । ସବୁରି ଭିତରେ ସେ ତା'ର ସତ୍ତା ହରାଇଛି । ଲଜ୍ଜାପାଟଳ ମୁଖମଣ୍ଡଳ ଅର୍ଦ୍ଧାବନତ; ତଥାପି ଅନ୍ତିଦୂର ଅଙ୍କଙ୍କପାରେ ସେ ପଛେଇ-ଯାଇନି, ମହକରେ ସାରା ଉଦ୍ୟାନକୁ ମହକିତ କରୁଛି ।

ଶିଶୁଟି ନିର୍ନିମେଷ ନୟନରେ ତା'ରି ଆଡ଼କୁ ଚାହିଁଛି । ସେ ବି ଲଜ୍ଜାନମ୍ର···ସତେ ଯେପରି ଗୋଟିଏ ପୃଥକ ପୃଥିବୀର ପ୍ରତିନିଧି ! ଉଦ୍ୟାନର ଗୋଟିଏ କୋଣରେ ସେ ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ନିତିଦିନ ବସେ । ଏ ସୌନ୍ଦର୍ଯ୍ୟ ତା ଶିଶୁମନକୁ ସ୍ପର୍ଶକରେ କି ନାହିଁ କହିହେବନି; କିନ୍ତୁ ସେହି ମନ ଭିତରେ ଯେ ଗୋଟାଏ ତୀବ୍ର ପ୍ରତିକ୍ରିୟା ଚାଲିଥାଏ ଏହାକୁ ଅସ୍ୱୀକାର କରିଯାଇ ପାରିବନାହିଁ । ସେ ନିତିଦିନ ଆସେ, ସେହି କ୍ଷୁଦ୍ର ପୁଷ୍ପ-ପାଦପ ପାଖରେ ଛିଡ଼ାହୁଏ । ତା ଟିକି ଟିକି ଅଙ୍ଗୁଳିରେ ପତ୍ରଗୁଡ଼ିକୁ ଆଉଁସେ । ମୁହଁ ଲଗାଇ ଚୁମ୍ବନ ଦିଏ···ତା କୋମଳକାନ୍ତ ପାଖୁଡ଼ାଗୁଡ଼ିକରେ ହାତ ଦିଏନା, କାଳେ ଖସିପଡ଼ିବ । ତା ସାରା ଶରୀର ମହକିଉଠେ । ସୁବାସ···ସୁବାସ । ତା ଭିତରେ ଭରିରହିଛି ସୁବାସ-ସମ୍ଭାର ।

ପିଲାଟିର ଅଧର ଉପକଣ୍ଠରେ ମୃଦୁଗୁଞ୍ଜନର ତରଙ୍ଗ ।

"କାହିଁକି ? ଉପରକୁ ଉଠୁନୁ ! ମାଡ଼ିମକଚି ଡାଳ ମେଲାଇ ସଭାମଣ୍ଡପରେ ଛିଡ଼ା ହେଉନୁ । ଶ୍ରେଷ୍ଠ ହୋଇ ତ ଜନ୍ମ ହୋଇଛୁ, ବଡ଼ମାନଙ୍କର ବଡ଼େଇ ଡେଇଁ ଆଗକୁ ନଆସିଲେ ସେମାନେ ତୋତେ ସବୁବେଳେ ଶ୍ରେଷ୍ଠକରି ରଖିବେ । ସୌନ୍ଦର୍ଯ୍ୟରେ ତୁ ତ ପଛେଇଗଲୁ, ସୁବାସରେ ତ ସମସ୍ତଙ୍କୁ ଟପିଛୁ, ତଳକୁ ମୁହଁ ପୋତିଛୁ କାହିଁକି ?" ଫୁଲଗଛଟା କ'ଣ ବୁଝେ କେଜାଣି, ଫୁଲୁଫୁଲୁ ପବନରେ ନାଚି ନାଚି ସେ ତାର ସମ୍ମତି ଜଣାଏ । ପିଲାଟି ହସିଉଠେ ।

"ହଁ, ନିଜ ଚେଷ୍ଟାରେ ଉଠିବାକୁ ହେବ; କେହି କାହାକୁ ଉଠାଇଦେବେନି ।"

ଜାନକୀନାଥ ଉଦ୍ୟାନ ଭ୍ରମଣ ପାଇଁ ଆସନ୍ତି । ଶିଶୁପୁତ୍ରକୁ ଆଲିଙ୍ଗନ କରନ୍ତି । ଶ୍ରଦ୍ଧାଭରା କଣ୍ଠରେ କହନ୍ତି, "ଦେଖୁଛୁନା, ଛୋଟ ହେଲେ ବି କେଡ଼େ ଚମତ୍କାର ଫୁଲଟିଏ । ସମସ୍ତଙ୍କୁ ଟପିଯାଇଛି । ରୂପରେ ଯିମିତି ଗୁଣରେ ସିମିତି, କେଉଁଥିରେ ଊଣା ନୁହେଁ । ଏ ସଂସାରରେ ସବୁ ବଡ଼, ବଡ଼ ନୁହନ୍ତି; ସବୁ ସାନ, ସାନ ନୁହନ୍ତି ।"

ଆନନ୍ଦରେ ହସିଉଠନ୍ତି ସୁଭାଷ । ବାଃ···ବାଃ···ସୁବାସ···ସୁଭାଷ ।

ଅଭିମାନୀ ଲଜ୍ଜାଶୀଳ ସୁଭାଷ ଏଇ କଥା କେଇପଦରୁ ଯଥେଷ୍ଟ ପ୍ରେରଣା ପାଆନ୍ତି । ବାପାଙ୍କ ଆଖିରେ ସେ ସାନ ନୁହଁନ୍ତି । ତାଙ୍କ ଉପରେ ଆଠଜଣ ଭାଇଭଉଣୀ ଏବଂ ତଳେ ମାତ୍ର ପାଞ୍ଚଜଣ । ଆଠଜଣ ବଡ଼ ଭାଇଭଉଣୀଙ୍କ ବଡ଼ିମା ଭିତରେ ସେ ଅଣନିଃଶ୍ୱାସୀ ହୋଇ-ଯାଉଥିଲେ । ତାଙ୍କ କଥାକୁ କେହି ପ୍ରାୟ ପ୍ରାଧାନ୍ୟ ଦେଉ ନଥିଲେ । ସେମାନଙ୍କ ପାଖରେ ତାଙ୍କର ସ୍ୱର ଥିଲା ଅତ୍ୟନ୍ତ କ୍ଷୀଣ; ସମ୍ମାନ ପ୍ରଶ୍ନ ବା ଉଠୁଛି କେଉଁଠୁ । ତାଙ୍କ ମନର ଅସରନ୍ତି ଉଚ୍ଛ୍ୱାସ ଲୁଚି ହୋଇ ରହୁଥିଲା । ସେ ଥିଲେ ଅତ୍ୟନ୍ତ ସ୍ପର୍ଶକାତର । ବଡ଼ ପରିବାର ମଧ୍ୟରେ ତାଙ୍କର ଅସ୍ତିତ୍ୱ ପ୍ରାୟ ହଜିଯାଇଥିଲା ।

ଐତିହାସିକ ସହର କଟକରେ ସେ ୧୮୯୭ ମସିହା ଜାନୁଆରୀ ୨୩ ତାରିଖ ଶନିବାରରେ ଜନ୍ମଗ୍ରହଣ କରିଥିଲେ । ସୁଭାଷଙ୍କ ପିତାଙ୍କ ନାମ ଜାନକୀନାଥ ବସୁ । ତାଙ୍କ ମାତାଙ୍କ ନାମ ପ୍ରଭାବତୀ ଦେବୀ । ମହିନଗରର ବସୁ-ପରିବାର କହିଲେ ବଙ୍ଗଳାରେ କିଏ ବା ନଜାଣେ । ବସୁବଂଶର ଖ୍ୟାତି ବଂଶପରମ୍ପରାକ୍ରମେ ଅବ୍ୟାହତ ରହିଥିଲା । ବଙ୍ଗଳାର ଏହି ବିଖ୍ୟାତ ବସୁ-ପରିବାର ତା'ର ଶତାବ୍ଦୀର ଇତିହାସ । ତାଙ୍କର ବଂଶବୃକ୍ଷ ନିରୀକ୍ଷଣ କଲେ ଜଣାଯାଏ, ଜାନକୀନାଥଙ୍କର ପୂର୍ବ ଦୁଇପୁରୁଷ ପର୍ଯ୍ୟନ୍ତ ପରିବାର ଥିଲା ଅତ୍ୟନ୍ତ ସଂକ୍ଷିପ୍ତ । ତାପରେ, ତାହା କ୍ରମେ ବୃଦ୍ଧି ଲାଭ କଲା ଓ ତାଙ୍କ ପରିବାର ଥିଲା ସର୍ବବୃହତ୍ । ତାଙ୍କର ଚଉଦଟି ସନ୍ତାନ । ପ୍ରଥମଟି କନ୍ୟା ପ୍ରମିଳାବାଳା; ତା'ପରେ ସରଳାବାଳା, ସତୀଶଚନ୍ଦ୍ର, ଶରତ୍‌ଚନ୍ଦ୍ର, ସୁରେଶଚନ୍ଦ୍ର, ସୁଧୀରଚନ୍ଦ୍ର, ସୁନୀଲଚନ୍ଦ୍ର, ତରୁବାଳା, ସୁଭାଷଚନ୍ଦ୍ର, ମାଳିନୀ, ପ୍ରତିଭା, କନକଲତା, ଶୈଳେଶଚନ୍ଦ୍ର, ସନ୍ତୋଷଚନ୍ଦ୍ର । ଆଠଟି ପୁତ୍ର, ଛଅଟି କନ୍ୟା । ପୁତ୍ରମାନଙ୍କ ମଧ୍ୟରେ ସୁଭାଷ ଷଷ୍ଠ ସ୍ଥାନ ଅଧିକାର କରିଥିଲେ ଏବଂ ସମସ୍ତଙ୍କ ମଧ୍ୟରେ ତାଙ୍କ ସ୍ଥାନ ଥିଲା ନବମ ।

ସୁଭାଷଙ୍କ ମା' ବଙ୍ଗଳାର ପ୍ରସିଦ୍ଧ ଦତ୍ତ-ପରିବାରରୁ ଆସିଥିଲେ । କାଶୀନାଥ ଦତ୍ତଙ୍କ ପ୍ରଥମ ପୁତ୍ର ଗଙ୍ଗାନାରାୟଣ ଦତ୍ତ । ସେ ହେଉଛନ୍ତି ସୁଭାଷଙ୍କର ଅଜା । ପ୍ରଭାବତୀ ତାଙ୍କର ତୃତୀୟ ସନ୍ତାନ । ଗଙ୍ଗା ନାରାୟଣଙ୍କର ପୁତ୍ରକନ୍ୟା ମିଶି ପନ୍ଦର ଜଣ । ଏହି ବିରାଟ ପରିବାରର କନ୍ୟା ପ୍ରଭାବତୀଙ୍କର ପରିବାର ମଧ୍ୟ ଅନୁରୂପ ବିରାଟ ଥିଲା । ଚଉଦଟି ସନ୍ତାନର ଜନନୀ ପ୍ରଭାବତୀ ଥିଲେ ଧର୍ମପରାୟଣା, ସରଳ ଓ ଉଦାର । ସେ ପ୍ରତ୍ୟେକ ସନ୍ତାନର

ଭବିଷ୍ୟତ ନିର୍ମାଣ ଦିଗରେ ସତତ ଧ୍ୟାନ ଦେଉଥିଲେ । ତାଙ୍କର ଆକର୍ଷଣୀୟ ଚରିତ୍ରବତ୍ତା, ସନ୍ତାନବତ୍ସଳତା, ଧର୍ମାନୁଚିନ୍ତନ ତଥା ନୀତିନିପୁଣତା ପିଲାମାନଙ୍କର ଚରିତ୍ରନିର୍ମାଣ ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲା ।

ସୁଭାଷଙ୍କ ପିତା ଜାନକୀନାଥ ଥିଲେ ଜଣେ ପ୍ରଖ୍ୟାତନାମା ଆଇନ୍‌ଜୀବୀ । ସେ ବଙ୍ଗଳାରୁ ଓଡ଼ିଶାକୁ ଚାଲିଆସିଥିଲେ ବସବାସ କରି ସ୍ୱବୃତ୍ତିର ଉନ୍ନତିସାଧନ କରିବାପାଇଁ । ଓଡ଼ିଶାର ପ୍ରାକୃତିକ ପରିବେଶ ତାଙ୍କୁ ମୁଗ୍‌ଧ କରିଥିଲା । ଓଡ଼ିଆମାନଙ୍କର ସାମାଜିକ ଜୀବନ, ସାଂସ୍କୃତିକ ଶିଳ୍ପବିନ୍ୟାସ ଓ କଳାକୁଶଳତା ତାଙ୍କୁ ଆକୃଷ୍ଟ କରିଥିଲା । ଆଇନ-ବ୍ୟବସାୟ ପାଇଁ ଓଡ଼ିଶା ଥିଲା ଏକ ସ୍ୱଚ୍ଛନ୍ଦ ଚାରଣଭୂମି । ଆଇନ-ବ୍ୟବସାୟର ଉଜ୍ଜ୍ୱଳ ସମ୍ଭାବନା ନେଇ ସେ କଟକ ଆସିଥିଲେ । ଏହା ପୂର୍ବରୁ ଜାନକୀନାଥଙ୍କର ସ୍କୁଲ-ଶିକ୍ଷା କଲିକତାରେ ହୋଇଥିଲା । କିନ୍ତୁ କଲେଜରେ ପଢ଼ିବା ପାଇଁ ତାଙ୍କୁ କଟକ ଆସିବାକୁ ପଡ଼ିଲା । କଟକରେ ଉଚ୍ଚ ଶିକ୍ଷା ଶେଷ କରିବାପରେ ସେ ପୁଣି କଲିକତା ଚାଲିଯାଇଥିଲେ । ସେଠାରେ ସେ ଆଇନ ଶିକ୍ଷା କରିଥିଲେ । ୧୮୮୫ ମସିହାରେ ସେ ଆଇନ-ବ୍ୟବସାୟ ପାଇଁ କଟକ ଫେରିଆସିଥିଲେ ।

ଏହି ସମୟରେ ଓଡ଼ିଶା ବେଙ୍ଗଲ ପ୍ରେସିଡେନ୍‌ସିର ଏକ ଅଙ୍ଗ ଥିଲା । ଏହା ପୂର୍ବରୁ ଐତିହାସିକ କଟକ ଓଡ଼ିଶାର ରାଜଧାନୀ ଥିଲା । ବହୁ ଓଡ଼ିଆ ରାଜା ଏହାକୁ ନିଜ ରାଜ୍ୟର ରାଜଧାନୀ ରୂପେ ଗ୍ରହଣ କରିଥିଲେ ।

ଜାନକୀନାଥଙ୍କର କଟକ ପାଇଁ ଥିଲା ଏକ ବିଶେଷ ଆକର୍ଷଣ । ସେତେବେଳେ କଟକ ଅତ୍ୟନ୍ତ ଜନବହୁଳ ନଥିଲା । ସହର ତଥା ପଲ୍ଲୀର ମିଶ୍ର-ପରିବେଶ ଯେକୌଣସି ବ୍ୟକ୍ତିକୁ ନିଶ୍ଚୟ ମୁଗ୍‌ଧ କରିବ । କଟକରେ ଏ ଉଭୟର ମିଶ୍ରିତ ଅନୁରାଗ ଯୁବକ ଜାନକୀନାଥଙ୍କୁ ଆନନ୍ଦ ଦେଉଥିଲା । ଜାନକୀନାଥ ଗମ୍ଭୀର ପ୍ରକୃତିର ଲୋକ ଥିଲେ । ଅତ୍ୟନ୍ତ ଜନବହୁଳତା ଓ କୋଳାହଳମୟ ଜୀବନକୁ ସେ ନିଜର ପ୍ରକୃତି ତଥା ବ୍ୟବସାୟ ଦୃଷ୍ଟିରୁ ପସନ୍ଦ କରୁନଥିଲେ । କିନ୍ତୁ ଗୋଟିଏ ବିରାଟ ପରିବାର ତାଙ୍କୁ ଭବିଷ୍ୟତରେ ଚଳାଇବାକୁ ପଡ଼ିଥିଲା । କଟକର ଭୌଗୋଳିକ ସ୍ଥିତି ଏପରି, ଯାହାକି ଆପେ ତାର ପ୍ରାଧାନ୍ୟ ସବୁବେଳେ ବୃଦ୍ଧି କରିଛି । ପୃଥିବୀବିଖ୍ୟାତ ନୀଳାଚଳଧାମ ପୁରୀକୁ ଯିବାକୁ ହେଲେ କଟକ ଅତିକ୍ରମ କରିବାକୁ ହୁଏ । ବିଖ୍ୟାତ ଲିଙ୍ଗରାଜ ମନ୍ଦିର କଟକଠାରୁ ଅଳ୍ପଦୂରରେ ଭୁବନେଶ୍ୱରରେ ଅବସ୍ଥିତ । ଏହା ବ୍ୟତୀତ ବୌଦ୍ଧ ଓ ଜୈନ ଯୁଗର ଖଣ୍ଡଗିରି, ଉଦୟଗିରି, ଧଉଳଗିରି ପ୍ରଭୃତି ଐତିହାସିକ ସ୍ଥାନଗୁଡ଼ିକ କଟକଠାରୁ ବେଶି ଦୂର ନୁହେଁ । ଭୁବନେଶ୍ୱର ଭିତରେ ଏଗୁଡ଼ିକ ଅବସ୍ଥିତ । ଜାନକୀନାଥ ବହୁ ଦିଗରୁ ପ୍ରଭାବିତ ହୋଇ କଟକକୁ ତାଙ୍କର କର୍ମ-ଭୂମି ରୂପେ ଗ୍ରହଣ କରିଥିଲେ । କଟକର ଶାନ୍ତ, ରୁଚିମାର୍ଜିତ ସମ୍ଭାବନାମୟ ପରିବେଶ ତାଙ୍କୁ କେବଳ ମୁଗ୍‌ଧ କରିନଥିଲା; ତାହା ଥିଲା ତାଙ୍କ ପାଇଁ ଆଶାମୟ ।

କର୍ମମୟ ଜୀବନ ତାଙ୍କର ଆରମ୍ଭ ହେଲା କଟକର ଓଡ଼ିଆ ବଜାରରେ । ନିଜର

ଶ୍ରଦ୍ଧାଶୀଳ ମାର୍ଜିତ ବ୍ୟବହାର ପାଇଁ ସେ ଅଳ୍ପଦିନ ମଧ୍ୟରେ ଖୁବ୍ ଲୋକପ୍ରିୟ ହୋଇ ପାରିଥିଲେ । ଅଳ୍ପଦିନ ମଧ୍ୟରେ ସେ ସରକାରୀ ଓକିଲରୂପେ ନିଯୁକ୍ତି ପାଇଥିଲେ । ସେତେବେଳେ ସେ ଥିଲେ କଟକ ମ୍ୟୁନିସିପାଲ୍‌ଟିର ଚେୟାରମ୍ୟାନ । ଜଣେ ନିଷ୍ଠାବାନ ସମ୍ଭ୍ରାନ୍ତ ବ୍ୟକ୍ତି ହିସାବରେ ତାଙ୍କର ଯେପରି ଖ୍ୟାତି ଥିଲା, ଜଣେ ଚତୁର ମେଧାସମ୍ପନ୍ନ ଆଇନଜୀବୀ ଭାବରେ ସେହିପରି ପ୍ରତିଷ୍ଠା ମଧ୍ୟ ଥିଲା । ଜାନକୀନାଥ ନିଜର ଆତ୍ମପ୍ରତିଷ୍ଠା-ବଳରେ ବେଙ୍ଗଲ ଲେଜିସ୍ଲେଟିଭ କାଉନସିଲର ସଦସ୍ୟ ମଧ୍ୟ ହେଲେ । ଇଂରେଜ ସରକାର ତାଙ୍କର ସାମାଜିକ ପ୍ରତିଷ୍ଠା ତଥା କର୍ତ୍ତବ୍ୟାନୁରକ୍ତିରେ ମୁଗ୍ଧ ହୋଇ "ରାୟ-ବାହାଦୁର ଉପାଧି" ପ୍ରଦାନ କରିଥିଲେ । ଏହାହିଁ ଥିଲା ତାଙ୍କର ନିଷ୍ଠା ତଥା ପ୍ରତିଷ୍ଠାର ପୁରସ୍କାର ।

ସେ ବ୍ୟକ୍ତିପୂଜାକୁ ପସନ୍ଦ କରୁନଥିଲେ; ବ୍ୟକ୍ତିତ୍ୱ ହିଁ ଥିଲା ତାଙ୍କ ସମ୍ମାନର ଆଧାର । ନିଜର ସ୍ୱାଧୀନ ମନୋଭାବ, ବିଚକ୍ଷଣ ବିଚାର ଓ ଅତୁଟ ଆଦର୍ଶକୁ ସେ ଉଚ୍ଚସ୍ଥାନ ଦେଉଥିଲେ । ସମୟକ୍ରମେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନୀତି ସହିତ ତାଙ୍କ ନୀତିର ସଂଘର୍ଷ ହେଲା । ପାଞ୍ଚବର୍ଷ ପରେ ସେ ସରକାରୀ ଓକିଲ ପଦରୁ ନିଜ ଇଚ୍ଛାରେ ଅବ୍ୟାହତି ନେଲେ ଏବଂ ୧୯୩୦ ମସିହାରେ ସେ ସରକାରଙ୍କ ପ୍ରଦତ୍ତ ରାୟବାହାଦୁର ପଦବୀ ପରିତ୍ୟାଗ କରିଥିଲେ । ତତ୍କାଳୀନ ସରକାରଙ୍କ ଅତ୍ୟାଚାରୀ ଶାସନ ବିରୁଦ୍ଧରେ ପ୍ରତିବାଦ କରିବାକୁ ଯାଇ ସେ ଏପ୍ରକାର ଚରମ ପଦକ୍ଷେପ ନେଲେ । ଆଜିକାଲିର ଯେକୌଣସି ବ୍ୟକ୍ତି ପକ୍ଷରେ ଏ ପ୍ରକାର ତ୍ୟାଗ ପ୍ରାୟ ଦେଖିବାକୁ ମିଳେନାହିଁ । ସେ ଥିଲେ ବ୍ୟକ୍ତି ଭିତରେ ଏକ ଅନୁଷ୍ଠାନ ଓ ତାଙ୍କର ବିରଳ ବ୍ୟକ୍ତିତ୍ୱ ପ୍ରତ୍ୟେକଙ୍କୁ ମୁଗ୍ଧ କରିଥିଲା ।

ରାଜନୀତି ସହିତ ଜାନକୀନାଥ ଓତପ୍ରୋତ ଭାବରେ ଜଡ଼ିତ ନଥିଲେ; କିନ୍ତୁ ରାଜନୈତିକ ପରିସ୍ଥିତି ଓ ପରିବେଶ ସହିତ ତାଙ୍କର ସମ୍ପର୍କ ଥିଲା । ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ସେ ଜଣେ ଦର୍ଶକଭାବରେ ନିୟମିତ ରୂପେ ଯୋଗଦେଉଥିଲେ । ନିଜର ପିଲାମାନଙ୍କ ପାଇଁ ରାଜନୀତି କାର୍ଯ୍ୟକଳାପ ଓ ବିଷୟବସ୍ତୁ ସଂପୂର୍ଣ୍ଣ ଭାବରେ ନିଷିଦ୍ଧ ଥିଲା । ପିଲାମାନେ ରାଜନୀତିରେ ଯୋଗ ଦେଉ ନଥିଲେ କିମ୍ବା ରାଜନୈତିକ ଆଲାପ-ଆଲୋଚନାରେ ଅଂଶ ଗ୍ରହଣ କରୁନଥିଲେ । ସେମାନେ କିନ୍ତୁ ଜାତୀୟ ବୀରମାନଙ୍କର ଚିତ୍ର ସଂଗ୍ରହ କରି ରଖୁଥିଲେ । ସେମାନଙ୍କ ପ୍ରତି ଅତୁଟ ଶ୍ରଦ୍ଧା ତଥା ସମ୍ମାନ ପ୍ରଦର୍ଶନ କରୁଥିଲେ । ଏହା ଥିଲା ସେମାନଙ୍କର ପ୍ରଚ୍ଛନ୍ନ ବୀରପୂଜା ।

କଟକରେ ବହୁ ସାମାଜିକ ତଥା ଶିକ୍ଷାନୁଷ୍ଠାନ ସହିତ ଜାନକୀନାଥ ପ୍ରତ୍ୟକ୍ଷଭାବରେ ସଂଶ୍ଳିଷ୍ଟ ଥିଲେ । ବହୁ ଦାତବ୍ୟ ଅନୁଷ୍ଠାନର ପୃଷ୍ଠପୋଷକ ଭାବରେ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ୁଥିଲା । ଅନେକ ମେଧାବୀ ଗରିବ ଛାତ୍ର ତାଙ୍କ ସାହାଯ୍ୟ ତଥା ସହଯୋଗ ଲାଭକରି ଜୀବନରେ ପ୍ରତିଷ୍ଠିତ ହୋଇପାରିଥିଲେ । ଏହାହିଁ ଥିଲା ତାଙ୍କ ଚରିତ୍ରର ଏକ ବଳିଷ୍ଠ ଦିଗ ।

ଜଣେ ଆଇନଜୀବୀ ହିସାବରେ ଜାନକୀନାଥ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ । ଚାତୁରୀ, ଆଇନ୍‌ର କଦର୍ଥ ବ୍ୟାଖ୍ୟା ଏବଂ ବୁଦ୍ଧିବଳରେ ଆଇନ୍‌ର ପବିତ୍ରତାକୁ କ୍ଷୁଣ୍ଣ କରି ସ୍ୱାର୍ଥ-ସିଦ୍ଧି ପାଇଁ ଏହାକୁ ଅବଲମ୍ବନରୂପେ ଗ୍ରହଣ କରିବାକୁ ସେ ଆଦୌ ପସନ୍ଦ କରୁନଥିଲେ । ନ୍ୟାୟ ପ୍ରତିଷ୍ଠାପାଇଁ ସେ ଆଇନ୍‌କୁ ଆୟୁଧ ରୂପେ ଗ୍ରହଣ କରିଥିଲେ । ଗରିବ, ଦୁର୍ବଳ, ଅସହାୟ ବ୍ୟକ୍ତିପାଇଁ ସେ ବିନା ପାରିଶ୍ରମିକରେ ଲଢ଼ୁଥିଲେ ।

ଜାନକୀନାଥଙ୍କର ଜୀବନ ଥିଲା କର୍ମବହୁଳ । ସେ ସାମାଜିକ କାର୍ଯ୍ୟ ତଥା ନିଜର ଆଇନ୍-ବ୍ୟବସାୟରେ ଏପରି ଭାବରେ ମଗ୍ନ ରହୁଥିଲେ ଯେ, ନିଜର ପିଲାମାନଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ରହିପାରୁନଥିଲା । ପାରିବାରିକ ଜୀବନ-ଜଞ୍ଜାଳ ପାଇଁ ତାଙ୍କର ସମସ୍ତ ପ୍ରାୟ ଅଭାବ ଥିଲା । ଏତେଗୁଡ଼ିଏ ପିଲାର ପିତା ଭାବରେ ପ୍ରତ୍ୟେକଙ୍କୁ ଯେତିକି ପ୍ରୀତିପ୍ରଦ ସାନ୍ନିଧ୍ୟ ତଥା ସଖ୍ୟଦାନ କରିବା କଥା, ତାହା ସେ ଦେଇ ପାରୁନଥିଲେ । ବଡ଼ ପିଲାମାନେ ପ୍ରାୟ ଦୂରେଇ ରହୁଥିଲେ । ଛୋଟ ପିଲାମାନେ ସାମୟିକ ସ୍ନେହ ଶ୍ରଦ୍ଧା ପାଉଥିଲେ । ସୁଭାଷ ଅନେକ ସମୟରେ, ଭାଇଭଉଣୀଙ୍କ ତାଡ଼ନାରେ କ୍ଷୁବ୍ଧ ହୋଇ, ପିତାଙ୍କ ସାନ୍ନିଧ୍ୟ ଲଭ ପାଇଁ ବ୍ୟାକୁଳ ଥିବାବେଳେ ସେ ତାହା ପାଆନ୍ତି ନାହିଁ । ଯଦି ପାଆନ୍ତି, ତାହା ବହୁଧା ବିଭକ୍ତ ଶ୍ରଦ୍ଧା-ବିଭବ । ସବୁ ପିଲାଙ୍କ ଭିତରେ ବଣ୍ଟାହେବା ପରେ ତାଙ୍କ ପାଇଁ ଯେତିକି ମିଳେ ତାହାହିଁ ତାଙ୍କର ନିର୍ମାଲ୍ୟ । ସେ ଥିଲେ ତେଣୁ ସ୍ପର୍ଶକାତର ଏବଂ ଅଭିମାନୀ ।

ଜାନକୀନାଥଙ୍କ ପାରିବାରିକ ସଂସାରକୁ ତାଙ୍କର ସ୍ତ୍ରୀ ପ୍ରଭାବତୀ ପରିଚାଳନା କରୁଥିଲେ । ସେ ଥିଲେ ଖୁବ୍ ଦୃଢ଼ମନା, ଧୀରସ୍ଥିରଶୀଳା, ସ୍ନେହମୟୀ ନାରୀ । ତାଙ୍କର ସାଂସାରିକ ଜ୍ଞାନ ଥିଲା ପରିପକ୍ୱ । ଏତେବଡ଼ ବିରାଟ ପରିବାରର ପରିଚାଳନା ସେ ସୁନ୍ଦରଭାବରେ କରିପାରୁଥିଲେ । ପ୍ରତିଟି ପିଲାର ଚରିତ୍ର ନିର୍ମାଣ କରି, ତାକୁ ମଣିଷ ପରି ମଣିଷ ଭାବରେ ଗଢ଼ିବା ଦିଗରେ ତାଙ୍କ ପରି ଜଣେ ମା'ଙ୍କୁ ଯେ କେତେ ସ୍ୱାର୍ଥ ତ୍ୟାଗ କରିବାକୁ ପଡ଼ିଥିବ ଓ କେତେ ନିଷ୍ଠାପରତା ସେ ପ୍ରକାଶ କରିଥିବେ, ଏହା ସହଜରେ ଅନୁମାନ କରାଯାଇପାରେ ।

ସୁଭାଷ ଜନ୍ମଲଭ କଲାବେଳକୁ ଜାନକୀନାଥ ଓଡ଼ିଶାରେ ବେଶ୍ ସୁନାମ ଅର୍ଜନ କରିସାରିଥିଲେ । ସେ ଥିଲେ ଉଚ୍ଚ ମଧ୍ୟବିତ୍ତ ପରିବାରର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ଅଭାବ-ଅନଟନ ସୁଭାଷଙ୍କୁ ସ୍ପର୍ଶ କରିନଥିଲା । ସ୍ୱାର୍ଥପରତାର ସେ ଶିକାର ହୋଇନଥିଲେ । ତାଙ୍କର ଉଦାର ଦୃଷ୍ଟିଭଙ୍ଗୀ ଓ ବ୍ୟାପକ ମନୋବୃତ୍ତି ଥିଲା । ସେ ପ୍ରଥମରୁ ପିଲାଦିନରୁ ଥିଲେ ଉଚ୍ଚାଭିଳାଷୀ । ଦାରିଦ୍ର୍ୟ ମନୁଷ୍ୟକୁ ସ୍ୱାର୍ଥପର, ଲୋଭୀ, ନୀଚମନା କରିଦିଏ । ଦାରିଦ୍ର୍ୟର କଷାଘାତ ସେ ଭୋଗି ନଥିବାରୁ ନିଃସ୍ୱାର୍ଥପର, ନିର୍ଲୋଭ ତଥା ଉଚ୍ଚମନା ହେବା ତାଙ୍କ ପକ୍ଷରେ ସମ୍ଭବ ହୋଇଥିଲା । ସୁଭାଷଙ୍କ ପରିବାରରେ ବିଳାସ ତଥା ଅପବ୍ୟୟର ସୁଯୋଗ ନଥିଲା । ଅର୍ଥର ସଦୁପଯୋଗ ପ୍ରତି ତାଙ୍କ ଘରେ ପ୍ରତ୍ୟେକେ ଦୃଷ୍ଟି

ଦେଉଥିଲେ । ଖୁବ୍ ସରଳ ନିରାଡ଼ମ୍ବର ଜୀବନ ଯାପନ ପ୍ରତି ପିଲାମାନଙ୍କୁ ଅଭ୍ୟସ୍ତ କରାଯାଉଥିଲା ।

ଗୋଟିଏ ବଡ଼ ପରିବାରର ଭଲ ଓ ମନ୍ଦ ଦିଗପ୍ରତି ସୁଭାଷ ସଚେତନ ଥିଲେ । ଶିଶୁ ଅବସ୍ଥାରେ ପ୍ରତ୍ୟେକର ବ୍ୟକ୍ତିଗତ ଯତ୍ନ, ସେବା, ପରିପାଳନ ତଥା ପରିଚର୍ଯ୍ୟାର ଆବଶ୍ୟକତା ଥାଏ । ବଡ଼ ପରିବାରରେ ଶ୍ରେଷ୍ଠ ଶିଶୁମାନେ ପିତାମାତାଙ୍କଠାରୁ ଏହା ଆବଶ୍ୟକତା ଅନୁସାରେ ପାଇ ପାରନ୍ତି ନାହିଁ । ଅନେକଙ୍କ ଭିତରେ ଶିଶୁ ହଜିଯାଏ; ଫଳରେ ତାର ବ୍ୟକ୍ତିତ୍ୱର ସୁସଂହତ ଅଭିବୃଦ୍ଧି ହୋଇପାରେ ନାହିଁ । ସୁଭାଷ ନିଜର ଭାଇ-ଭଉଣୀ, କାକା-ଖୁଡ଼ୀ ଓ ଅନ୍ୟାନ୍ୟ ଜ୍ଞାତି-ପରିଜନମାନଙ୍କର ବିରାଟ ମେଳାଭିତରେ ନିଜକୁ ହଜାଇ ଦେଇଥିଲେ । ତାଙ୍କ ଘରଟା ଥିଲା ବନ୍ଧୁ ବାନ୍ଧବ ଆତ୍ମୀୟ-ସ୍ୱଜନଙ୍କ ଅବାଧ ଆଗମନ ପାଇଁ ସର୍ବଦା ମୁକ୍ତ । ବଙ୍ଗ ଦେଶରୁ ଯେଉଁ ଆଗନ୍ତୁକମାନେ କଟକ ଆସୁଥିଲେ ସେମାନଙ୍କ ରହିବା, ଖାଇବା, ସୁଖ-ସୁବିଧା ବ୍ୟବସ୍ଥା ପାଇଁ ସେତେବେଳେ କଟକରେ ଗୋଟିଏ ହେଲେ ବି ଭଲ ହୋଟେଲ ନଥିଲା । ବାଧ ହୋଇ ସେମାନେ ଜାନକୀନାଥଙ୍କ ଘରକୁ ଆସୁଥିଲେ ଓ ଜାନକୀନାଥ ଅକୁଣ୍ଠଚିତ୍ତରେ ସେହି ସାମାଜିକ ଦାୟିତ୍ୱ ତୁଲାଉଥିଲେ ।

ସୁଭାଷଙ୍କ ପରିବାର ଯେ କେବଳ ଲୋକମାନଙ୍କୁ ନେଇ ବିରାଟ ହୋଇଥିଲା, ତା' ନୁହେଁ । ଗାଈ, ଛେଳି, କୁକୁର, ହରିଣ, ମେଣ୍ଢା, ଘୋଡ଼ା, ବିଲେଇ, ମୟୂର ଓ ଅନ୍ୟାନ୍ୟ ପକ୍ଷୀ—ଶୁଆ, ଶାରୀ, ମଇନା···ଏହିପରି ଅନେକ ଜୀବଜନ୍ତୁ ପଶୁପକ୍ଷୀ ଏହି ପରିବାରକୁ କେନ୍ଦ୍ର କରି ରହିଥିଲେ । ପରିବାରର ବିରାଟତ୍ୱ ପ୍ରତି ସେମାନଙ୍କର ଯଥେଷ୍ଟ ଅବଦାନ ଥିଲା ।

କେବଳ ସେତିକି ନୁହେଁ; ଚାକରବାକର, ଜଗୁଆଳି, ସେବାକାରୀ ଏହିପରି ଅନେକ ବ୍ୟକ୍ତି ଏ ପରିବାରର ଅବିଚ୍ଛେଦ୍ୟ ଅଙ୍ଗ ରୂପେ ରହିଥିଲେ । ଏପରି ଅନେକ ଲୋକ ଥିଲେ, ଯେଉଁମାନେ ସୁଭାଷଙ୍କ ଜନ୍ମର ବହୁ ପୂର୍ବରୁ ପରିବାର ଭିତରେ ରହିଆସିଛନ୍ତି । ଦାସୀ, ଚାକରାଣୀମାନଙ୍କର ସମ୍ମାନ ତାଙ୍କ ପରିବାରରେ ଯଥେଷ୍ଟ ଉଚ୍ଚରେ ।

ସୁଭାଷଙ୍କ ମା' ପ୍ରଭାବତୀ ଏହି ବିରାଟ ପରିବାରର ଦାୟିତ୍ୱ ତୁଲାଉଥିଲେ । ଜାନକୀନାଥ ତାଙ୍କର କର୍ମଜଞ୍ଜାଳ ମଧ୍ୟରେ ଏତେ ଲିପ୍ତ ରହୁଥିଲେ ଯେ, ଘରର ଭଲମନ୍ଦ ବୁଝିବାପାଇଁ ତାଙ୍କର ସମୟ ନଥିଲା । ପ୍ରଭାବତୀଙ୍କର ସଂପୂର୍ଣ୍ଣ ପରିଚାଳନା ଉପରେ ଘର ନିର୍ଭର କରୁଥିଲା । ବାସ୍ତବଜ୍ଞାନ ଓ ଦୂରଦୃଷ୍ଟି ତାଙ୍କୁ ପରିଚାଳନାଗତ ଦକ୍ଷତା ଦେଇଥିଲା । ନିଜର ପୁତ୍ର, କନ୍ୟା, ବନ୍ଧୁ ପରିବାର, ଆତ୍ମୀୟସ୍ୱଜନ, ପଶୁପକ୍ଷୀ ସମସ୍ତେ ଆନନ୍ଦରେ ଥିଲେ । ଏସବୁ ଭିତରେ ସୁଭାଷଙ୍କର କିଛି ମାତ୍ରାରେ ଶୂନ୍ୟତାବୋଧ ରହିଥିଲା ।

ସୁଭାଷ ପାଞ୍ଚ ବର୍ଷ ବୟସରେ କଟକରେ ଏକ ଇଂରେଜୀ-ମାଧ୍ୟମ ମିଶନାରୀ ସ୍କୁଲରେ

ଶିକ୍ଷା ଲଭପାଇଁ ଭର୍ତ୍ତି ହୋଇଥିଲେ । ସେ ସେଠାରେ ଜଣେ ମେଧାବୀ ଛାତ୍ର ହିସାବରେ ସୁନାମ ଅର୍ଜନ କରିଥିଲେ ମଧ୍ୟ ଖେଳ-କସରତ ପ୍ରତି ତାଙ୍କର ଆଦୌ ଆଗ୍ରହ ନଥିଲା । ଇଂରେଜୀ-ମାଧ୍ୟମ ବିଦ୍ୟାଳୟଗୁଡ଼ିକରେ କ୍ରୀଡ଼ା ଉପରେ କିଂତୁ ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଉଥିଲା । ସୁଭାଷଙ୍କର କ୍ରୀଡ଼ାବିମୁଖତା ତାଙ୍କର ଭାବମୂର୍ତ୍ତି ଉପରେ ଆଞ୍ଚ ଆଣୁଥିଲା । ତେଣୁ ସେ ଯଥେଷ୍ଟ ଆନନ୍ଦ ପାଉନଥିଲେ ।

ସୁଭାଷଙ୍କୁ ଦୁଇଟା ବିପରୀତ ପରିବେଶ ମଧ୍ୟରେ ନିଜକୁ ଖାପଖୁଆଇ ଚଳାଇବାକୁ ପଡ଼ୁଥିଲା । ଗୋଟାଏ ପାଖରେ ଭାରତୀୟ ପରିବାର ଓ ସମାଜ; ଅନ୍ୟ ପାଖରେ ବିଦ୍ୟାଳୟର ପାଶ୍ଚାତ୍ୟ ପରିବେଶ । ସେ ପଢ଼ୁଥିବା ଇଂରେଜୀ-ମାଧ୍ୟମ ବିଦ୍ୟାଳୟରେ ଭାରତୀୟ ଛାତ୍ରମାନଙ୍କପାଇଁ କେତେକ କଟକଣା ଓ ବାଛବିଚାର ଥିଲା । ସେମାନେ ଶ୍ରେଣୀ ପରୀକ୍ଷାରେ ଯଥେଷ୍ଟ ଅଧିକ ନମ୍ବର ରଖୁଥିଲେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ବୃତ୍ତିପାଇଁ ତାଙ୍କୁ ସୁଯୋଗ ଦିଆଯାଉନଥିଲା । ଏହା ବ୍ୟତୀତ ସେହି ବିଦ୍ୟାଳୟରେ ଆଙ୍ଗ୍ଲୋ-ଇଣ୍ଡିଆନ ପିଲାମାନେ ସ୍ୱେଚ୍ଛାସେବୀ ଅନୁଷ୍ଠାନରେ ଯୋଗ ଦେବାପାଇଁ ସୁଯୋଗ ପାଉଥିଲେ; ଯୋଗ୍ୟତା ଥାଇ ମଧ୍ୟ ଭାରତୀୟ ଛାତ୍ରମାନେ ଏଥିରୁ ବଞ୍ଚିତ ହେଉଥିଲେ । ଏହା ଅନୁଷ୍ଠାନ ମଧ୍ୟରେ ଏପ୍ରକାର ବାଛବିଚାର ଶିଶୁ ସୁଭାଷଙ୍କ ମନରେ ବିଦ୍ରୋହ ଭାବ ସୃଷ୍ଟି କରିଥିଲା । ଭାରତ-ମାଟିରେ ଇଂରେଜୀ ବିଦ୍ୟାଳୟରେ ଭାରତୀୟ ପିଲାମାନେ ଆଗନ୍ତୁକ ପରି ବ୍ୟବହାର ପାଉଥିଲେ । ଏହା ଥିଲା ସୁଭାଷଙ୍କ ପାଇଁ ଏକ ଅସହନୀୟ ପରିସ୍ଥିତି । ସେ ସେଠାରେ ଦୀର୍ଘ ସାତବର୍ଷ ଶିକ୍ଷାଲାଭ କରିବା ପରେ ଉଚ୍ଚଶିକ୍ଷା ପାଇଁ ଚାଲିଆସିଲେ ।

ରେଭେନ୍‌ସା କଲେଜିଏଟ୍ ସ୍କୁଲ ସେତେବେଳେ କଟକର ଏକମାତ୍ର ଉଚ୍ଚ ବିଦ୍ୟାଳୟ ଥିଲା । ସେ ସେଠାରେ ୧୯୦୯ ମସିହାରେ ନାଁ ଲେଖାଇଲେ । ଏହି ବିଦ୍ୟାଳୟର ଐତିହ୍ୟ ଓ ଖ୍ୟାତି ଥିଲା । ଏଠାରେ ବେଣୀମାଧବ ଦାସ ନାମକ ଜଣେ ପ୍ରଖ୍ୟାତ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କର ଆଦର୍ଶ, ଚରିତ୍ରବତ୍ତା, ନୀତି-ନିଷ୍ଠା, ଶୃଙ୍ଖଳା ଓ କର୍ତ୍ତବ୍ୟବୋଧ ଥିଲା ଅତ୍ୟନ୍ତ ଉଚ୍ଚକୋଟିର । ସୁଭାଷ ତାଙ୍କର ଆକର୍ଷଣୀୟ ଚରିତ୍ର ଓ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ବେଣୀମାଧବ ଥିଲେ ଛାତ୍ରବତ୍ସଳ ଓ ସୁଭାଷଙ୍କ ଭିତରେ ସେ ଏକ ବିଶେଷ ଶକ୍ତି ଏବଂ ସଂଗଠିତ ବ୍ୟକ୍ତିତ୍ୱର ସନ୍ଧାନ ପାଇଥିଲେ । ଏହାର ପରିପ୍ରକାଶ ପାଇଁ ସେ ସୁଭାଷଙ୍କ ମଧ୍ୟରେ ପ୍ରେରଣାର ଉତ୍ସରୂପେ କାର୍ଯ୍ୟ କରିଥିଲେ ।

ଶ୍ରେଣୀରେ ସୁଭାଷଙ୍କ ସ୍ଥାନ ଥିଲା ଉଚ୍ଚରେ । ଶିକ୍ଷକମାନେ ତାଙ୍କୁ ଅନ୍ୟ ପିଲାମାନଙ୍କ ଅପେକ୍ଷା ବିଶେଷ ଦୃଷ୍ଟି ଦେଉଥିଲେ । ତାଙ୍କର ଇଂରେଜୀ-ଜ୍ଞାନ ଅନ୍ୟମାନଙ୍କଠାରୁ ଥିଲା ବହୁ ଊର୍ଦ୍ଧ୍ୱରେ । ଏପର୍ଯ୍ୟନ୍ତ ସେ ଘରେ ନିଜକୁ ଯେପରି ଗୌଣ ଓ ଅବହେଳିତ ବୋଲି ଅନୁଭବ କରୁଥିଲେ, ସ୍କୁଲ-ଜୀବନରେ ସେ ନ୍ୟୂନଭାବ ଦୂର ହୋଇଗଲା । ସେ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ଥିଲେ ମଉଡ଼ମଣି । ଛାତ୍ର, ଶିକ୍ଷକ, ପ୍ରଧାନଶିକ୍ଷକ ସମସ୍ତେ ତାଙ୍କୁ ଶ୍ରଦ୍ଧା ତଥା ଛାତ୍ରସୁଲଭ ସମ୍ମାନ ଦେଉଥିଲେ । ଆତ୍ମସମ୍ମାନ ତାଙ୍କ ମଧ୍ୟରେ ଥିବା

ହୀନମନ୍ୟତା ଦୂରକରିଦେଇ ପାରିଲା । ସ୍କୁଲ୍-ଜୀବନ ହିଁ ଥିଲା ତାଙ୍କ ପାଇଁ ପ୍ରେରଣାର ଉତ୍ସ, ସମ୍ମାନର ପ୍ରତୀକ । ଶ୍ରେଣୀରେ ତାଙ୍କୁ ଯଥେଷ୍ଟ ପ୍ରାଧାନ୍ୟ ଦିଆଯାଉଥିଲା । ସେ ନିଜକୁ ଆବିଷ୍କାର କରିବାର ସୁଯୋଗ ଏଠାରୁ ପାଇଥିଲେ । କ୍ରମେ ତାଙ୍କର ନିଜ ପ୍ରତି ଯଥେଷ୍ଟ ଆସ୍ଥା ସ୍ଥାପିତ ହେଲା । ଏହି ଅନୁକୂଳ ପରିବେଶ ଓ ପରିସ୍ଥିତି ତାଙ୍କ ପାଇଁ ପ୍ରୋତ୍ସାହନମୂଳକ ଥିଲେ ମଧ୍ୟ ସେ ଆଉ ଏକ ବିରୋଧ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ । ରେଭେନ୍ସା କଲିଜିଏଟ୍ ସ୍କୁଲରେ ନାଁ ଲେଖାଇଲେ ସେ ଚତୁର୍ଥ ଶ୍ରେଣୀର ଛାତ୍ର ହିସାବରେ । ସେତେବେଳେ ଚତୁର୍ଥ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଉଚ୍ଚବିଦ୍ୟାଳୟମାନଙ୍କରେ ଥାଏ । ସେ ସେଠାରେ ନାଁ ଲେଖାଇଲାବେଳକୁ ନିଜର ମାତୃଭାଷା ବଙ୍ଗଳାରେ ତାଙ୍କର ଆଦୌ ଦକ୍ଷତା ନଥିଲା । ନିଜ ଭାଷାରେ ଲେଖାପଢ଼ା ସେ ଜାଣି ନଥିଲେ । ଏଥିପାଇଁ ମାତୃଭାଷା ଶ୍ରେଣୀରେ ତାଙ୍କୁ ଅପମାନିତ ହେବାକୁ ପଡ଼ୁଥିଲା । ତାଙ୍କ ଲେଖାକୁ ଶ୍ରେଣୀରେ ପଢ଼ାଯାଇ ଉପହାସର ବାତାବରଣ ସୃଷ୍ଟି କରାଯାଉଥିଲା । ସୁଭାଷଙ୍କ ଶିଶୁମନରେ ଏହା ଦେଉଥିଲା ଗଭୀର ଆଘାତ । ବ୍ୟାକରଣ ବିଷୟରେ ତାଙ୍କର ଆଦୌ ଧାରଣା ନଥିଲା । ଲିଖନ, ପଠନ, ବ୍ୟାକରଣରେ ସେ ଏତେ ଦୁର୍ବଳ ଥିଲେ ଯେ ଅନେକ ସମୟରେ ଏଥିପାଇଁ ତାଙ୍କୁ ବହୁ ଅପମାନ ସହ୍ୟ କରିବାକୁ ପଡ଼ୁଥିଲା । ଅଳ୍ପଦିନ ମଧ୍ୟରେ ସେ ଏହା ଅତିକ୍ରମ କରିପାରିଥିଲେ ।

ଆତ୍ମପ୍ରତ୍ୟୟ ମଣିଷର ସାଧନାରେ ସଫଳତା ସୃଷ୍ଟି କରିଥାଏ । ବହୁ ବିଷୟରେ ଯେଉଁ ସୁଭାଷ ସର୍ବୋଚ୍ଚ ସ୍ଥାନ ଲାଭ କରୁଥିଲେ, ନିଜର ମାତୃଭାଷାରେ ତାହା ରକ୍ଷା କରିବାକୁ ତାଙ୍କୁ ବେଶି ସମୟ ଲାଗିଲାନାହିଁ । ଜିଜ୍ଞାସୁ ସୁଭାଷ ନିଜର ଅନ୍ତରତମ ପ୍ରଦେଶରୁ ଏକ ନୂତନ ପ୍ରେରଣାର ଆହ୍ୱାନ ଶୁଣିବାକୁ ପାଇଥିଲେ । ସେ ଆଗ୍ରହର ସହିତ କଠୋର ପରିଶ୍ରମ କରି ବଙ୍ଗଳାଭାଷାରେ ଅନ୍ୟମାନଙ୍କ ଅପେକ୍ଷା ଯଥେଷ୍ଟ ଆଗୁଆ ହେଲେ । ତାହାହିଁ ଥିଲା ତାଙ୍କ ଆତ୍ମପ୍ରତ୍ୟୟର ଦାନ । ଅଳ୍ପଦିନ ମଧ୍ୟରେ ପରିବେଶ, ପରିସ୍ଥିତି ସବୁ ବଦଳିଗଲା । ଉପହସିତ ସୁଭାଷ ଶ୍ରମ ଓ ସାଧନା ବଳରେ ନିଜର ଉତ୍କର୍ଷ ପ୍ରମାଣ କରାଇ ପାରିଲେ ।

କ୍ରୀଡ଼ା ପ୍ରତି ସୁଭାଷଙ୍କର ପିଲାଦିନରୁ ଆଗ୍ରହ ସୃଷ୍ଟି ହେବାର ସୁଯୋଗ ନଥିଲା । ତାଙ୍କର ପିତାମାତା ଥିଲେ ରକ୍ଷଣଶୀଳ । ଖେଳପଡ଼ିଆର ପରିବେଶ ପିଲାର ଶାରୀରିକ ତଥା ମାନସିକ ସ୍ୱାସ୍ଥ୍ୟକୁ ଯେ ଉନ୍ନତ ତଥା ସୁସ୍ଥ କରିଦେଇପାରିବ, ଏହା ସେମାନଙ୍କର ଆଶଙ୍କା ଥିଲା । ତେଣୁ ସେମାନେ ନିଜର ପିଲାମାନଙ୍କୁ ଖେଳପଡ଼ିଆକୁ ପଠାଉନଥିଲେ; ବରଂ ବାଧା ଦେଉଥିଲେ । ପିଲାଦିନର ଶିକ୍ଷା ଓ ତାଲିମ ସୁଭାଷଙ୍କର ଏପରି ଥିଲା ଯେ ସେ ନିଜର ପିତାମାତାଙ୍କ ପ୍ରତି ଗଭୀର ଅନୁରକ୍ତ ଥିଲେ । ସେମାନଙ୍କର ଇଚ୍ଛା କିମ୍ବା ରୁଚି ବିରୁଦ୍ଧରେ ସେ କିଛି କରିବାକୁ ପସନ୍ଦ କରୁନଥିଲେ । ବିଦ୍ୟାଳୟ-ଜୀବନ ବ୍ୟତୀତ ବଗିଚା କାମ, ବ୍ୟାୟାମ, ଚଲାବୁଲା ପ୍ରଭୃତିରୁ ସେ ଆନନ୍ଦ ପାଉଥିଲେ ।

ସୁଭାଷଙ୍କ ଘରକୁ ଲାଗି ଗୋଟିଏ ବଗିଚା ବାଡ଼ି । ତା'ର ଭିତରେ ଭରପୁର ଫୁଲ ଓ ଫଳ ବଗିଚା । ସେ ପ୍ରତିଦିନ ବଗିଚାକୁ ଯାଇ ମାଳୀକୁ କାମରେ ସାହାଯ୍ୟ କରନ୍ତି । ସେଥିରୁ ତାଙ୍କୁ ଅମାପ ଆନନ୍ଦ ମିଳେ । ଉଦ୍ୟାନର ସୌନ୍ଦର୍ଯ୍ୟରେ ତାଙ୍କ ଭିତରେ ସୃଷ୍ଟି ହୋଇଥିଲା ସୌନ୍ଦର୍ଯ୍ୟବୋଧ । ସୁଭାଷ କ୍ରମେ ଜୀବନର ନୂତନ ଗୂଢ଼ ଅର୍ଥ ବୁଝିବାପାଇଁ ସମର୍ଥ ହେଲେ । କ୍ରମେ ନୂତନ ଅନୁଭୂତି, ଅଭିଜ୍ଞତା ତାଙ୍କ ଜୀବନକୁ ରସାଳ କଲା । କର୍ମିକତା, ପରିପକ୍ୱତା ସୃଷ୍ଟି କରିବା ଦିଗରେ ସହାୟକ ହୋଇଥାଏ । ସେ କ୍ରମେ ସଫଳତାର ସୋପାନ ଅତିକ୍ରମ କରି ଅଗ୍ରସର ହେଲେ ।

ବିଦ୍ୟାଳୟର ବାତାବରଣ ଥିଲା ଉତ୍ସାହପ୍ରଦ ଓ ଆତ୍ମୀୟ । ଓଡ଼ିଆ ତଥା ବଙ୍ଗାଳୀ ଶିକ୍ଷକମାନଙ୍କ ମଧ୍ୟରେ ଆନ୍ତରିକତା ଯଥେଷ୍ଟ ଥିଲା । ସେହି ଆତ୍ମୀୟତା ବିଦ୍ୟାଳୟର ପରିବେଶକୁ ସୁସ୍ଥ ଓ ସୁନ୍ଦର କରିପାରିଥିଲା । ପ୍ରତ୍ୟେକ ଛାତ୍ର ଏହାଦ୍ୱାରା ପ୍ରଭାବିତ ହେଉଥିଲେ । ପିଲା କିମ୍ବା ଶିକ୍ଷକମାନଙ୍କ ମଧ୍ୟରେ ପ୍ରାଦେଶିକ ସଙ୍କୀର୍ଣ୍ଣ ମନୋଭାବ ଆଦୌ ନଥିଲା । ଏଥିପାଇଁ ପିତାମାତା ତଥା ଶିକ୍ଷକମାନଙ୍କର ଉଦାରତା ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ସେମାନେ ସେତେବେଳେ ସଙ୍କୀର୍ଣ୍ଣମନା ନଥିଲେ ।

ସୁଭାଷଙ୍କ ପିତା ଜାନକୀନାଥ ମଧ୍ୟ ଅତି ଉଦାରଚେତା ଥିଲେ । ପ୍ରାଦେଶିକ ସଙ୍କୀର୍ଣ୍ଣତା ତାଙ୍କୁ କିମ୍ବା ତାଙ୍କର ପିଲାମାନଙ୍କୁ ସ୍ପର୍ଶ କରିନଥିଲା । ସୁଭାଷ ଥିଲେ ଅତି ଉଦାରମନା । ଜାନକୀନାଥଙ୍କର ବହୁ ଗଣ୍ୟମାନ୍ୟ ଓଡ଼ିଆ ପରିବାର ସହିତ ସୁସମ୍ପର୍କ ଥିଲା । ଓଡ଼ିଆମାନଙ୍କ ନିକଟ ସମ୍ପର୍କରେ ସେ ସର୍ବଦା ଆସୁଥିଲେ । ସେ ଓଡ଼ିଆମାନଙ୍କର ଜଣେ ପ୍ରିୟ ବନ୍ଧୁ ଥିଲେ ଏବଂ ଓଡ଼ିଆମାନେ ମଧ୍ୟ ତାଙ୍କର ପ୍ରିୟ ବନ୍ଧୁ ଥିଲେ । ଜନକ ପାଇଁ ଓଡ଼ିଶା ତଥା ଓଡ଼ିଆମାନଙ୍କ ସ୍ୱାର୍ଥରେ ଆଞ୍ଚ ଆଣିଲାପରି ପଦଟିଏ ବି କଥା ତାଙ୍କ ପାଟିରୁ ବାହାରିନାହିଁ । ସେ ଓଡ଼ିଶା ଓ ଓଡ଼ିଆମାନଙ୍କୁ ଅନ୍ତରର ସହିତ ଭଲପାଉଥିଲେ । ସୁଭାଷ ତଥା ତାଙ୍କର ଭାଇଭଉଣୀଙ୍କ ଉପରେ ଏହି ପ୍ରଭାବ ନିବିଡ଼ ଭାବରେ ପଡ଼ିଥିଲା । ବିଦ୍ୟାଳୟର ପରିବେଶ ଯେପରି ଆଦର୍ଶ ଓ ପ୍ରେରଣାଦାୟକ ଥିଲା ଘରର ପରିବେଶ ତଥା ପ୍ରଭାବ ମଧ୍ୟ ସେହିପରି ଥିଲା ଆକର୍ଷଣୀୟ ।

ପୂର୍ବରୁ ଶ୍ରୀଯୁକ୍ତ ବେଣୀମାଧବ ଦାସଙ୍କ କଥାର ସୂଚନା ଦିଆଯାଇଛି । ସେ ଥିଲେ ସେ ସମୟର ଜଣେ ନେତୃସ୍ଥାନୀୟ ପ୍ରଧାନ ଶିକ୍ଷକ । ତାଙ୍କ ବ୍ୟକ୍ତିତ୍ୱରେ ଚମକ ଥିଲା । ସେ ଯାହାର ସଂସ୍ପର୍ଶରେ ଆସୁଥିଲେ, ତାକୁ ନିଜର କରିନେବାକୁ ବେଶି ସମୟ ଲାଗୁନଥିଲା । ଯାହା ଭିତରେ ପ୍ରତିଭା, ସଦ୍‌ଭାବନା, ସୁଗୁଣ, ନିଷ୍ଠା, ନୀତିନିପୁଣତା ଦେଖିବାକୁ ପାଉଥିଲେ, ସେ ତାକୁ ମୁଣ୍ଡରେ ବସାଉଥିଲେ । ସୁଭାଷଙ୍କ ଭାବୀ ଜୀବନର ଝଲକ ତାଙ୍କ ଛାତ୍ରଜୀବନରେ ପ୍ରତିଫଳିତ ହୋଇଥିଲା । ପ୍ରଧାନ ଶିକ୍ଷକ ବାବୁ ବେଣୀମାଧବ ଦାସ ତାଙ୍କର ମନଶ୍ଚକ୍ଷୁରେ ସୁଭାଷଙ୍କର ସେହି ସ୍ୱର୍ଣ୍ଣିମ ଭବିଷ୍ୟତକୁ ବୋଧହୁଏ ଦେଖିବାକୁ ପାଇଥିଲେ । ସେ ଥିଲେ ସୁଭାଷଙ୍କର ପ୍ରେରଣାର ପ୍ରଥମ ଉତ୍ସ ।

ସୁଭାଷଙ୍କ ଚକ୍ଷୁରେ ବେଣୀମାଧବ ଜଣେ ସାଧାରଣ ଶିକ୍ଷକ ନଥିଲେ । ସେ ଥିଲେ ଦେବୋପମ; ସମସ୍ତ ମାନବିକ ସୁଗୁଣର ପରିପୂର୍ଣ୍ଣ ପ୍ରକାଶ । ସୁଭାଷଙ୍କ ଅନ୍ତରାତ୍ମା ଯେଉଁ ଆଦର୍ଶ, ଗୌରବ ଓ ମାନବିକ ସଦ୍‌ଗୁଣସମ୍ପନ୍ନ ବ୍ୟକ୍ତିର ସାନ୍ନିଧ ପାଇଁ ପାଗଳ ଥିଲା, ତାହା ତାଙ୍କୁ ମିଳିଗଲା । ସେ ହେଲେ ଆନନ୍ଦରେ ଆତ୍ମହରା । ଯାହାଙ୍କୁ ଖୋଜୁଥିଲେ ତାଙ୍କୁ ପ୍ରାଣଭରି ପାଇଛନ୍ତି । ବେଣୀମାଧବ ଥିଲେ ତାଙ୍କର ଗୁରୁ, ଦାର୍ଶନିକ, ବନ୍ଧୁ, ପ୍ରେରଣାଦାୟକ ଓ ସର୍ବୋପରି ତାଙ୍କ ଭିତରେ ଥିବା ଚିରପୁରୁଷର ପଥପ୍ରଦର୍ଶକ । ଆଜିର ସମାଜରେ ଏପରି ଶିକ୍ଷକ ବିରଳ; ଏପରି ବ୍ୟକ୍ତିତ୍ୱ ମଧ୍ୟ ବିରଳ ।

ଜୀବନରେ ସର୍ବଦା ବସନ୍ତର ଉଲ୍ଲାସ ହିଲ୍ଲୋଳ ପ୍ରବାହିତ ହୁଏନା । ଠିକ୍ ସମୟରେ ବୈଶାଖର ରୁଦ୍ର ତାପ ମଧ୍ୟ ଆସେ । ଝାଞ୍ଜି ପବନର ହାଆଁ-ହୁଣା ଅଧ୍ୟାୟ ଆରମ୍ଭ ହୁଏ । ଶ୍ରାବଣର ଘନ ପାବଣ ବି ଝୁଲେ । କାକୁଆ ଶୀତ ପବନ ବି ବହେ । ଶରୀରଶଯ୍ୟାରେ ସମସ୍ତେ ଅସି ଲେଟିଯାଆନ୍ତି । ମନ ଓ ଶରୀର ସଙ୍କୁଚିତ ହୁଏ ।

ଖବରଟା ଥିଲା ସଂପୂର୍ଣ୍ଣ ଆକସ୍ମିକ ।

ବାବୁ ବେଣୀମାଧବଙ୍କର ବଦଳି ଆଦେଶ । ତାଙ୍କୁ ସେ ସ୍କୁଲ ଛାଡ଼ିବାକୁ ହେବ । ଚାକିରି-ଜୀବନରେ ବଦଳି କିଛି ଗୋଟାଏ ନୂତନ କଥା ନୁହେଁ । ପ୍ରିୟ ଶିକ୍ଷକ ପାଇଁ ପ୍ରିୟ ଛାତ୍ରମାନଙ୍କର ସ୍ନେହ, ଭକ୍ତି, ଶ୍ରଦ୍ଧା, ବିଶ୍ୱାସ ଓ ସମର୍ପଣଭାବର ଖବର ସରକାର ରଖନ୍ତିନି —ଚାକିରି ଚାକିରି । ସେଠାରେ ମମତାସିକ୍ତ ମନଟା ନିସ୍ତେଜ ହୋଇ ପଡ଼ିଥାଏ । ଯେତେବେଳେ ଟିକିଏ ଜାଗ୍ରତ ହୁଏ ଠିକ୍ ସେଇ ମୁହୂର୍ତ୍ତରେ ଆସେ ବଦଳିର ଆଦେଶ-ନାମା—ପ୍ରସ୍ତୁତ ହୁଅ, ପ୍ରସ୍ତୁତ ହୁଅ, ଜାଗା ଛାଡ଼ିବାକୁ ହେବ; ମୋହ-ବନ୍ଧନରେ ଆବଦ୍ଧ ହୁଅନି ।

ଖବରଟା ବିଜୁଳିବେଗରେ ଚାରିଆଡ଼େ ପ୍ରଚାରିତ ହୋଇଗଲା । ସୁଭାଷ ଦୁଃଖାବେଗରେ ଭାଙ୍ଗିପଡ଼ିଲେ । ଜୀବନପଥର ପ୍ରଥମ ପଥପ୍ରଦର୍ଶକଙ୍କୁ ସେ ହରାଇବାକୁ ଯାଉଛନ୍ତି । ସେ ଯେ ତାଙ୍କ ଭିତରେ ନୈତିକତାର ଏକ ଦୃଢ଼ ମୂଳଦୁଆ ପକାଇ ଦେଇଯାଉଛନ୍ତି, ତାହା ସେ ଅନୁଭବ କରିଥିଲେ । ତାଙ୍କ ଭିତରେ ସେ ସୃଷ୍ଟି କରିଛନ୍ତି ଅଦମ୍ୟ ଆତ୍ମବିଶ୍ୱାସ ।

ବିଦାୟ ମୁହୂର୍ତ୍ତ ଆସି ଉପସ୍ଥିତ ହେଲା ।

ସାରା ବିଦ୍ୟାଳୟରେ ବିରାଜିତ କରୁଛି ଏକ କରୁଣ ପରିବେଶ । ପିଲାମାନଙ୍କର ହସକୁରା ପଦ୍ମମୁଖରେ ହୃଦୟଭରା ହସର ହିଲ୍ଲୋଳ କୁଆଡ଼େ ଉଭେଇଯାଇଛି । ଦୀପାୟିତ ଜଳଜଳ ନୟନଯୁଗରେ ଆନନ୍ଦର ଆଲୋକ ନାହିଁ···ସେମାନଙ୍କର ନୀଳାଭ ନୟନ ଅଶ୍ରୁସଜଳ, ଆବେଗମଥିତ । ପ୍ରତି ଛାତ୍ରର କଣ୍ଠସ୍ୱରରେ ସ୍ୱାଭାବିକତା ହଜିଯାଇଛି···ବାଷ୍ପରୁଦ୍ଧ କଣ୍ଠ, ଅଶ୍ରୁ-ନିଗିଡ଼ା ନୟନ ।

ବେଣୀମାଧବଙ୍କର ସ୍ନେହାପ୍ଲୁତ ହୃଦୟରେ ବ୍ୟଥାତୁର ସମୁଦ୍ରଟା ଉଦ୍‌ବେଳିତ ହୋଇଉଠିଛି । ପାହାଡ଼ ପରି କୋହର ଲହଡ଼ି ଶୀର୍ଣ୍ଣ ଛାତିଟା ସମ୍ଭାଳିବା ସମ୍ଭବ ହେଉନି; ଖାଲି ଚୂରମାର ହୋଇଯିବନା କ'ଣ ? ସେ ପ୍ରତ୍ୟେକ ଶ୍ରେଣୀକକ୍ଷକୁ ଯାଇ ତାଙ୍କର ପ୍ରିୟ ଛାତ୍ରଛାତ୍ରୀମାନଙ୍କଠାରୁ ବିଦାୟ ଆଣିଲେ । ଶ୍ରେଣୀର ପଥର କାନ୍ଥ ବି କରୁଣ ସ୍ରୋତର ପ୍ରଖରତାକୁ ସହ୍ୟ କରିବା ସମ୍ଭବ ହେଉନଥାଏ । ବେଣୀମାଧବ ଜଡ଼ିତ କଣ୍ଠରେ କହିଲେ, "ତୁମକୁ ମୋର ବିଶେଷ କିଛି କହିବାର ନାହିଁରେ ପିଲେ ! ତୁମେ ସବୁ ଈଶ୍ୱରଙ୍କର ଆଶୀର୍ବାଦ ଲାଭକର, ଏହାହିଁ ମୋର ପ୍ରାର୍ଥନା ।"

ଛାତ୍ରମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ମାନସିକ ଉଦ୍‌ବେଳନକୁ ବର୍ଣ୍ଣନା କରିବା ପାଇଁ ଭାଷା ନାହିଁ । ପ୍ରବଳ ସ୍ରୋତମୁଖରେ କୁଟା, କାଠି, ପତ୍ର ଭାସିଗଲାପରି ସେମାନେ ସମସ୍ତେ ଦୁଃଖସ୍ରୋତରେ ଭାସିଯାଇଥିଲେ । ସୁଭାଷ ମନକୁ ସ୍ଥିର କରି ବହୁ କଷ୍ଟରେ ଉଦ୍‌ଗତ ଲୁହକୁ ଚାପିନେବାକୁ ଚେଷ୍ଟାକଲେ । ପ୍ରଧାନ ଶିକ୍ଷକ ଶ୍ରେଣୀକକ୍ଷରୁ ଫେରିଆସି ତାଙ୍କ ଅଫିସ ବାରଣ୍ଡାରେ ଛିଡ଼ାହେଲେ ଓ ପିଲାଏ ସମସ୍ତେ ଧାଡ଼ିବାନ୍ଧି ତାଙ୍କ ବିଦାୟ ଦର୍ଶନପାଇଁ ସେହି ବାଟଦେଇ ଗଲେ । ଶହ ଶହ ଛାତ୍ରଛାତ୍ରୀଙ୍କର ଅଶ୍ରୁଳନୟନ ତାଙ୍କ ଅଶ୍ରୁମଖାନୟନ ସହିତ ମିଶି ଯାଉଥାଏ । ସେ ଉଚ୍ଛ୍ୱାସଭରା କଣ୍ଠରେ କ'ଣ କହିବାକୁ ଚେଷ୍ଟା କରୁଥାନ୍ତି; କିନ୍ତୁ କିଛି କହିପାରୁ ନଥାନ୍ତି । ଅଧରଧାର ଦୁଃଖାବେଗରେ କମ୍ପିତ ହେଉଥାଏ ।

ଛାତ୍ରମାନଙ୍କର ଚାଲନ୍ତ ଧାଡ଼ି ଭିତରେ ସୁଭାଷ ଚାଲିଥାନ୍ତି । ପ୍ରଧାନ ଶିକ୍ଷକଙ୍କ ଆଖି ସହିତ ତାଙ୍କ ଆଖି ଯେତେବେଳେ ମିଶିଗଲା, ସେତେବେଳେ ଚାପିହୋଇ ରହିଥିବା ରୁଦ୍ଧ ଆବେଗ ଓ ଉଦ୍‌ଗତ ଅଶ୍ରୁ କୌଣସି ବାଧା-ବନ୍ଧନ ମାନିଲାନାହିଁ । ବେଣୀମାଧବଙ୍କର ସ୍ନେହରଙ୍କ ହୃଦୟ ଏ ଦୃଶ୍ୟ ସହ୍ୟ କରିପାରିଲାନି । ସେ କମ୍ପିତକଣ୍ଠରେ କହିଲେ, "ନିକଟରେ ଦେଖାହେବ ।"

ସୁଭାଷଙ୍କ ଜୀବନର ପ୍ରଥମ ଅନୁଭୂତି ।

ପ୍ରିୟଜନର ସ୍ମୃତି ମଣିଷ ପାଇଁ କେତେ ପ୍ରିୟତର ଏବଂ ଦୁଃଖଦାୟକ ସେ ପ୍ରଥମ କରି ଅନୁଭବ କରିଥିଲେ । ପ୍ରିୟବ୍ୟକ୍ତିର ବିଦାୟରେ ସେ ପ୍ରଥମକରି କାନ୍ଦିଥିଲେ ଏବଂ କୌଣସି ବାରଣ ସେ କାନ୍ଦକୁ ଅଟକାଇ ପାରିନଥିଲା । ନିତିଦିନିଆ ଚଳଣି ଭିତରେ ମଣିଷ ହୃଦୟଭରା ପ୍ରେମର ମହତ୍ତ୍ୱ ଉପଲବ୍ଧି କରିପାରେନାହିଁ । ଯେତେବେଳେ ବିଦାୟ ବିଚ୍ଛେଦ ଅନିବାର୍ଯ୍ୟ ହୋଇଉଠେ, ସେତେବେଳେ ସେ ଏକାନ୍ତଭାବରେ ଅନୁଭବ କରେ ଯେ, ହୃଦୟ ଦେଇ ସେ କେତେ ତାଙ୍କୁ ଭଲପାଉଥିଲେ ।

ତା ପରଦିନର ଘଟଣା । ବେଣୀମାଧବଙ୍କୁ ବିଦାୟ ଦେବାପାଇଁ ସେଦିନ ଗୋଟାଏ ସର୍ବସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ସେ ବିଦାୟ-ସଭାରେ ବହୁ ଲୋକ ନିଜର ମର୍ମଭରା ପ୍ରତିବେଦନ ପ୍ରକାଶକରିଥିଲେ । ତାଙ୍କର ମହନୀୟ ବ୍ୟକ୍ତିତ୍ୱ ପାଖରେ ଗମ୍ଭୀର

କୃତଜ୍ଞତା ଜ୍ଞାପନ କରାଯାଇଥିଲା । ସୁଭାଷଚନ୍ଦ୍ର ଥିଲେ ବକ୍ତାମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ତାଙ୍କ ବକ୍ତୃତାରେ ଆନ୍ତରିକତାର ନିବିଡ଼ ସ୍ପର୍ଶ ଏପରି ଥିଲା, ଯାହାକି ପ୍ରତ୍ୟେକ ଶ୍ରୋତାଙ୍କ ମନ ମନ୍ଥନ କରିଥିଲା । ସେ ବକ୍ତବ୍ୟ ଥିଲା ତାଙ୍କର ଅଶ୍ରୁଚର୍ଚ୍ଚିତ ଆତ୍ମମୟ ଅଭିବ୍ୟକ୍ତି; ବେଦନାହତ ଆତ୍ମସ୍ୱରୂପର ବିକଳ ବିଳାପ । ବେଣୀମାଧବଙ୍କୁ ତାହା ଯେପରି ଚହଲାଇ ଦେଇଥିଲା, ପ୍ରତ୍ୟେକ ଶ୍ରୋତା ମଧ୍ୟ ସେହିପରି ଚହଲି ଉଠିଥିଲେ ।

ଶେଷରେ ବେଣୀମାଧବ ନିଜର ଅଶ୍ରୁଳ ବିଦାୟ ସମ୍ଭାଷଣ ଜ୍ଞାପନ କରିଥିଲେ ।

ତାଙ୍କର ପ୍ରତିଟି କଥା ଥିଲା ଚିତ୍ତବେହଲ ଓ ସମସ୍ତଙ୍କ ଅନ୍ତରକୁ ଗଭୀର ଭାବରେ ତାହା ସ୍ପର୍ଶ କରିଥିଲା । ସେ କଥାପ୍ରସଙ୍ଗରେ କହିଥିଲେ, ଆଜି ତାଙ୍କୁ ଯେଉଁ ସ୍ନେହ-ଶ୍ରଦ୍ଧା-ସମ୍ମାନ ଅର୍ପଣ କରାଯାଇଛି ଏବଂ ଅତୀତରେ ଯାହା ଅର୍ପିତ ହୋଇଛି, ତାହା ତାଙ୍କ ପାଇଁ ଅପ୍ରତ୍ୟାଶିତ । ସୁଭାଷ ତାଙ୍କର ଦର୍ଶନରେ ଏତେ ଅଭିଭୂତ ହୋଇଥିଲେ ଯେ ଆଉ କୌଣସି କଥା ତାଙ୍କ କାନରେ ପଡ଼ୁନଥିଲା । ସେ ଅନୁଭବ କରିଥିଲେ, ସତେ ଯେପରି ବେଣୀମାଧବଙ୍କ ଶରୀରରୁ ଏକ ଅନିର୍ବଚନୀୟ ଜ୍ୟୋତି ପ୍ରତିଭାତ ହେଉଛି । ସେ ତନ୍ମୟତାର ସହିତ ତାଙ୍କରି ଆଡ଼କୁ ଚାହିଁଥାନ୍ତି । ବେଣୀମାଧବଙ୍କର ଆବେଗାକୁଳିତ ମୁଖମଣ୍ଡଳରେ କଥିତ ଭାଷାକୁ ଅତିକ୍ରମକରି ଯେଉଁ ଅକଥିତ ଭାଷାର ଉଦ୍‌ବେଳନ ସୃଷ୍ଟି ହୋଇଥିଲା, ସୁଭାଷ ତାହା ଅନ୍ତର ଭରି ଅନୁଭବ କରୁଥିଲେ । ଏ ମଗ୍ନତା ବାହ୍ୟ ଇନ୍ଦ୍ରିୟର ଦ୍ୱାର ରୁଦ୍ଧକରି ମନକୁ ଅନ୍ତର୍ମୁଖୀ କରାଇଥିଲା । ସେ ଯେପରି ଚିନ୍ତା କରୁଥିଲେ, ସେହି ପ୍ରକାର ଶବ୍ଦ-ଝଙ୍କାର କାନରେ ପଡ଼ୁଥିଲା । ସେ ପ୍ରକାରର ଚିନ୍ତାମୟ ରୂପ ଆଖିରେ ନାଚୁଥିଲା । ଏହା ଥିଲା ବାହ୍ୟ ଘଟନ ଅପେକ୍ଷା ସଂପୂର୍ଣ୍ଣ ଭିନ୍ନ ଓ ଅସୁମାର ଚିନ୍ତନର ଚିତ୍ରରୂପ ।

ତା ପରର ଜୀବନ ଥିଲା ସଂପୂର୍ଣ୍ଣ ଗତାନୁଗତିକ । ପଡ଼ିଲା ଗୁଳାରେ ଗଡ଼ିଗୁଲିଲା ଜୀବନ । ଯେଉଁ ଆଲୋକ ପରିବେଶକୁ ଆଲୋକିତ କରୁଥିଲା, ତାହା ଅପସରି ଯାଇଛି । ନୂତନ ଆଲୋକର ସନ୍ଧାନ ନାହିଁ । ଗତାନୁଗତିକତା ମଧ୍ୟରେ ଚାଲିବାକୁ ହେବ । ଘଣ୍ଟା ବାଜିବ, ପାଠପଢ଼ା ଚାଲିବ, ପିଲାଏ ସ୍କୁଲ୍‌କୁ ଆସିବେ ଓ ଯିବେ, ଶିକ୍ଷକମାନେ ପାଠ ପଢ଼ାଇବେ—ଏ ତ ନିତିଦିନିଆ ଘଟଣା । ଏହାକୁ ଯେ ରସାଣିତ କରୁଥିଲେ, ଉପଭୋଗ୍ୟ କରୁଥିଲେ, ଯାହାଙ୍କର ପ୍ରୀତି-ସ୍ପର୍ଶରେ ଛାତ୍ର-ଜୀବନ ପଲ୍ଲବିତ ଓ ପୁଷ୍ପିତ ହୋଇଉଠିଥିଲା, ସେ ବର୍ତ୍ତମାନ ନାହାନ୍ତି । ବିଦ୍ୟାଳୟରେ ବର୍ତ୍ତମାନ ସରସତାର ସମ୍ଭବ ନାହିଁ—କେବଳ ଗୋଟାଏ ନୀରସ ନିସ୍ତରଙ୍ଗ ଜୀବନ ।

ବେଣୀମାଧବ ବିଦାୟ ନେବାପରେ ତାଙ୍କ ସହିତ ସୁଭାଷଙ୍କର ପତ୍ର-ବିନିମୟ ଦୀର୍ଘଦିନ ପାଇଁ ଚାଲିଥିଲା । ସେ ଦୂରରେ ଥାଇ ମଧ୍ୟ ପ୍ରୋତ୍ସାହନର ଉତ୍ସ ରୂପେ କାମ କରୁଥିଲେ । ଆନ୍ତରିକତା ପାଖରେ ଦୂରତା ପ୍ରତିବନ୍ଧକ ହୋଇପାରେନା । ସେ ସୁଭାଷଙ୍କ ହୃଦୟରେ ପ୍ରକୃତି-ପ୍ରୀତି ସୃଷ୍ଟି କରିଥିଲେ । ପ୍ରକୃତିହିଁ ଥିଲା ସୁଭାଷଙ୍କ ପାଇଁ ଚରମ ଆନନ୍ଦ

ଓ ପ୍ରେରଣାର ଗନ୍ତାଘର । ପ୍ରକୃତି ଭିତରୁ ସେ ଶାନ୍ତି, ଶୀତଳତା, ଉତ୍ସାହ, ଆନନ୍ଦ, ସୌନ୍ଦର୍ଯ୍ୟବୋଧ, ଭକ୍ତିଭାବ ତଥା ମନନତ ଶିକ୍ଷା କରିଥିଲେ । ଆଉ ଏକ ମହତ୍ତ୍ୱର ପରିପ୍ରକାଶ ତାଙ୍କର ଭିତରେ ରୂପ ନେଇଥିଲା । ତାଙ୍କର ମହନୀୟ ସ୍ମୃତି ଆସ୍ତେ ପ୍ରକୃତି ଭିତରେ ମଗ୍ନୀଭୂତ ହେଲା । ପ୍ରାକୃତିକ ପରିବେଶ ଥିଲା ତାଙ୍କ ପାଇଁ ପ୍ରେରଣାର ଉତ୍ସ । ନୀଳ ଆକାଶର ନୀଳିମା, ଭାସମାନ ମେଘମାଳାର ବିଚିତ୍ର ରୂପରାଗ, ବାଳସୂର୍ଯ୍ୟର ବିପୁଳ ରଙ୍ଗତରଙ୍ଗ, ଅସ୍ତରବିର ପ୍ରୀତି-ପାଟଳ ଆଲେଖ୍ୟ, ନକ୍ଷତ୍ରଖଚିତ ଅନନ୍ତ ଜ୍ୟୋତିଷ୍ପଥ, ତରୁଲତାର ଶ୍ୟାମଳ ସମ୍ଭାର, ବନ-ପର୍ବତର ଯୁଗବ୍ୟାପୀ ନିଶ୍ଚଳ ସାଧନା ତାଙ୍କୁ ଉଦ୍‌ଗତ କରିଥିଲା । ସେ ପ୍ରକୃତି ପାଖରେ ଆତ୍ମ-ସମର୍ପଣ କରିଥିଲେ । ଏହା ତାଙ୍କର ମନୋବଳ ବୃଦ୍ଧି କରିଥିଲା; ଏକାଗ୍ରତା ବିକାଶ କରିଥିଲା । ସେ କ୍ରମେ ପ୍ରକୃତିର ବହୁ ରହସ୍ୟ ଉଦ୍‌ଘାଟନ କଲେ । ସେ ପ୍ରକୃତି ଭିତରୁ ଆବିଷ୍କାର କଲେ ଆଉ ଏକ ନୂତନ ସଂସାର, ଯେଉଁଠାରେ ମ୍ଳାନିମା ନାହିଁ, କଦର୍ଥନା ନାହିଁ, କପଟତା ନାହିଁ···ସବୁ ସୁନ୍ଦର···ସବୁ ମନୋମୟ ।

ପ୍ରକୃତି ସୁଭାଷଙ୍କୁ ଶିଖାଇଥିଲା ସାଧନା ତଥା ସଫଳତାର ମନ୍ତ୍ର । ସେ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲା । କହୁଥିଲା : 'ମାନବର ବ୍ୟକ୍ତିଗତ ଜୀବନ ବିଶ୍ୱଜୀବନ ପାଇଁ ଏକ ପ୍ରତିଶ୍ରୁତି । ତାକୁ ପାଳନ କରିବାକୁ ହେବ ମହତ୍ତ୍ୱର ପରିପ୍ରକାଶ ପାଇଁ । ମଣିଷ ତା'ର ନିଜ ଜୀବନକୁ ଏକ ପ୍ରତିଶ୍ରୁତିର କାବ୍ୟ କରିଦେଇପାରିଲେ, ଆଉ ସମସ୍ତେ ତା'ପାଇଁ ପ୍ରତିଶ୍ରୁତିର ଆଶୀର୍ବାଦ ବହନକରି ତା ସମକ୍ଷରେ ଦଣ୍ଡାୟମାନ ହେବେ । ପ୍ରତିଶ୍ରୁତିର ଅନ୍ୟ ନାମ ଜୀବନ ।'

ଏକ ନୂତନ ମନ୍ତ୍ର···ନୂତନ ଉଦ୍ଦୀପନା ।

ପିପାସିତ ପ୍ରାଣ ସର୍ବଦା ଅତୃପ୍ତ ।

ସୁଭାଷଚନ୍ଦ୍ରଙ୍କ ଅନ୍ତରାତ୍ମା ନୂତନ ଜ୍ୟୋତି, ନୂତନ ପ୍ରେରଣା, ନୂତନ ଉନ୍ମାଦନା, ନୂତନ ମନ୍ତ୍ର ପାଇଁ ବ୍ୟାକୁଳ ହୋଇଉଠିଲା । ପ୍ରକୃତି ଭିତରୁ ସେ ପୁଣି ମାନବିକ ସମ୍ବେଦନ ଖୋଜି ବୁଲିଲେ । ପୁଣି ଏକ ନୂତନ ଆଲୋକର ଉତ୍ସରଣ ।

ତାଙ୍କ ଭିତରେ ବହୁ ସ୍ୱପ୍ନର ପଟୁଆର । ମନରେ ଅସରନ୍ତି ଆଶାର ତରଙ୍ଗ । କଳ୍ପନା ଓ ବାସ୍ତବତା ମଧ୍ୟରେ ଗଭୀର ସଂଘାତ । ଆଦର୍ଶ ଓ ଆବିଳତା ଭିତରେ ଚରମ ସଂଘର୍ଷ । ସେ କଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ଜୀବନର ଲକ୍ଷ୍ୟ ନିର୍ଣ୍ଣୟ କରିବାପାଇଁ ସେ ଅନୁକୂଳ ପରିବେଶ ପାଉନାହାନ୍ତି । ଉତ୍କଟ ଅନ୍ତର୍ଦ୍ୱନ୍ଦ୍ୱ ତାଙ୍କ ଭିତରେ ବିକୃତି କରୁଛି ।

ମଣିଷର କୌଣସି ବ୍ୟାକୁଳ ନିବେଦନ ଅପୂରଣୀୟ ହୋଇ ରହେନାହିଁ । ସେ ପୁଣି ନୂତନ ଆଲୋକର ସନ୍ଧାନ ପାଇଲେ । ଦୁଇଜଣ ମହାପୁରୁଷ, ସ୍ୱାମୀ ବିବେକାନନ୍ଦ ଓ ତାଙ୍କର ଗୁରୁ ଶ୍ରୀରାମକୃଷ୍ଣ ପରମହଂସ, ଏ ଉଭୟ ମହାପୁରୁଷଙ୍କ ବାଣୀ ତାଙ୍କୁ ଗଭୀର

ଭାବରେ ପ୍ରଭାବିତ କଲା । ବହୁ ଦିନରୁ ସେ ଯେଉଁ ନୂତନ ଆଲୋକର ସନ୍ଧାନ ପାଇଁ ବ୍ୟାକୁଳିତ ହେଉଥିଲେ, ତାହା ତାଙ୍କୁ ଏହି ଦୁଇ ମହାପୁରୁଷଙ୍କ ବାଣୀମଧ୍ୟରୁ ପ୍ରାପ୍ତି ମିଳିଗଲା । ଜୀବନକୁ କେଉଁ ପଥରେ ପରିଚାଳିତ କରିବାକୁ ହେବ, ସେ ତାର ସୂତ୍ର ପାଇଗଲେ । ତାହା ଥିଲା ସାରା ଜୀବନ ପାଇଁ ଏକ ନୂତନ ଆଦର୍ଶ, ନୂତନ ଦୃଷ୍ଟିଭଙ୍ଗୀ, ନୂତନ ନିର୍ମାଣର ରୂପକଳ୍ପ । ସୁଭାଷ ଆନନ୍ଦରେ ବିହ୍ୱଳ ହୋଇଗଲେ । ଲକ୍ଷ୍ୟ ମିଳିଗଲା; ତାକୁ ହାସଲ କରିବା ପାଇଁ ପଥ ବି ମିଳିଗଲା ।

ସୁଭାଷ ବିବେକାନନ୍ଦଙ୍କ ଦୁର୍ଲଭ ବ୍ୟକ୍ତିତ୍ୱର ମହନୀୟ ପ୍ରକାଶ ତାଙ୍କର ରଚନାବଳୀ ମଧ୍ୟରୁ ପାଇଥିଲେ । ସ୍ୱାମୀ ବିବେକାନନ୍ଦଙ୍କର ବାଣୀ ଏବଂ ଅଭିଭାଷଣ ତାଙ୍କ ଭିତରେ ଏକ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା । ଦେଶାତ୍ମବୋଧ ଓ ସ୍ୱଦେଶପ୍ରାଣତା ସୃଷ୍ଟି କରିବା ଦିଗରେ ଏହି ଲେଖା ତାଙ୍କୁ ପ୍ରୋତ୍ସାହିତ କରିଥିଲା । ସେତେବେଳକୁ ସୁଭାଷଙ୍କର ବୟସ ମାତ୍ର ପନ୍ଦର ବର୍ଷ । ସ୍ୱାମୀ ବିବେକାନନ୍ଦ ତାଙ୍କ ହୃଦୟକୁ ଜୟ କରିଥିଲେ । ତାଙ୍କ ଭିତରେ ଏକ ଆଧ୍ୟାତ୍ମିକ ଆଲୋଡ଼ନ ପ୍ରବଳ ଭାବରେ ସୃଷ୍ଟି ହୋଇଥିଲା । ବିବେକାନନ୍ଦଙ୍କ ମାଧ୍ୟମରେ ସେ ତାଙ୍କର ଗୁରୁ ରାମକୃଷ୍ଣ ପରମହଂସଙ୍କ ମହାନ୍ ପଥର ସନ୍ଧାନ ପାଇଲେ । 'ମାନବ-ସେବା ତଥା ଦେଶସେବା ପ୍ରତ୍ୟେକ ଜୀବନର ଧ୍ୟେୟ'—ଏହି ଧାରଣା ତାଙ୍କ ଭିତରେ ଦୃଢ଼ ହୋଇଥିଲା । କାମନା ଓ କାଞ୍ଚନର ଲୋଭ ଯେ ତ୍ୟାଗ କରିପାରେ, ସେ ହିଁ ଆଧ୍ୟାତ୍ମିକ ଜୀବନ ପାଇଁ ଯୋଗ୍ୟ । ରାମକୃଷ୍ଣ ଏହି ନୀତି ଉପରେ ଅଧିକ ଜୋର୍ ଦେଉଥିଲେ । ଉଭୟଙ୍କ ପ୍ରଭାବରେ ସୁଭାଷ ଅନୁପ୍ରାଣିତ ହେବା ଫଳରେ ତାଙ୍କର ଅନ୍ତର୍ଦ୍ୱନ୍ଦ୍ୱର ଅବସାନ ହେଲା । ରାମକୃଷ୍ଣ ପରମହଂସଙ୍କର ନିଜର କିଛି ବିଶେଷ ଶିକ୍ଷା ବା ସାକ୍ଷରତା ନଥିଲା; କିନ୍ତୁ ତାଙ୍କର ମହାନ୍ ବାଣୀ ତାଙ୍କର ଶିଷ୍ୟମାନେ ଲିପିବଦ୍ଧ କରି ବିଶ୍ୱ-ଜୀବନକୁ ଉଦ୍‌ବୁଦ୍ଧ କରିଥିଲେ ।

ବର୍ତ୍ତମାନ ସୁଭାଷଙ୍କ ସମକ୍ଷରେ ନୂତନ ଆଦର୍ଶର ଆଲୋକଶିଖା ।

ଜୀବନର ସମସ୍ତ ମୋହ, ଅଜସ୍ର କାମ୍ୟ କାମନା, ଅନେକ ବ୍ୟାକୁଳ ବାସନା ତାଙ୍କ ଭିତରୁ କ୍ରମେ ଦୂରୀଭୂତ ହେଲା । ନୈତିକ ଜୀବନ ପ୍ରତି ସେ ବିଶେଷ ଭାବରେ ଆକର୍ଷିତ ହେଲେ । ନୀତିମତ୍ତା ପାଇଁ ତାଙ୍କୁ ବହୁ ସଂଘର୍ଷ ଓ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପିତାମାତାଙ୍କର ବାରଣ ସତ୍ତ୍ୱେ ସାତ୍ତ୍ୱିକ ଜୀବନକୁ ସମର୍ଥନ କରିଥିଲେ । ଅନେକ ସମୟରେ ସେ ଏଥିପାଇଁ ସ୍ୱାଧୀନ ଭାବରେ ବିରୋଧ କରିବାକୁ ପଛଉନଥିଲେ । ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ ସେ ଦ୍ୱିଧାଗ୍ରସ୍ତ ହେଉନଥିଲେ । ଆଧ୍ୟାତ୍ମିକ ଅନୁଚିନ୍ତନ ପ୍ରତି ସେ ଏତେ ଆକର୍ଷିତ ହୋଇଥିଲେ ଯେ ନିଜର ଶିକ୍ଷା ପ୍ରତି ଆବଶ୍ୟକ ସଚେତନତା ତାଙ୍କର ନଥିଲା । ପିତାମାତା ଏ ପ୍ରକାର ମନୋଭାବ ତଥା ବ୍ୟବହାରକୁ ଆଦୌ ପସନ୍ଦ କରୁନଥିଲେ; ତଥାପି ସୁଭାଷ ଥିଲେ ସ୍ୱାଧୀନଚେତା । ଅନେକ ସମୟରେ ବିଦ୍ରୋହାତ୍ମକ ମନୋଭାବ ତାଙ୍କ

ଭିତରେ ପ୍ରକାଶିତ ହେଉଥିଲା । ସେ ଅନୁପ୍ରେରିତ ହୋଇଥିଲେ ଯେ, "ଆତ୍ମସତ୍ତାର ପୂର୍ଣ୍ଣପ୍ରତିଷ୍ଠା ପାଇଁ ବିଦ୍ରୋହ ଏକାନ୍ତ ଆବଶ୍ୟକ ।" ବିନା ବିଦ୍ରୋହରେ ଆଲୋକର ସନ୍ଧାନ ମିଳିବ ନାହିଁ ।

ସୁଭାଷ ଯୋଗାଭ୍ୟାସରେ ମନୋନିବେଶ କଲେ । ଯେଉଁ ସାଧୁ-ସନ୍ଥମାନେ କଟକ ଆସୁଥିଲେ, ସୁଭାଷ ତାଙ୍କୁ ଯାଇ ଭେଟୁଥିଲେ । ସେମାନଙ୍କ ଧର୍ମସଭାର ସମ୍ମୁଖ ଭାଗରେ ସେ ପ୍ରଥମେ ଯାଇ ବସୁଥିଲେ । ସେମାନଙ୍କ ସହିତ ସେ ଧର୍ମ ବିଷୟରେ ବହୁ ଆଲୋଚନା ସମାଲୋଚନା କରୁଥିଲେ । ବହୁ ନୈତିକ ସମସ୍ୟା ବିଷୟରେ ଆଲୋଚନା କରି ସେମାନଙ୍କର ପରାମର୍ଶ ଗ୍ରହଣକରୁଥିଲେ । ନିଜକୁ ସାଧୁବେଶରେ ସଜାଇବାରେ ତାଙ୍କୁ ଆନନ୍ଦ ମିଳୁଥିଲା । ଲୁଣ୍ଠିତ ମସ୍ତକ, ଗୈରିକ ବେଶବାସ ତାଙ୍କୁ ଗଭୀର ଆନନ୍ଦ ଓ ତୃପ୍ତି ଦେଉଥିଲା । ସେ ସାମୟିକ ନିଜ ଘରୁ ସନ୍ଥମାନଙ୍କ ଗହଣକୁ ଚାଲିଯାଉଥିଲେ । ପୁରାଣ, ଭାଗବତ, ମହାଭାରତ, ରାମାୟଣ ପ୍ରଭୃତିର ପ୍ରଭାବ ତାଙ୍କ ଉପରେ ପୂର୍ବରୁ ପଡ଼ିଥିଲା । ବର୍ତ୍ତମାନ ସାଧୁ ସନ୍ଥ ସନ୍ନ୍ୟାସୀମାନଙ୍କର ସାନ୍ନିଧ୍ୟ ତାଙ୍କୁ ମୁଗ୍ଧ କରୁଥିଲା । ଏହା ଥିଲା ଆଦର୍ଶଗତ ଭାବପ୍ରବଣତାର ନବୀନ ରୂପ । ସେ ସାଧୁ-ସନ୍ଥମାନଙ୍କ ପ୍ରତି ଆକୃଷ୍ଟ ଥିଲେ ବୋଲି ବୁଝିବା ଉଚିତ ହେବନି ଯେ, ସେ ସେମାନଙ୍କର ଅନ୍ଧ ସ୍ତାବକ ଥିଲେ । ବିବଦମାନ ମତବାଦକୁ ସେ ଆଦୌ ଗ୍ରହଣ କରୁନଥିଲେ । ଯେଉଁ ମତାମତ ତାଙ୍କର ବିପ୍ଳବୀ ଅନ୍ତରକୁ ଉଦ୍‌ବୁଦ୍ଧ କରୁ-ନଥିଲା, ସେ ତାର ସମାଲୋଚନା କରୁଥିଲେ । ସନ୍ଥ, ସନ୍ନ୍ୟାସୀମାନଙ୍କ ସହିତ ତାଙ୍କର ସାମୟିକ ତର୍କ-ବିତର୍କ ମଧ୍ୟ ହେଉଥିଲା । କେହି ଜଣେ ନିଜର ମତକୁ ତାଙ୍କ ଉପରେ ଲଦି ଦେବାକୁ ସେ ଆଦୌ ସମର୍ଥନ କରୁନଥିଲେ । ସୁଭାଷ ଥିଲେ ବାସ୍ତବବାଦୀ ଓ କର୍ମଯୋଗୀ । ଯେଉଁ କ୍ରୀଡ଼ା ପ୍ରତି ବିମୁଖ ହୋଇ ସେ ଶିଶୁ ଅବସ୍ଥାରେ ଏକ ଅସ୍ୱାଭାବିକ ଜୀବନ ଯାପନ କରୁଥିଲେ, ସେହି କ୍ରୀଡ଼ା ହିଁ ହେଲା ତାଙ୍କ ପାଇଁ ନୂତନ ଦିଗଦର୍ଶକ । ଥରେ ସେ ଜଣେ ସନ୍ନ୍ୟାସୀଙ୍କ ସହିତ ଆଲୋଚନା ପ୍ରସଙ୍ଗରେ କହିଥିଲେ, "ମଣିଷ ଜୀବନର ଏକାନ୍ତ ଲକ୍ଷ୍ୟ ହେଉଛି ନିର୍ବାଣ । କେବଳ ଗୀତାପାଠ ଦ୍ୱାରା ମଣିଷକୁ ଏ ନିର୍ବାଣ ମିଳିବନାହିଁ; କ୍ରୀଡ଼ା ମାଧ୍ୟମରେ ଏହା ଲାଭ କରିବା ସମ୍ଭବ ।" ("Salvation will come through football and not through Gita.")

ବିଦ୍ୟାଳୟ ଜୀବନ ଭିତରେ ସେ ଯେଉଁ ନୂତନ ଜୀବନସ୍ୱାଦ ଲାଭକଲେ, ତାର ଅଂଶୀଦାର ହେବା ପାଇଁ ଆଉ କେତେଜଣ ସମଭାବାପନ୍ନ ଛାତ୍ରବନ୍ଧୁ ଆଗେଇଆସିଲେ । ରାମକୃଷ୍ଣ ଓ ବିବେକାନନ୍ଦଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇ ଅନ୍ୟ ଯେଉଁ ବନ୍ଧୁମାନେ ତାଙ୍କ ସହିତ ସହଯୋଗ କଲେ, ସେମାନଙ୍କୁ ନେଇ ସେ ଗୋଟିଏ ସେବାଦଳ ଗଠନ କଲେ । ନିଜର କେତେକ ଆତ୍ମୀୟ-ସ୍ୱଜନ ମଧ୍ୟ ରାମକୃଷ୍ଣ ତଥା ବିବେକାନନ୍ଦଙ୍କ ମାର୍ଗ ଅନୁସରଣ କରିଥିଲେ । ବନ୍ଧୁମାନଙ୍କ ମଧ୍ୟରେ ଧର୍ମଭାବନା କ୍ରମେ ନିଜ ନିଜ ମଧ୍ୟରେ ଗଭୀର ଆନ୍ତରିକତା ସୃଷ୍ଟି ଦିଗରେ ସହାୟକ ହେଲା । ସେଇ ତରୁଣଗୋଷ୍ଠୀ ମଧ୍ୟରେ ଆରମ୍ଭ ହେଲା ସାତ୍ତ୍ୱିକ

ସମାବେଶ । ଦିନକୁ ଦିନ ଏହାର କଳେବର ବୃଦ୍ଧିଲାଭ କଲା । ଏଇ ତରୁଣ ସଂସାରୀ ସନ୍ନ୍ୟାସୀମାନେ ଭାବବିହ୍ୱଳ କଣ୍ଠରେ ଭକ୍ତିମୂଳକ ଗଣ-ସଙ୍ଗୀତ ଗାନ କରୁଥିଲେ :

"ତୁମେଇ ମା ! ତୁମେଇ ବିଶ୍ୱଜନନୀ
ତୁମେଇ ଶାନ୍ତି, ତୁମେଇ ମୁକ୍ତିଦାୟିନୀ ।
ତୁମରି ଅଭୟ ଚରଣେ ମା ଗୋ !
ଅର୍ପିତ ମମ ପରାଣ
ପିତାମାତା ଅବା ସାଥୀ ପରିଜନ
ଚିହ୍ନେଁନା ବନ୍ଧୁ ସ୍ୱଜନ ।
ତୁମେ ଏ ଜୀବନେ ଚିର ଆଶ୍ରୟ ମମ ।
ତମେଇ ତାରିବ ଅନ୍ତରୁ ଘନ ତମ ॥"

କି ଉନ୍ମାଦନାମୟ···ଆବେଗମୟ ସେ ସଙ୍ଗୀତ । ଉଦାତ୍ତକଣ୍ଠରେ ସେ ସଙ୍ଗୀତ ଗାନ କରୁଥିଲେ । ଏଇପରି ଅସରନ୍ତି ଭକ୍ତିମୂଳକ ସଙ୍ଗୀତର ସେମାନେ ଥିଲେ ଉଦ୍‌ଗାତା । ସେମାନଙ୍କର ଏହି ଉଦ୍ଦୀପନାମୟ ସଙ୍ଗୀତ ବହୁ ଲୋକଙ୍କୁ ଆକର୍ଷଣ କରୁଥିଲା । ଅନ୍ୟମାନେ ଏଥିରୁ ଆନନ୍ଦ, ଶାନ୍ତି ଓ ପ୍ରେରଣା ଲାଭ କରୁଥିଲେ । ସୁଭାଷଙ୍କର ସାମାଜିକ ଭାବମୂର୍ତ୍ତି ଅନ୍ୟମାନଙ୍କ ସମ୍ମୁଖରେ ଥିଲା ଖୁବ୍ ଉଚ୍ଚ । ଅତ୍ୟନ୍ତ ଆନ୍ତରିକତାପୂର୍ଣ୍ଣ ତାଙ୍କର ସହଯୋଗୀ ସହପାଠୀମାନଙ୍କ ସମ୍ମାନ, ଶ୍ରେଣୀ ତଥା ସାମାଜିକ କ୍ଷେତ୍ରରେ ଆଦରଣୀୟ ଥିଲା । ସମସ୍ତେ ତାଙ୍କୁ ସମ୍ମାନ ଦେଉଥିଲେ । ତାଙ୍କ ଜୀବନର ଅସରନ୍ତି ସୁପ୍ତ ସ୍ୱପ୍ନ ନୂତନ ରୂପକଳ୍ପ ଗ୍ରହଣ କଲା । ସାତ୍ତ୍ୱିକ ଚିନ୍ତାଧାରା ଓ ସ୍ୱଦେଶପ୍ରାଣତା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ବିଦ୍ୟାଳୟ ଜୀବନରେ ଏ ପ୍ରକାର ପରିବର୍ତ୍ତନ ଓ ଭବ୍ୟ ଭାବନା ସବୁରି ଜୀବନରେ ଆଦୌ ସମ୍ଭବ ନୁହେଁ । ଅପରିପକ୍ୱ ଅପରିଣତ ବୟସରେ ଭାବୀ ଜୀବନର ସୁପରିକଳ୍ପିତ, ସୁସଂଗଠିତ ବିନ୍ୟାସ ସମସ୍ତଙ୍କ ଦ୍ୱାରା ସମ୍ଭବ ନୁହେଁ ।

ସୁଭାଷଙ୍କ ଗତିବିଧି, ଚାଲିଚଳନ, ଆଚାର-ବ୍ୟବହାରରେ ଥିଲା ସ୍ୱତନ୍ତ୍ରତା । ତାଙ୍କର ଆଚରଣଗତ ସ୍ୱାଧୀନତା ପିତାମାତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଏଥିପାଇଁ ସେମାନେ କଥାପ୍ରସଙ୍ଗରେ ନାନାକଥା ବୁଝାଉଥିଲେ । ଏହାର କିଛି ପ୍ରଭାବ ତାଙ୍କ ଉପରେ ପ୍ରାୟ ପଡ଼ିଲା ନାହିଁ । ସ୍ୱାଧୀନତାର ଗତି ସ୍ୱେଚ୍ଛାଚାରିତା ଆଡ଼କୁ ମୋଡ଼ ବଦଳାଇପାରେ ବୋଲି ବାପମା' ଆଶଙ୍କା କରୁଥିଲେ । ସେଥିପାଇଁ ସୁଭାଷଙ୍କୁ ଅନେକବାର ଭର୍ତ୍ସନା ଶୁଣିବାକୁ ପଡ଼ିଥିଲା । ଅନ୍ୟ ପିଲାମାନଙ୍କ ଗହଣରେ ବାହାରକୁ ଯିବାକୁ ଘରେ କେହି ପସନ୍ଦ କରୁନଥିଲେ । ସୁଭାଷଙ୍କ ଚରିତ୍ର, ଆଚରଣ ଓ କାର୍ଯ୍ୟକଳାପରେ ଦ୍ରୁତ ପରିବର୍ତ୍ତନ ସଂଘଟିତ ହେଉଥିଲା । ପ୍ରଥମେ ତାଙ୍କର ବିକାଶ ଥିଲା ବହିର୍ମୁଖୀ; କିନ୍ତୁ ପରେ ତାହା ଅନ୍ତର୍ମୁଖୀ ହୋଇଉଠିଲା । ସାଂସାରିକ ସ୍ୱାର୍ଥ, ଆନନ୍ଦ ତାଙ୍କୁ ଶାନ୍ତିଦାନ କରିପାରିଲା ନାହିଁ । ସଂସାରର ସମସ୍ତ ଭୋଗବାସନା ପରିତ୍ୟାଗ କରି ମୁକ୍ତିପଥରେ ଆଗେଇଯିବା ପାଇଁ

ରାମକୃଷ୍ଣଙ୍କର ମହାନ୍ ବାଣୀ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ନିଜର ସମାଜ, ପରିବାର, ପିତାମାତା ତାଙ୍କୁ ତୁଚ୍ଛ ମନେହେଉଥିଲା । ଗୋଟାଏ ପାଖରେ ସାଂସାରିକତା, ଅନ୍ୟ ପାଖରେ ବିମୁକ୍ତତା ସଂଘର୍ଷ···ସଂଘାତ···ଦ୍ୱନ୍ଦ୍ୱ···ନୈରାଶ୍ୟ···ବିରୋଧ···ଓ ବିଦ୍ରୋହ । ସୁଭାଷ ଏସବୁର ଭିତରେ ଲକ୍ଷ୍ୟପଥରେ ଆଗେଇଚାଲିଲେ । ପିତାମାତାଙ୍କର ବିରୋଧ ଯେତିକି ବଢ଼ିଲା, ସୁଭାଷ ସେତିକି ବିଦ୍ରୋହୀ ହୋଇଉଠିଲେ । ଧ୍ୟାନ, ପ୍ରାଣାୟାମ, ଯୋଗାଭ୍ୟାସ ପାଇଁ ସେ କୌଣସି ସିଦ୍ଧଗୁରୁଙ୍କ ସାନ୍ନିଧ୍ୟ ଓ ନିର୍ଦ୍ଦେଶ ପାଇନଥିଲେ । କେବଳ ଏ ସଂକ୍ରାନ୍ତରେ ଲିଖିତ ବହୁ ପୁସ୍ତକ ପାଠକରି ସେ ତାହା ଅଭ୍ୟାସ କରିଥିଲେ; ଏହା କିନ୍ତୁ ସେତେ ଫଳପ୍ରଦ ହେଉନଥିଲା । ସେ ଶେଷରେ ଅନୁଭବ କଲେ, ବିନା ଗୁରୁରେ ଯୋଗ ଅଭ୍ୟାସ କରାଯାଇପାରେନା ।

ମନର ଏକାଗ୍ରତା ଆଣିବା ପାଇଁ ସେ ନାନା କୌଶଳ ଅବଲମ୍ବନ କରୁଥିଲେ । ସନ୍ଧ୍ୟା ସମୟରେ ନୀଳ ଆକାଶକୁ ଅପଲକ ନୟନରେ ଚାହୁଁଥିଲେ । ଯେତେବେଳେ ମନ ସଂପୂର୍ଣ୍ଣ ଭାବରେ ଶୂନ୍ୟ ହୋଇଯିବା ପର୍ଯ୍ୟନ୍ତ ସେ ଏଇପରି ଅଭ୍ୟାସ କରୁଥିଲେ । ଧଳା କୁଡ଼ି ଭିତରେ ଗୋଟିଏ କଳା ବିନ୍ଦୁ ଦେଇ ତାକୁ ଘଣ୍ଟା-ଘଣ୍ଟା ଧରି ଚାହିଁବାର ଅଭ୍ୟାସ ସୃଷ୍ଟି କରିଥିଲେ । ଅନ୍ଧାରରେ ଘରକୋଣରେ ବସି ଧ୍ୟାନ କରୁଥିଲେ । ଶରୀର ପ୍ରତି କମ୍ ଅତ୍ୟାଚାର ମଧ୍ୟ କରାଯାଉନଥିଲା । ଶୀତ, କାକର, ଗ୍ରୀଷ୍ମ, ବର୍ଷାକୁ ସହ୍ୟ କରିବା ପାଇଁ ସେ ନିଜ ଶରୀରକୁ ଖୋଲାରଖୁଥିଲେ । ଅଭ୍ୟସ୍ତ ଖାଦ୍ୟକୁ ପରିହାର କରି ଅତି ସରଳ ନିରାମିଷ ଖାଦ୍ୟ ଗ୍ରହଣ କରୁଥିଲେ । ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରିବା ଓ କଠିନ କାର୍ଯ୍ୟ ସହିତ ନିଜକୁ ସଂପୃକ୍ତ କରିବା ତାଙ୍କର ଅଭ୍ୟାସଗତ ହୋଇଥିଲା । ଏସବୁ କିନ୍ତୁ ତାଙ୍କୁ ଲକ୍ଷ୍ୟପଥରେ ପହଞ୍ଚାଇ ପାରିଲା ନାହିଁ । ତାଙ୍କ ଭିତରେ ଏକପ୍ରକାର ମାନସିକ ବିକୃତି ଦେଖାଗଲା । ସେ ମାନସିକ ଭାରସାମ୍ୟ ରକ୍ଷା କରିପାରିଲେ ନାହିଁ ।

ଦିନକର ଘଟଣା । ଥରେ ଜଣେ ସାଧୁଙ୍କ ପରାମର୍ଶରେ ସେ ସକାଳୁ ଶଯ୍ୟାତ୍ୟାଗ କରି ନିଜର ପିତାମାତାଙ୍କୁ ପ୍ରଣାମ କରିବା ପାଇଁ ଆଗେଇଗଲେ । ଆଶ୍ଚର୍ଯ୍ୟ କଥା, ଯେଉଁ ପିଲା ପ୍ରତି ମୁହୂର୍ତ୍ତରେ ପିତାମାତାଙ୍କ କଥାରେ ବିଦ୍ରୋହ ଭାବ ପ୍ରକାଶ କରୁଥିଲା, ତା'ଭିତରେ ଆଜି ଏକ ଅଦ୍ଭୁତ ପରିବର୍ତ୍ତନ ! ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ; ବିଦ୍ରୂପଭରା ଚାହାଣିରେ ଚାହିଁଲେ । ନିଜର ପିତାମାତା ମଧ୍ୟ ଏହି ଆକସ୍ମିକ ଅକଳ୍ପିତ ଆଚରଣରେ ଆଶ୍ଚର୍ଯ୍ୟ ହୋଇ ଉଠିଲେ । ଏ ପରିସ୍ଥିତିରେ ସୁଭାଷ କିନ୍ତୁ କୌଣସି ପ୍ରତିକ୍ରିୟା ପ୍ରକାଶ କରିନଥିଲେ । ଅନେକଦିନ ଏପରି କରିବା ପରେ ଆପେ ଆପେ ତାହା ପୁଣି ବନ୍ଦ ହୋଇଗଲା । ସେ ଅନୁଭବକଲେ, ଏହାଦ୍ୱାରା ତାଙ୍କର କିଛି ପରିବର୍ତ୍ତନ ହୋଇନାହିଁ କିମ୍ବା ପିତାମାତାଙ୍କର ଆଚରଣର ମଧ୍ୟ ବିଶେଷ କିଛି ପରିବର୍ତ୍ତନ ହୋଇନାହିଁ । ସେ ତଥାପି ମଧ୍ୟ ତାଙ୍କର ସନ୍ଦେହ ପରିସର ମଧ୍ୟରେ ଅଛନ୍ତି । ରାମକୃଷ୍ଣ ଓ ବିବେକାନନ୍ଦଙ୍କର ବାଣୀ ତାଙ୍କର ମନେପଡ଼ିଲା—-'ସଂସାରର ମୋହ-ମମତା-ତ୍ୟାଗ ନକଲେ ମଣିଷକୁ ଶାନ୍ତି କିମ୍ବା ମୁକ୍ତି ମିଳିବନାହିଁ ।'

'ଜନତାର ସେବାହିଁ ଦେଶସେବା'—ଏହି ଦିବ୍ୟ ଅବବୋଧନ ତାଙ୍କ ଭିତରେ ସୃଷ୍ଟି ହୋଇଥିଲା । ସେ ଜନସେବା ମାଧ୍ୟମରେ ଦେଶସେବା ପାଇଁ ପ୍ରେରଣା ପାଇଥିଲେ । ଦୁଃସ୍ଥ, ଦଳିତ, ଦାରିଦ୍ର୍ୟପୀଡ଼ିତ ବ୍ୟକ୍ତିର ସେବାପାଇଁ ସେ ସର୍ବଦା ତତ୍ପର ହୋଇ ଉଠିଥିଲେ । ସେ ଅନୁଭବ କରୁଥିଲେ—'ଦରିଦ୍ରନାରାୟଣ-ସେବାହିଁ ଈଶ୍ୱର-ସେବା ।' ତାଙ୍କ ସଂସ୍ପର୍ଶରେ ଯେଉଁମାନେ ଆସୁଥିଲେ, ସେ ସେମାନଙ୍କୁ ଦରିଦ୍ର-ସେବାବ୍ରତରେ ଦୀକ୍ଷିତ କରୁଥିଲେ । ଅନ୍ୟକୁ ସାହାଯ୍ୟ କରିବା ଭିତରେ ସେ ଯଥେଷ୍ଟ ତୃପ୍ତି ଓ ଆନନ୍ଦ ଆହରଣ କରୁଥିଲେ ।

ବିଦ୍ୟାଳୟର ଛାତ୍ର-ଜୀବନ । ସେ କିଶୋର କୋମଳ ମନ ଭିତରେ ସେବା-ମନୋଭାବର ଦୋଳାୟିତ ଲତାଟିକୁ ଲତାୟିତ ହେବାପାଇଁ ସୁଯୋଗ ଦେଲେ । ରାମକୃଷ୍ଣ-ବିବେକାନନ୍ଦଙ୍କ ସେବାବାଣୀରେ ସେ ଉଦ୍‌ବୁଦ୍ଧ ହୋଇ ଗ୍ରାମ-ସଂଗଠନ ପ୍ରତି ଆଗ୍ରହ ପ୍ରକାଶ କରିଥିଲେ ।

ଦିନେ ସେ ତାଙ୍କର ସେବାଦଳର ବନ୍ଧୁମାନଙ୍କ ଗହଣରେ ଗୋଟିଏ ଗାଁରେ କିଛି କାମ କରିବା ପାଇଁ ପ୍ରବେଶକଲେ । ଗାଁର ଲୋକମାନେ ସେମାନଙ୍କୁ ଆଦର ସହିତ ଗ୍ରହଣ କରିଥିଲେ । ସେ ସେଗାଁରେ କିଛି ଜନହିତକର କାମ କଲେ । ଲୋକମାନେ ସେମାନଙ୍କୁ ଏ ଦିଗରେ ସାହାଯ୍ୟ ଓ ସହଯୋଗ ପ୍ରଦାନ କରିଥିଲେ । ଏହା ଥିଲା ତାଙ୍କର ତଥା ବନ୍ଧୁମାନଙ୍କର ଜୀବନର ପ୍ରଥମ ଅନୁଭୂତି । ସେବାରେ ମଣିଷ କେତେ ଆନନ୍ଦ ଲାଭକରେ, ସେ ଏଠାରେ ଅନୁଭବ କଲେ ।

ଆଉ ଦିନକର ଘଟଣା । ସେ ଅନ୍ୟ ଗୋଟିଏ ଗାଁକୁ ଯାଇଥିଲେ । ସେବାଦଳ ବି ତାଙ୍କ ସହିତ ଯାଇଥିଲା । ଆଶ୍ଚର୍ଯ୍ୟ କଥା, ସେମାନେ ଗାଁରେ ପହଞ୍ଚିଲାକ୍ଷଣି ଲୋକମାନେ ସମ୍ଭାଷଣ ଜଣାଇବା ପରିବର୍ତ୍ତେ ସମସ୍ତେ ଏକଯୁଟ ହୋଇ ଗାଁରୁ ବାହାରିଗଲେ । କାହାରି ସହିତ ବାର୍ତ୍ତାଳାପ ଓ କଥୋପକଥନ ହୋଇପାରିଲା ନାହିଁ । ଗାଁ ଲୋକମାନଙ୍କର ସମର୍ଥନ ନମିଳିବାରୁ ସୁଭାଷ ବ୍ୟସ୍ତ ହୋଇଉଠିଲେ । ସବୁଠାରୁ ତାଙ୍କ ପାଇଁ ଯନ୍ତ୍ରଣାଦାୟକ ଥିଲା ଗାଁ ଲୋକଙ୍କର ମନୋଭାବ । ସେମାନେ ବୋଧହୁଏ ଏହି ଆଗନ୍ତୁକମାନଙ୍କୁ ଅବିଶ୍ୱାସ କରୁଥିଲେ । ଏମାନଙ୍କର ଚରିତ୍ର ତଥା କାର୍ଯ୍ୟକଳାପ ପ୍ରତି ତାଙ୍କର ଆଦୌ ଆସ୍ଥା ନଥିଲା । ସୁଭାଷ ଏପ୍ରକାର ପରିସ୍ଥିତି ସୃଷ୍ଟି ହେବାର କାରଣ ଖୋଜିବାକୁ ଯାଇ ବିସ୍ମିତ ହେଲେ । ସବୁ କଥା ଜାଣିବା ପରେ ସେ ଲୋକମାନଙ୍କ ଉପରେ ଅଭିମାନ କରିପାରିଲେ ନାହିଁ । ତଥାକଥିତ ବାବୁଶ୍ରେଣୀର ଲୋକମାନଙ୍କ ଆଚରଣ ଗାଁ ଲୋକଙ୍କ ପ୍ରତି କେତେ କଦର୍ଯ୍ୟ ଓ ଶାଳୀନତାବିହୀନ, ସେ ତାହା ଅନୁଭବ କରିଥିଲେ । ଅତୀତରେ ଯେଉଁ ତଥାକଥିତ ଭଦ୍ରବ୍ୟକ୍ତି ସବୁ ସେ ଗାଁକୁ ଯାଇଛନ୍ତି, ସେମାନେ ନାନା ଅନାଚାର, ଅତ୍ୟାଚାର ଗାଁ-ଲୋକଙ୍କ ଉପରେ ଲଦିଦେଇ କ୍ଷମତା ଜାହିର କରିଛନ୍ତି । ଗାଁଲୋକମାନେ ଗାଁ ଭିତରେ ଭଦ୍ରଲୋକମାନଙ୍କର ପ୍ରବେଶକୁ ପସନ୍ଦ ନକରିବା—ଏହାହିଁ ହେଉଛି ପ୍ରଧାନ କାରଣ ।

ସେମାନଙ୍କର ଧାରଣା, ଏହି ବାବୁମାନେ ଆସିଛନ୍ତି ତାଙ୍କ ସ୍ୱାର୍ଥ ସିଦ୍ଧି କରିବାକୁ କମ୍ପା ପାଉଣା ଆଦାୟ କରିବାକୁ; ନରୁବା ଲୋକଙ୍କ ଉପରେ ଜୁଲୁମ କରିବାକୁ । ଓଡ଼ିଶାର ସୁଦୂର-ପଲ୍ଲୀରେ ବାସକରୁଥିବା ଲୋକମାନଙ୍କର ମଧ୍ୟ ଏହାହିଁ ଧାରଣା । କେତେକ ନିଜର ପ୍ରତିକ୍ରିୟା ପ୍ରକାଶ କରନ୍ତି, ଆଉ କେତେକ ତାହା ଲୁଚିରଖି ତାଙ୍କ ସନ୍ଦେହର ସୂଚନା କାହାକୁ ଦିଅନ୍ତିନାହିଁ; ବରଂ ପରିସ୍ଥିତି ସହିତ ଖାପ ଖୁଆଇ ଅଭିନୟ କରନ୍ତି ।

ଛାତ୍ରଜୀବନରେ ସୁଭାଷଙ୍କର ରାଜନୈତିକ ସଚେତନତା ଆଶାନୁରୂପ ଜାଗ୍ରତ ହୋଇନଥିଲା । ପାରିବାରିକ ଉତ୍ସାହର ଅଭାବ, ନିଜର ପ୍ରତିକୂଳ ମନୋଭାବ ଏବଂ ଓଡ଼ିଶା ପରି ଏକ ରାଜନୈତିକ ଅପରିପକ୍ୱ ରାଜ୍ୟରେ ପରିବେଶର ଅଭାବ, ଏଥିପାଇଁ ମୋଟାମୋଟି ଭାବରେ ଦାୟୀ । ସେତେବେଳେ ବ୍ରିଟିଶ ସରକାରଙ୍କ ପ୍ରତି ଏଡେମାତ୍ରାରେ ଭୟ ତଥା ଆନୁଗତ୍ୟ ଥିଲା, ଯାହା ଫଳରେ ଜାତୀୟ ବୀରମାନଙ୍କର ଫଟୋ ରଖିବାକୁ ମଧ୍ୟ ପିତାମାତା ବାରଣ କରୁଥିଲେ ।

ସେଦିନ ଜଣେ ବଙ୍ଗୀୟ ଯୁବକ କଟକ ଆସିଥିଲେ । ଭାରି ନାମଜାଦା ସେ । ସୁଭାଷଙ୍କ ବୟସଠାରୁ ସାମାନ୍ୟ ଟିକିଏ ଅଧିକ । ସେ ପ୍ରଥମ ଥରପାଇଁ ସୁଭାଷଙ୍କ ଜୀବନରେ ରାଜନୈତିକ ପ୍ରେରଣା ଏବଂ ପ୍ରୋତ୍ସାହନ ଦାନ କରିଥିଲେ । କଲିକତାରେ ତାଙ୍କର ଏକ ଅନୁଷ୍ଠାନ ଥିଲା, ଯାହାକି ରାଜନୀତି ସହିତ ନିବିଡ଼ ଭାବରେ ସଂପୃକ୍ତ । ଦେଶସେବା ହିଁ ଥିଲା ସେ ଅନୁଷ୍ଠାନର ଧ୍ୟେୟ । ଦେଶସେବା ପାଇଁ ଜୀବନ ଉତ୍ସର୍ଗ କରିବାକୁ ସେ ଏପରି ପ୍ରାଣସ୍ପର୍ଶୀ ଭାଷାରେ ଆବେଦନ କରିଥିଲେ, ଯାହା ପ୍ରତ୍ୟେକର ହୃଦୟକୁ ସ୍ପର୍ଶ କରିଥିଲା । ସୁଭାଷ ଏଥିରେ ଅନୁପ୍ରାଣିତ ହୋଇଥିଲେ । ତାଙ୍କ ଭିତରେ ଲୁଚିହୋଇ ରହିଥିବା ରାଜନୈତିକ ଚେତନା ଆସ୍ତେ ପ୍ରକାଶିତ ହେଲା । ସେ ସେହି ଅନୁଷ୍ଠାନ ସହିତ ପରେ ନିବିଡ଼ଭାବରେ ସମ୍ପର୍କ ସ୍ଥାପନ କଲେ । ରାଜନୈତିକ ଜୀବନର ପ୍ରଥମ ଅଙ୍କୁରଟି ଅନୁକୂଳ ପରିବେଶ ମଧ୍ୟରେ ଲତାୟିତ ହେଲା ।

ସୁଭାଷ କଟକରେ ଅବସ୍ଥାନ କରୁଥିବା ସମୟରେ ଏପରି ଏକ ବସ୍ତିରେ ବାସକରୁଥିଲେ ଯେଉଁଠାରେ ବହୁ ମୁସଲମାନ ମଧ୍ୟ ଥିଲେ । ପିଲାଟିଦିନରୁ ସେମାନଙ୍କ ସହିତ ମିଳିମିଶି ଚଳିବା ଫଳରେ ତାଙ୍କ ମନରେ ସାଂପ୍ରଦାୟିକ ସଙ୍କୀର୍ଣ୍ଣତା ସୃଷ୍ଟି ହୋଇ ନଥିଲା । ସଦ୍ଭାବ, ସଦିଚ୍ଛା ଭିତରେ ସେ ବଢ଼ିଥିଲେ । ଭବିଷ୍ୟତ ଜୀବନର ଉନ୍ନତି ଦିଗରେ ଏହା ଯଥେଷ୍ଟ ସହାୟକ ହୋଇଥିଲା ।

ସୁଭାଷ ୧୯୧୩ ମସିହାରେ ପ୍ରବେଶିକା ପରୀକ୍ଷା ଦେଇଥିଲେ ଏବଂ ସେ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ଏହି ସଫଳତା ତାଙ୍କୁ ଯଥେଷ୍ଟ ଆନନ୍ଦ ତଥା ମନୋବଳ ଦେବା ସହିତ ପିତାମାତାଙ୍କୁ ମଧ୍ୟ ଆନନ୍ଦିତ କରିଥିଲା । ଧର୍ମଭାବନା, ସ୍ୱଦେଶପ୍ରୀତି ଓ ବହୁ ରଚନାତ୍ମକ କାର୍ଯ୍ୟରେ ସେ ଲିପ୍ତ ରହି ଅଧ୍ୟୟନ ପ୍ରତି

ତାଙ୍କର ଅବହେଳା ଥିବାର ଧାରଣା ଅମୂଳକ ବୋଲି ପ୍ରମାଣିତ ହେଲା । କର୍ତ୍ତବ୍ୟନିଷ୍ଠାର ପୁରସ୍କାର ତାଙ୍କୁ ମିଳିଥିଲା । ବହୁମୁଖୀ ସାଧନା ଭିତରେ ସୁଭାଷ ନିଜକୁ ଲିପ୍ତ ରଖି ସବୁଦଗରେ ବିଶେଷ ଦକ୍ଷତା ପ୍ରଦର୍ଶନ କରି ପାରିଥିଲେ । ଏହାହିଁ ଥିଲା ତାଙ୍କ ବଳିଷ୍ଠ ଚରିତ୍ରର ମହନୀୟତା ଏବଂ ବିଶେଷତ୍ୱ ।

( ୨ )

ଏକ ନୂତନ ସ୍ୱର-ଝଂକାର : ଦୂରରୁ···ବହୁଦୂରରୁ ଭାସିଆସୁଥିବା ବଂଶୀର ସ୍ୱର-ଝଙ୍କାର ପରି ମନକୁ ଉତାଲ କରୁଛି । ସେ ଏକବାଗିଆ, ଲାଜକୁଳା, ମଉନମୁହାଁ ପିଲାଟି ଭିତରେ ସୃଷ୍ଟି ହୋଇଛି ନୂତନ ଶିହରଣ । ନୂତନ ମନ୍ତ୍ରରେ ସେ ଦୀକ୍ଷିତ ହେବ, ନୂତନ ଆଲୋକ-ପ୍ଳାବନରେ ମନର ମ୍ଳାନିମା ଧୋଇଦେବ । ବିଦ୍ୟାଳୟ-ଜୀବନୋତ୍ତର କିଶୋର କାଳ, ନବ ଯୌବନର ତାରୁଣ୍ୟ ଭିତରେ ସ୍ୱପ୍ନ ଦେଖୁଛି, "ସେ ପାରମ୍ପରିକତାର ପ୍ରପୀଡ଼ନା ସହ୍ୟ କରିବନାହିଁ, ଗତାନୁଗତିକତାର ଗଣଚେତନା ନେଇ ଗଡ୍ଡାଳିକା ପ୍ରବାହରେ ଯୋଗ ଦେବନି । ସେ ହେବ ଏକ ଭିନ୍ନ ସ୍ୱାଦର ମଣିଷ, ଭିନ୍ନ ରୁଚିର ରୂପକାର; ଯାହା ଲୋଭନୀୟ ନୁହେଁ; କିନ୍ତୁ ଶୋଭନୀୟ ।"

ସମ୍ପୂର୍ଣ୍ଣ ଖରେ ଏକ ନୂତନ ସିଦ୍ଧାନ୍ତ : "ଜୀବନରେ ମଣିଷର ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅଛି ଏବଂ ପ୍ରତି ମଣିଷପାଇଁ ବୋଟାଏ ନୂତନ ଅର୍ଥ ମଧ୍ୟ ରହିଛି । ଏହି ଲକ୍ଷ୍ୟର ପରିପୂରଣ ପାଇଁ ମନ ତଥା ଶରୀରର ନିୟମିତ ତାଲିମ ଆବଶ୍ୟକ । ଗତାନୁଗତିକ ଜୀବନପ୍ରବାହରେ ମଣିଷ କୌଣସି ନୂତନତ୍ୱ ସୃଷ୍ଟି କରି ପାରେନା । ଏ ପ୍ରକାର ତାଲିମର ଅନ୍ୟ ନାମ ହେଉଛି 'ଆତ୍ମସଂଯମ'; ଯାହାକି ଆତ୍ମୋପଲବ୍ଧିର ମୂଳଉତ୍ସ ।" ବିଶ୍ୱବିଦ୍ୟାଳୟ ଜୀବନର ବ୍ୟାପକ ବୃତ୍ତି ପାଇଁ ସୁଭାଷ ଏହାର ଆବଶ୍ୟକତା ଅନୁଭବ କରିଥିଲେ ।

କଟକ ଛାଡ଼ି ସେ କଲେଜଶିକ୍ଷା ପାଇଁ କଲିକତା ଆସିଲେ ।

ଗ୍ରୀଷ୍ମଛୁଟି ହୋଇଥାଏ । ଅଳ୍ପଦିନ ପରେ ନାଁ ଲେଖାଇବାକୁ ହେବ । ଅବସର ସମୟର ଯଥାର୍ଥ ବିନିଯୋଗ ପାଇଁ ସେ ବାଟ ପାଇଗଲେ । ସମଚିନ୍ତକ ବନ୍ଧୁମାନଙ୍କୁ ଖୋଜି ବାହାରକରିବାକୁ ହେବ । କଟକରେ ଥିବାବେଳେ ସେଇପରି ଏକ ନବୀନ ଗୋଷ୍ଠୀ ତାଙ୍କୁ ମିଳିଥିଲା; ଯଦିଓ ସେମାନଙ୍କର ସଂଖ୍ୟା ଥିଲା ଖୁବ୍ ଅଳ୍ପ । ସେ କଲିକତାର

ବିସ୍ମୃତ ଦିଗ୍‌ବଳୟ ମଧ୍ୟରୁ ଅନୁରୂପ ଭାବପ୍ରବଣ ବହୁ ନବୀନ ବନ୍ଧୁମାନଙ୍କର ସନ୍ଧାନ ପାଇଗଲେ । ଆଃ···କି ଆନନ୍ଦ ! ସତେ ଅବା କୋଟିନିଧି ମିଳିଯାଇଛି ! କଲିକତା ବର୍ତ୍ତମାନ ତାଙ୍କ ସମ୍ମୁଖରେ ଅଧିକ ଅର୍ଥପୂର୍ଣ୍ଣ, ଅଧିକ ରହସ୍ୟମୟ ହୋଇଉଠିଛି । ଜୀବନରେ ବହୁବାର କଲିକତାର ସାନ୍ନିଧ୍ୟ ଲାଭକରିଥିଲେ ମଧ୍ୟ ପ୍ରଥମଥରର ଅନୁଭୂତି ନୂତନ ଓ ରୋମାଞ୍ଚଭରା, ନୂତନ ଅର୍ଥଦ୍ୟୋତକ । ସେ ଅନୁଭବ କଲେ, ତାଙ୍କର ନୂତନ ଚିନ୍ତା-ଚେତନାର ପରିପୁଷ୍ଟି ପାଇଁ କଲିକତା ହିଁ ତାଙ୍କୁ ଯଥାର୍ଥ ପାଥେୟ ଯୋଗାଇବ । ପାଶ୍ଚାତ୍ୟ ସଭ୍ୟତା-ସିକ୍ତ କଲିକତାର ବର୍ଣ୍ଣାଢ୍ୟ ପରିବେଶ ତାଙ୍କ ଆଦର୍ଶର ଅନୁକୂଳ ନହେବାକଥା, କୋଳାହଳମୟୀ ନଗରୀର କ୍ଳାନ୍ତିକର ଜୀବନକୁ ସେ ପସନ୍ଦ ନକରିବା କଥା; କିନ୍ତୁ ସମଚିନ୍ତକ ବନ୍ଧୁମାନଙ୍କର ସାହଚର୍ଯ୍ୟ ତାଙ୍କୁ ନୂତନ ପରିସ୍ଥିତି ସହିତ ଖାପଖୁଆଇ ଚଳାଇନେବାକୁ ଅଧିକ ଉତ୍ସାହିତ କରିଥିଲା ।

ବିବେକାନନ୍ଦ ଓ ରାମକୃଷ୍ଣଙ୍କ ମହାନ୍ ବାଣୀ ଥିଲା ତାଙ୍କର ପଥପ୍ରଦର୍ଶକ । ନୂତନ ବନ୍ଧୁମାନଙ୍କ ଗହଣରେ ଅନେକ ଥିଲେ ତାଙ୍କରି ପରି 'ବିବେକା'-ପନ୍ଥୀ । ଆଧ୍ୟାତ୍ମିକ ଉନ୍ନତି, ମାନବଜାତିର ପ୍ରଗତି ହିଁ ଥିଲା ସେମାନଙ୍କର ପରମ ଲକ୍ଷ୍ୟ । ସୁଭାଷଙ୍କର ଗୋଷ୍ଠୀ ଥିଲା ପ୍ରକାରାନ୍ତରେ ଏକ ନବ ବିବେକାନନ୍ଦ-ଗୋଷ୍ଠୀ । "ଆତ୍ମ ଉପଲବ୍‌ଧି ପାଇଁ ବିଦ୍ରୋହ ଆବଶ୍ୟକ"—ଏହି ବାଣୀ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେମାନେ ଥିଲେ ପ୍ରକାରାନ୍ତରେ ବିଦ୍ରୋହୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ସୁଭାଷ ବୋଷ ଥିଲେ ଅତ୍ୟନ୍ତ ସ୍ପର୍ଶକାତର । କୈଶୋର ଜୀବନର ଭାବପ୍ରବଣତା ବୁଝିବାପାଇଁ ପାରିବାରିକ ପରିବେଶ ତାଙ୍କର ଅନୁକୂଳ ନଥିଲା । ଭବିଷ୍ୟତ ଜୀବନର ସର୍ବୋତ୍ତମ ବିକାଶ କିପରି ଭାବରେ ହୋଇପାରିବ ଓ ସେ ଜୀବନରେ କେଉଁ ମହାନ୍ ଆଦର୍ଶ ପଥର ପଥିକ ହେବେ, ଏଇ ଦୁଇଟି ଚିନ୍ତା ତାଙ୍କୁ ସର୍ବଦା ବ୍ୟସ୍ତ କରୁଥିଲା । ନୂତନ ପଥର ସନ୍ଧାନ ନିମିତ୍ତ ସେ ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ । ବହୁ ବିରଳ ବ୍ୟକ୍ତିତ୍ୱର ସାନ୍ନିଧ୍ୟ ଲାଭ କରିଥିଲେ । ଉଚ୍ଚ ହେବାର ଅଭିଳାଷ ପାଇଁ ବହୁ ମାନସିକ ସଂଘାତ ଓ ସଂଘର୍ଷ ଭିତରେ ତାଙ୍କୁ ଗତି କରିବାକୁ ପଡ଼ିଥିଲା । ଅପରିଣତ ବୟସରେ ମାନସିକ ଘାତ-ପ୍ରତିଘାତ ଥିଲା ତାଙ୍କ ପାଇଁ ଯନ୍ତ୍ରଣାମୟ । ତେବେ ସେଥିରୁ ତାଙ୍କୁ ଆତ୍ମବିଶ୍ୱାସ ଆହରଣର ସୁଯୋଗ ମିଳିଥିଲା । ଏହା ଏକ ଜୀବନବ୍ୟାପୀ ସୁଯୋଗ । ଏହାହିଁ ହେଲା ସୁଭାଷଙ୍କର ଭାବୀ ଜୀବନର ପାଥେୟ ।

ମଣିଷ ଭିତରେ ବିଭିନ୍ନ ପରିସ୍ଥିତିରେ ବହୁ ପରିବର୍ତ୍ତନର ସୂତ୍ରପାତ ହୁଏ । କିଶୋର ଅବସ୍ଥାରେ ଭାବପ୍ରବଣତାର ମାତ୍ରା ଅଧିକ । ପରିବର୍ତ୍ତନର ଗତି ଅନ୍ତର୍ମୁଖୀ । ଦୃଷ୍ଟିଭଙ୍ଗୀରେ ପ୍ରକାଶ ପାଏ ନୂତନତାର ଆଲେଖ୍ୟ । ସେ ଯେତିକି ଆତ୍ମକେନ୍ଦ୍ରିକ ହୁଏ, ତା ଅପେକ୍ଷା ଅଧିକ ସମାଜ-ସଚେତନତା ଓ ଆଧ୍ୟାତ୍ମିକତା ତା ମଧ୍ୟରେ ଦେଖାଦିଏ । ଅଧିକାଂଶ ପିତାମାତା, ଅଭିଭାବକ କିଶୋର-ଜୀବନର ବିଚିତ୍ରତା ବିଷୟରେ ଅବହିତ ନୁହନ୍ତି । ତାର

ପରିବର୍ତ୍ତନ ଉପରେ କୌଣସି ଗୁରୁତ୍ୱ ଆରୋପ କରନ୍ତି ନାହିଁ । ଗତାନୁଗତିକ ଜୀବନର ଦୃଷ୍ଟିଭଙ୍ଗୀରେ ଶିଶୁର ଚଳଣିକୁ ନିୟନ୍ତ୍ରଣ କରନ୍ତି । ବିଶେଷତ୍ୱ ପ୍ରତି ସେମାନେ କମ୍ବା ସତର୍କ ଦୃଷ୍ଟି ଦିଅନ୍ତି ନାହିଁ । ବ୍ୟତିକ୍ରମ ତଥା ପରିବର୍ତ୍ତନ ପାରିବାରିକ ସମର୍ଥନ ଲାଭ କରେନାହିଁ । ସୁଭାଷ ତାଙ୍କ କୈଶୋର ଅବସ୍ଥାରେ ଏ ପ୍ରକାର ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ଗୋଟାଏ ଦିଗରେ ବିବେକାନନ୍ଦ ରାମକୃଷ୍ଣଙ୍କର ମହାନ୍ ବାଣୀ ତାଙ୍କୁ ନୂତନ ଦିଗ୍‌ବଳୟର ସନ୍ଧାନ ଦେବାବେଳେ ଅନ୍ୟ ଦିଗରେ ସଂସାରର ନିଛକ ବାସ୍ତବତା ତାଙ୍କୁ ସାଂସାରିକତା ଆଡ଼କୁ ଟାଣୁଥିଲା । ଦୁଇଟି ବିପରୀତ ଶକ୍ତିର ଆକର୍ଷଣ ଭିତରେ ସେ ନିଜକୁ ସମୟେ ସମୟେ ଅସହାୟ ମନେକରୁଥିଲେ ।

୧୯୧୩ ମସିହାରେ ସୁଭାଷ କଲିକତାର ପ୍ରେସିଡେନ୍‌ସି କଲେଜରେ ଯୋଗ-ଦେଇଥିଲେ । ତାହା ଥିଲା ବିଶ୍ୱବିଦ୍ୟାଳୟର ଏକ ଅଗ୍ରଗଣ୍ୟ କଲେଜ । ସେଠାରେ କେବଳ ମେଧାବୀ ଛାତ୍ରମାନେ ସ୍ଥାନ ପାଉଥିଲେ । ସୁଭାଷ ନୂତନ ସମଭାବାପନ୍ନ ବନ୍ଧୁମାନଙ୍କୁ ନେଇ ଯେଉଁ ଛାତ୍ରଗୋଷ୍ଠୀ ଗଠନ କରିଥିଲେ, ସେମାନେ କଲେଜର ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଚାଲିଚଳନ, ଆଚାର-ବ୍ୟବହାର, ବେଶ-ପୋଷାକ ତଥା ଆଦବ-କାଇଦାରେ ସେମାନଙ୍କ ମଧ୍ୟରେ ବ୍ୟତିକ୍ରମ ଲକ୍ଷ୍ୟ କରାଯାଉଥିଲା ।

କଲେଜର ଅଧିକାଂଶ ଛାତ୍ର ଥିଲେ ସ୍ୱାଧୀନଚେତା । ସେମାନଙ୍କର ଦୃଷ୍ଟିଭଙ୍ଗୀ ଓ ରୁଚିବୋଧରେ ସ୍ୱାତନ୍ତ୍ର୍ୟ ଥିଲା । ବ୍ରିଟିଶ ସରକାରଙ୍କର ଗୁପ୍ତ ପୋଲିସ ସଂସ୍ଥା ଏମାନଙ୍କ ଉପରେ କଠୋର ଦୃଷ୍ଟି ରଖିଥିଲା । ମୁଖ୍ୟ ଛାତ୍ରାବାସ ଥିଲା ମୁଖ୍ୟତଃ ରାଜନୈତିକ ଆଲୋଚନାଚକ୍ରର ମୁକ୍ତଶାଳା । ସମୟେ ସମୟେ ପୁଲିସମାନେ ଅତର୍କିତ ଭାବରେ ଏହି ଛାତ୍ରାବାସ ଉପରେ ଚଡ଼ାଉ କରୁଥିଲେ । ଷୋଳ ବର୍ଷ ବୟସର ନବୀନ ଯୁବକ ସୁଭାଷ ଓ ସମବୟସର ବନ୍ଧୁମାନେ ପୁଲିସ ଦ୍ୱାରା ସାମୟିକ ଆକ୍ରାନ୍ତ ହେଲେ ମଧ୍ୟ ଅକଳ୍ପିତ ପରିବେଶରୁ ତାଙ୍କୁ ଯଥେଷ୍ଟ ଆନନ୍ଦ ମିଳୁଥିଲା । ଧର୍ମ ଓ ରାଜନୀତି ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ସ୍ଥାପନ କରିବା ସୁଭାଷ-ଗୋଷ୍ଠୀର ଚରମ ପ୍ରଚେଷ୍ଟା ଥିଲା । ସେମାନେ ବିପ୍ଳବୀ ଓ ବିପ୍ଳବ-ପନ୍ଥୀ ବୋଲି ସମସ୍ତେ ଜାଣିଥିଲେ । କିନ୍ତୁ ସେମାନଙ୍କର ଆତଙ୍କବାଦ ଉପରେ ଆଦୌ ବିଶ୍ୱାସ ନଥିଲା । ସେମାନେ ବିପ୍ଳବୀ ହେଲେ ମଧ୍ୟ ଉଗ୍ରପନ୍ଥୀ ନଥିଲେ । ସେମାନେ ଯେକୌଣସି ପ୍ରକାରର ଷଡ଼ଯନ୍ତ୍ରକୁ ଘୃଣ୍ୟ ମନେ କରୁଥିଲେ । ନୂତନ ଅବବୋଧନ, ନୂତନ ଚିନ୍ତାଧାରା ଓ ନୂତନ ଜ୍ଞାନ ଆହରଣ ପାଇଁ ସେମାନଙ୍କ ମଧ୍ୟରେ ଗଭୀର ପିପାସା ଥିଲା ।

ସ୍ୱାଧୀନମାର୍ଗୀ ନୂତନ ବନ୍ଧୁମାନଙ୍କର ସମାବେଶ ଭିତରେ ସୁଭାଷ ନିଜକୁ ହଜାଇ ଦେଉଥିଲେ । ମଝିରେ ମଝିରେ ଦଳ ଦଳ ହୋଇ ସେମାନେ ବିଶିଷ୍ଟ ସ୍ଥାନ, ଇତିହାସ-ପ୍ରସିଦ୍ଧ ସ୍ଥାନ, ତୀର୍ଥସ୍ଥାନ ପ୍ରଭୃତି ଭ୍ରମଣ କରିବା ପାଇଁ ଯାଉଥିଲେ । ନିଜ ନିଜ ମଧ୍ୟରେ ଭାବ ବିନିମୟ ପାଇଁ ବିଭିନ୍ନ ଜାଗାରେ ବନ୍ଧୁ ସମାବେଶ ଅନୁଷ୍ଠିତ ହେଉଥିଲା । ପ୍ରତିଷ୍ଠିତ

ଲୋକମାନଙ୍କ ସହିତ ସେ ସାକ୍ଷାତ କରିବା ପାଇଁ ଯାଉଥିଲେ । ସେମାନଙ୍କ ସହିତ ବହୁ ସାରଗର୍ଭିକ ଆଲୋଚନା କରାଯାଉଥିଲା ।

କଲେଜ-ଜୀବନରେ ସୁଭାଷ ଧର୍ମାନୁଷ୍ଠାନ ପ୍ରତି ଅଧିକ ଭାବରେ ଆକର୍ଷିତ ହୋଇଥିଲେ । ଆଧ୍ୟାତ୍ମିକତା, ଅଧ୍ୟୟନର ପରିସର ମଧ୍ୟରେ ଏହି ସ୍ୱପ୍ନିଳ ଯୁବମନକୁ ଉଦ୍‌ବୁଦ୍ଧ କରିଥିଲା । ସେ ସମୟରେ ଅରବିନ୍ଦ ଘୋଷ ବଙ୍ଗଳାର ଜଣେ ପ୍ରଖ୍ୟାତନାମା ନେତା ଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦରେ ସେ ପଣ୍ଡିଚେରୀରେ ଇଚ୍ଛାକୃତ ନିର୍ବାସନ ଗ୍ରହଣ କରିଥିଲେ । ସେଠାରୁ ସେ ଏକ ଖୁବ୍ ପ୍ରଭାବଶାଳୀ ଚେତନାଧର୍ମୀ ମାସିକ ପତ୍ରିକା "ଆର୍ଯ୍ୟ" ପ୍ରକାଶ କରୁଥିଲେ । ଏହି ପତ୍ରିକାର ଚେତନାଦ୍ୟୋତକ ଲେଖା ନବଯୁବକ ସୁଭାଷଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ସେ ନିୟମିତ ଭାବରେ ତାହା ପାଠ କରୁଥିଲେ । ଯୋଗର ପରମ ପରାକାଷ୍ଠା ବିଷୟରେ ସେ ସେହି ପତ୍ରିକା ମାଧ୍ୟମରେ ଅବହିତ ହେଲେ । ଯୋଗବଳରେ ମନୁଷ୍ୟ ବୃହତ୍ତର ପରିସୀମାକୁ ଯେ ଗମନ କରିପାରେ ଓ ଯୋଗହିଁ ପୂର୍ଣ୍ଣତାପ୍ରାପ୍ତିର ଏକମାତ୍ର ସହାୟକ, ସେ ଏହି ସତ୍ୟରେ ଉପନୀତ ହୋଇଥିଲେ; ଫଳରେ ସେ ଯୋଗ ପ୍ରତି ଆକର୍ଷିତ ହୋଇଥିଲେ ।

ଲୋକମାନ୍ୟ ବାଳଗଙ୍ଗାଧର ତିଳକ ସେତେବେଳେ ଜାତୀୟ କଂଗ୍ରେସର ବାମପନ୍ଥୀ ସାମ୍ପ୍ରଦାୟର ଅତି ଲୋକପ୍ରିୟ ନେତା ଥିଲେ । ତାଙ୍କୁ ସମସ୍ତେ 'ବଡ଼ଦାଦା' ବୋଲି ଡାକୁଥିଲେ । ଅରବିନ୍ଦଙ୍କର ତାଙ୍କ ସହିତ ଗଭୀର ଯୋଗସୂତ୍ର ଥିଲା । ଅରବିନ୍ଦଙ୍କୁ ସମସ୍ତେ 'ସ୍ତେଜଦାଦା' ବୋଲି ସମ୍ବୋଧନ କରୁଥିଲେ । ତିଳକଙ୍କର ସାନ୍ନିଧ୍ୟ ଅରବିନ୍ଦଙ୍କୁ ସର୍ବଭାରତୀୟ ନେତୃତ୍ୱ ଓ ଲୋକପ୍ରିୟତା ଦେଇଥିଲା । ସୁଭାଷଚନ୍ଦ୍ର ଅରବିନ୍ଦଙ୍କ ଲେଖାରେ ରହସ୍ୟବାଦର ଚିହ୍ନ ଦେଖିବାକୁ ପାଇଥିଲେ । ରହସ୍ୟ, ରୋମାଞ୍ଚ ଓ ନିଗୂଢ଼ ଦର୍ଶନ ଭିତରେ ସେ ଅଧିକାଂଶ ସମୟରେ ମଗ୍ନ ରହୁଥିଲେ । ଅରବିନ୍ଦଙ୍କର ପ୍ରାଣପ୍ରସାରୀ ଶକ୍ତିଶାଳୀ ଲେଖାହିଁ ସୁଭାଷଙ୍କ ମନରେ ଧାରଣା ସୃଷ୍ଟି କରିଥିଲା ଯେ "ଆଧ୍ୟାତ୍ମିକ ଜ୍ଞାନାଲୋକ ବ୍ୟତୀତ ମନୁଷ୍ୟ ଉପଯୋଗିତାର ସହି ଦେଶସେବା କରିପାରିବ ନାହିଁ । ଧର୍ମ ଓ ରାଜନୀତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ।"

ସୁଭାଷଙ୍କର ତରଳ ସ୍ୱପ୍ନିଳ ମନ ଉପରେ ଏହାର ପ୍ରଭାବ ଥିଲା ନିବିଡ଼ । ତେଣୁ ସେ ଧର୍ମଗୁରୁମାନଙ୍କ ଅନୁସନ୍ଧାନରେ ନୂତନ ଜୀବନାଲୋକ ପାଇଁ ସର୍ବଦା ବ୍ୟାକୁଳ ଥିଲେ । ତାଙ୍କ ମନ ଉପରେ ବହୁ ବିପରୀତ ଶକ୍ତିର ପ୍ରଭାବ ପଡ଼ିବା ଫଳରେ ଅଧିକାଂଶ ସମୟରେ ତାଙ୍କୁ ଦ୍ୱନ୍ଦ୍ୱାଚ୍ଛନ୍ନ ରହିବାକୁ ପଡ଼ୁଥିଲା । ପାରିବାରିକ ଜୀବନର ନିଛକ ବାସ୍ତବତାଠାରୁ ସେ ଆସ୍ତେ ଆସ୍ତେ ଦୂରେଇଯାଉଥିଲେ; ତେବେ ପରିବାରକୁ ସେ ଛାଡ଼ିଦେଇପାରୁନଥିଲେ କିମ୍ବା ତାକୁ ପରିହାର କରିପାରୁନଥିଲେ ।

ଦେଶସେବା ପାଇଁ ଧର୍ମଗୁରୁମାନଙ୍କଠାରୁ ପ୍ରେରଣା ଲାଭ କରିବା ତାଙ୍କର ଅଦମ୍ୟ ଇଚ୍ଛାଥିଲା । ସେ ସର୍ବଦା ସେମାନଙ୍କର ଅନୁସନ୍ଧାନରେ ରହୁଥିଲେ । ବିଭିନ୍ନ ଧର୍ମାନୁଷ୍ଠାନ

ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରୁଥିଲେ । ସେ ଅନୁଭବ କରୁଥିଲେ ଯେ ମଣିଷ ନୀତିପୁଷ୍ଟ ଜୀବନର ଅଧିକାରୀ ହୋଇ ନପାରିଲେ କୌଣସି ନିରୁତା ସେବାମୂଳକ କାର୍ଯ୍ୟ ସମ୍ପାଦନ କରିପାରିବ ନାହିଁ । ନୂତନ ପ୍ରାଣଶକ୍ତିର ଆହରଣ ପାଇଁ ପ୍ରାଣ ତାଙ୍କର ସର୍ବଦା ବ୍ୟାକୁଳ ଥିଲା ।

ଜୀବନର ଏକ ରୋମାଞ୍ଚକର ଅନୁଭୂତି ।

ସେ ଏଥିଭିତରେ ଏକ ସେବାଦଳର ସଭ୍ୟ ହୋଇଗଲେଣି; ତାହା ହେଉଛି ଦକ୍ଷିଣ କଲିକତାର 'ଅନାଥ ଭଣ୍ଡାର' । ଅନେକ କଲେଜ-ଛାତ୍ର, ବହୁ ସେବାଶୀଳ ଯୁବକ ଏହି ଅନୁଷ୍ଠାନର କର୍ମୀ । ସେମାନେ ଦୁସ୍ଥ, ପୀଡ଼ିତ, ଯନ୍ତ୍ରଣାଗ୍ରସ୍ତ ଲୋକମାନଙ୍କ ପାଇଁ ଘର ଘର ବୁଲି ଅର୍ଥ ସଂଗ୍ରହ କରନ୍ତି । ଖାଦ୍ୟ, ବସ୍ତ୍ର, ଖାଦ୍ୟ-ସାମଗ୍ରୀ, ବାସ-ସାମଗ୍ରୀ ସଂଗ୍ରହ କରାଯାଏ ଓ ତାହା ବିଂଚିତ ଲୋକମାନଙ୍କର ସେବାରେ ବିନିଯୋଗ କରାଯାଏ ।

ସେଦିନ ସୁଭାଷ କାନ୍ଧରେ ଭିକ୍ଷାଝୁଲି ଧରି ବାହାରିପଡ଼ିଲେ—ଜୀବନର ଏକ ସଂପୂର୍ଣ୍ଣ ନୂତନ ଅନୁଭୂତି । ତଥାକଥିତ ସମ୍ଭ୍ରାନ୍ତ ବିଭବବନ୍ତ ରାଜଦୁଲାଲ ସୁଭାଷଙ୍କ କାନ୍ଧରେ ଭିକ୍ଷା-ଝୁଲି ! ସେ ଦ୍ୱାର ଦ୍ୱାର ଯିବେ, ଦ୍ୱାରପାଳର ଦୟାଭିକ୍ଷା କରିବେ ଦରିଦ୍ର ଜନତାର ଦୁଃଖ ତାପ ଦୂର କରିବେ ବୋଲି ।

ପ୍ରଥମେ ପ୍ରଥମେ ଭାରି ଅଡ଼ୁଆ ଲାଗିଲା ତାଙ୍କୁ । ସେ ଟିକିଏ ଅସ୍ୱସ୍ତି ଅନୁଭବ କଲେ; ସାମନାକୁ ସିଧା ଚାହିଁପାରିଲେନି—ଏପାଖ ସେପାଖ ମୁହଁ ବୁଲାଇ ପାରିଲେ ନାହିଁ । ବସୁମାତାର ବଦନ ହିଁ ଥିଲା ତାଙ୍କ ପାଇଁ ପ୍ରେରଣାର ଉତ୍ସ ! ନତମୁଖ ସୁଭାଷ ଚାଲିପଥର ବାଲିବୁକୁରେ ପଦାଙ୍କ ଲେଖି ଆଗକୁ ଆଗେଇଲେ । ଏହି ବାଲିଶଯ୍ୟାହିଁ ତାଙ୍କୁ ପ୍ରେରଣା ଦେଲା । କେଉଁ ଅନାଦି ଯୁଗରୁ ଏ ବାଲି-ବିସ୍ତାର ସେଇପରି ପଡ଼ିଛି । କାଳ-କାଳଧରି ଲୋକମାନେ, ଜୀବସମାଜ ତାକୁ ମାଡ଼ିମକଚି ଆଗେଇଯାଇଛନ୍ତି କେଉଁ ଅନନ୍ତ ମହାସତ୍ତା ମଧ୍ୟରେ ନିଜକୁ ଲୀନ କରିବାକୁ । ଆଜି ସେମାନେ ନାହାନ୍ତି, ସେମାନଙ୍କର ପଦଲିପି ନାହିଁ; କିନ୍ତୁ ବାଲି-ବିସ୍ତାର ଅଛି । ଅନ୍ୟମାନଙ୍କୁ ଆହ୍ୱାନ ଜଣାଉଛି, "ଆସ, ହେ ନବୀନ ଅତିଥିଗଣ ଆସ; ହେ ସୃଷ୍ଟି-କୃଷ୍ଟିର ଉଦ୍‌ଗାତାଗଣ ! ମୋ ଛାତିରେ ତମ ପଦ-ପୁଷ୍ପ ବିଛେଇ ଦେଇ ବିଶ୍ୱସେବାରେ ଆଗେଇଯାଅ । ବହୁ ସମାଲୋଚନାର ତୁମେ ସମ୍ମୁଖୀନ ହେବ, ବହୁ ପ୍ରଶଂସାର ଅବିର ଅବିରତ ମିଳିବ । ସେଥିପ୍ରତି ଦୃଷ୍ଟି ଦେବାର କିଛି ନାହିଁ । କର୍ତ୍ତବ୍ୟ ଦେବାନେବାର ହିସାବ କିଛି ରଖେନା ।"

ସୁଭାଷ ପ୍ରେରଣା ପାଇଗଲେ ଚାଲିପଥର ଧୂଳିଧାରରୁ ।

ମନରେ ପୁଣି ଦ୍ୱନ୍ଦ୍ୱ, ଭୟ । ପରିବାରର ଲୋକ କିମ୍ବା ପରିଚିତ ଲୋକ ହାବୁଡ଼ରେ ପଡ଼ିଗଲେ ଲଜ୍ଜିତ ହେବାକୁ ହେବ । ଲଜ୍ଜା ତାଙ୍କୁ ଭାରି ବିବ୍ରତ କଲା । ନୂତନ ଉନ୍ମାଦନାର

ଅଭିନବ ଦ୍ୟୋତନା ତାଙ୍କୁ ଆଗେଇନେଲା ଆଗକୁ । ଲଜ୍ଜାର ପାତଳ ଆବରଣ ଅପସରି-ଗଲା । ପୀଡ଼ିତର ସେବାପାଇଁ ସେ ନିଜକୁ ଉତ୍ସର୍ଗ କଲେ ।

ସୁଭାଷ ନିଜ ପଢ଼ାପଢ଼ି ପ୍ରତି ବିଶେଷ ଧ୍ୟାନ ଦେଇପାରିଲେ ନାହିଁ । ସମାଜମଙ୍ଗଳ କାର୍ଯ୍ୟରେ ନିଜକୁ ବ୍ୟାପୃତ ରଖିବା ଫଳରେ ପାଠପଢ଼ା ସ୍ୱାଭାବିକ ଭାବରେ ବ୍ୟାହତ ହେଲା । କଲେଜର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ନିଜକୁ ଲିପ୍ତ ରଖିଥିଲେ । ତର୍କସଭା, କ୍ରୀଡ଼ା, ସେବାକାର୍ଯ୍ୟ ପ୍ରଭୃତିରେ ସେ ନିଜକୁ ସକ୍ରିୟ ଭାବରେ ଜଡ଼ିତ କରୁଥିଲେ ।

କଲିକତାରେ ଥିବା ସମୟରେ ସୁଭାଷଙ୍କ ଭିତରେ କିଛି ମାତ୍ରାରେ ସ୍ୱେଚ୍ଛାଚାରିତା ପ୍ରକାଶ ପାଇଥିଲା । ଦିନେ ଦିନେ ସେ ବିନାନୁମତିରେ ଘରୁ ଚାଲିଯାଇ ବାହାରେ ରହୁଥିଲେ । ବାହାରେ ଏକାଧିକ ଦିନ ମଧ୍ୟ ସେ ରହିଯାଉଥିଲେ । ଅବଶ୍ୟ ସେ ରହଣିଟା ଥିଲା ନିଜର ସାଙ୍ଗସାଥୀମାନଙ୍କ ଗହଣରେ କିମ୍ବା କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ନିକଟରେ । ନୀତିହୀନ ଅବାଞ୍ଛିତ ସାଥୀମାନଙ୍କର ସାନ୍ନିଧଠାରୁ ସେ ଦୂରରେ ରହୁଥିଲେ ।

କେତେଗୁଡ଼ିଏ ଛୋଟ ଛୋଟ ଘଟଣାପ୍ରବାହ ଭିତରୁ ସେ ନିଜ ଜୀବନର ଆଭିମୁଖ୍ୟ ନିର୍ଣ୍ଣୟ କରୁଥିଲେ । ଭବିଷ୍ୟତ ଜୀବନର ରୂପାୟନ ନିମନ୍ତେ ତାହାହିଁ ଥିଲା ତାଙ୍କ ପାଇଁ ପ୍ରେରଣାର ଉତ୍ସ ।

ଦିନକର ଘଟଣା । ନିତିଦିନ ସେ ସେହି ଭିକାରୁଣୀ ବୁଢ଼ୀଟିକୁ ଦେଖନ୍ତି । ସେ ତାଙ୍କ ଘର ପାଖରେ ବସି ପଇସା ମାଗେ । ତା' ଆଖିର କାତର ଚାହାଣି, ମୁହଁର କ୍ରନ୍ଦନଭରା ଭଙ୍ଗୀ, ସାହାଯ୍ୟ ପାଇଁ ବିକଳ ନିବେଦନ ତାଙ୍କର ସମ୍ବେଦନଶୀଳତା ବୃଦ୍ଧି କରିବା ଦିଗରେ ସାହାଯ୍ୟ କରିଥିଲା । ନିଜର ପ୍ରାଚୁର୍ଯ୍ୟଭରା ଜୀବନ ସହିତ ଏହି ହତଭାଗିନୀ ସ୍ତ୍ରୀ-ଲୋକଟିର ଦୁର୍ଦ୍ଦଶା-ପ୍ରପୀଡ଼ିତ ଜୀବନକୁ ସେ ନିଜ ଭିତରେ ତୁଳନା କରୁଥିଲେ । ଆପଣାର ସୁଖସମୃଦ୍ଧିଭରା ସ୍ଥିତିକୁ ସେ ଅପରାଧ ବୋଲି ମନେକରୁଥିଲେ । ସମାଜରେ ଦଳେ ଲୋକ ଐଶ୍ୱର୍ଯ୍ୟର ଦୋଳନାରେ ଦୋଳାୟିତ ହେବାବେଳେ ଅନ୍ୟ କେତେକ ହତଭାଗ୍ୟ ଯେ ପେଟ-ପିଠିର ଆବଶ୍ୟକତା ପୂରଣ କରିବା ପାଇଁ ତିଳେ ତିଳେ ଦଗ୍ଧ ହେବେ—ସେ ଏହା ଆଦୌ ପସନ୍ଦ କରୁନଥିଲେ । ଏ ପ୍ରକାର ସାମାଜିକ ଉତ୍ପୀଡ଼ନକୁ କୌଣସି ମତେ ବନ୍ଦ କରିବାକୁ ହେବ, ଏହା ଥିଲା ତାଙ୍କର ଆନ୍ତରିକ ଇଚ୍ଛା ।

ଜୀବନ-ସଙ୍ଗୀତର ସ୍ୱର-ମୂର୍ଚ୍ଛନା ଭିତରେ ସେଇ ପ୍ରାଣଚହଲା ନୂତନ ଝଙ୍କାର ଶୁଣାଗଲା—ବିଦ୍ରୋହ···ବିଦ୍ରୋହ !! ପ୍ରଚଳିତ ସାମାଜିକ ଚଳଣି ବିରୁଦ୍ଧରେ ବିଦ୍ରୋହ ।

କଲେଜ-ଜୀବନର ପ୍ରଥମ ବର୍ଷ । ସେତେବେଳେ ଗ୍ରୀଷ୍ମାବକାଶ ପାଇଁ କଲେଜ ବନ୍ଦ ଥାଏ । ସୁଭାଷ କଟକ ଫେରିଥାନ୍ତି । ବାପ ମା' ଓ ପରିବାରବର୍ଗଙ୍କ ଗହଣରେ ଛୁଟିଦିନ-

ଗୁଡ଼ାକ ଆନନ୍ଦରେ କଟାଇବେ । ପୁରୁଣା ସାଙ୍ଗସାଥୀମାନେ ଖବର ପାଇ ତାଙ୍କ ପାଖକୁ ଚାଲିଆସିଲେ । ଭାରି ଆନନ୍ଦ ଲାଗିଲା···ଅତୀତର ସ୍ମୃତିସିକ୍ତ ଦିନଗୁଡ଼ାକ କି ମଧୁର !

ଖବର ପାଇଲେ, ଦୂର ମଫସଲ ଗାଁଗୁଡ଼ିକରେ ହଇଜା ଲାଗିଛି । ଶହ ଶହ ଲୋକ ପୋକମାଛି ପରି ମରୁଛନ୍ତି । ସେମାନଙ୍କର ସେବା ପାଇଁ ସେପରି କୌଣସି ସାହାଯ୍ୟର ସୁଯୋଗ ମିଳୁନାହିଁ । ପୁରାତନ ବନ୍ଧୁମାନଙ୍କୁ ନେଇ ଦଳେ ଯୁବକ ଜୀବନଙ୍କୁ ଉତ୍ସର୍ଗକରି ଆଗେଇଆସିଲେ ଉପଦ୍ରୁତ ଅଞ୍ଚଳରେ କାମ କରିବେ ବୋଲି । ସୁଭାଷଙ୍କୁ ଅନୁରୋଧ କରାଗଲା । ସେ ଆନନ୍ଦରେ ନିଜର ସମ୍ମତି ଦେଲେ । ଘରେ ପ୍ରକୃତ ଘଟଣା ନକହି, କେବଳ କେତେଦିନ ପାଇଁ ବିଶେଷ କାମରେ ଯାଉଛନ୍ତି ବୋଲି ସୂଚନା ଦେଇ ଅନୁମତି ନେଲେ ।

ସେବାଦଳ କଲେରାଗ୍ରସ୍ତ ଅଞ୍ଚଳକୁ ଆଗେଇଲେ । ସମସ୍ତେ ପ୍ରାୟ ଭାବପ୍ରବଣ ଯୁବକ । ସେମାନଙ୍କ ମଧ୍ୟରେ ଜଣେ ହେଲେ ଡାକ୍ତର ନାହାନ୍ତି । ହୋମିଓପ୍ୟାଥିରେ ସମ୍ୟକ୍ ଧାରଣା ଥିବା ଜଣେ ବ୍ୟକ୍ତି ବାକ୍ସଟିଏ ଧରି ସେବାଦଳରେ ଯୋଗଦେଇଥିଲେ । ସେ ଥିଲେ ସେମାନଙ୍କର ଏକମାତ୍ର ଆଶା-ଭରସା ।

ଗାଁ-ଗାଁ ବୁଲି ସେମାନେ ଔଷଧ ବିତରଣ କଲେ । ରୋଗଗ୍ରସ୍ତ ଲୋକମାନଙ୍କ ସେବାପାଇଁ ସେମାନେ ଆସିଥିବା କଥା ଗ୍ରାମବାସୀ ଜାଣି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ସୁଭାଷ ଗାଁ ଗାଁ, ଘର ଘର ବୁଲି ଗ୍ରାମବହୁଳ ଭାରତକୁ ଉତ୍ତମରୂପେ ଦେଖିବାର ସୁଯୋଗ ପାଇଲେ । ଝାଟିମାଟି, ନଡ଼ାଛାଉଳ, ମାଟି-କାଦୁଅର ଭଙ୍ଗା, ଅଭଙ୍ଗା, ଅର୍ଦ୍ଧଭଙ୍ଗା କୁଡ଼ିଆ ଭିତରେ ପ୍ରକୃତ ଭାରତ ଯେ ରହିଛି, ସେ ତାହା ମର୍ମେ ମର୍ମେ ଅନୁଭବ କଲେ । ଭାରତୀୟ କହିଲେ ସୌଧବିଳାସୀ କେତେଜଣ ସହରୀ ବ୍ୟକ୍ତିଙ୍କୁ ବୁଝାଏ ନାହିଁ—ବୁଭୁକ୍ଷୁ, ଅର୍ଦ୍ଧାହାରୀ, ଅନାହାରୀ, ଉଚ୍ଛିଳ ବାସଯୁକ୍ତ ବ୍ୟକ୍ତି ଏବଂ ବିବସ୍ତ୍ରଙ୍କୁ ନେଇ ଭାରତୀୟ । ପ୍ରତ୍ୟେକେ ଏକକ ଭାବରେ ଭାରତର ପ୍ରତୀକ ।

ସୁଭାଷଙ୍କର ମୋହଚକ୍ଷୁ ଖୋଲିଗଲା । ପରାଧୀନ ଭାରତକୁ ସେ ଆବିଷ୍କାର କଲେ । ଭାରତର କଦର୍ଥନାକୁ ଅନୁଭବ କଲେ; ତାର ବିକଳିତ ଆତ୍ମାକୁ ଦର୍ଶନକଲେ । ପରାଧୀନତାର ପାପ-ପଲ୍ୱଳରେ କିପରି ତାଙ୍କର ଜନ୍ମଭୂମି ପ୍ରପୀଡ଼ିତ ହେଉଛି; ତାହା ସେ ମର୍ମେ ମର୍ମେ ଅନୁଭବ କଲେ । ଏ ଦୃଶ୍ୟ ତାଙ୍କ ଭିତରର ଝଡ଼କୁ ଅଧିକ ଘନୀଭୂତ କରିଦେଲା । ବିଦ୍ରୋହର ସ୍ୱର ହେଲା ଆହୁରି ତୀବ୍ରତର । ଶାନ୍ତି, ପ୍ରୀତି, ମୁକ୍ତି ପାଇଁ ତାଙ୍କୁ ଚରମ ବିଦ୍ରୋହ କରିବାକୁ ହେବ । ବିପ୍ଳବର ପୂଜା ତାଙ୍କର ଅନ୍ତରାତ୍ମାକୁ ଅଶାନ୍ତ କରିଦେଇସାରିଲାଣି । ସେ ଅସ୍ଥିର···ଅସ୍ଥିର ବାତାବର୍ତ୍ତ ।

ଗ୍ରୀଷ୍ମାବକାଶ ପରେ ସୁଭାଷ କଲିକତା ଫେରିଆସିଲେ । କଲେଜ ଜୀବନର ଗତାନୁଗତିକତା ତାଙ୍କ ପାଇଁ ଆଦୌ ଆକର୍ଷଣୀୟ ନଥିଲା । ତା'ଭିତରୁ ସେ ଜୀବନର ନୂତନ ସ୍ୱାଦୁ ଆହରଣ କରିପାରିଲେ ନାହିଁ । ତାଙ୍କର ଅଶାନ୍ତ ଅନ୍ତରକୁ ଶାନ୍ତ କରିବା ପାଇଁ

ତା'ଭିତରୁ ପ୍ରୀତିର ପ୍ରଲେପ ତାଙ୍କୁ ମିଳିଲା ନାହିଁ । ଅନ୍ୟମନସ୍କତା ଭିତରେ ମଧ୍ୟ ସେ ପାଠ୍ୟ ବିଷୟ ସହିତ ସାମୟିକ ସମ୍ପର୍କ ରଖିଥିଲେ ।

ଅନ୍ତର୍ଦ୍ୱନ୍ଦ୍ୱ ଏଥିଭିତରେ ତୀବ୍ରତର ହୋଇଛି । ସାଧୁସନ୍ଥମାନଙ୍କର ସାନ୍ନିଧ୍ୟ ଲାଭକରି ଆତ୍ମଶକ୍ତିକୁ ସବଳ କରିବା ତାଙ୍କର ଇଚ୍ଛା । ତୀର୍ଥସ୍ଥାନମାନ ପରିଭ୍ରମଣ କରିବାପାଇଁ ତାଙ୍କର ଇଚ୍ଛାଶକ୍ତି ପ୍ରବଳ । ସେ ଦିନେ କଲିକତାର ଅନତିଦୂରରେ ଥିବା ଜଣେ ସାଧୁଙ୍କ ପାଖକୁ ଗଲେ । ସେ ଥିଲେ ଜଣେ ଯୁବକ ସନ୍ନ୍ୟାସୀ । ତାଙ୍କ ଭିତରେ ଉଦ୍ଦାମ ଆତ୍ମଶକ୍ତି ଥିଲା । ସେ କୌଣସି ମଠ କିମ୍ବା ଆଶ୍ରମ କରି ନଥିଲେ । ଶୂନ୍ୟ ଆକାଶ ତଳେ ସେ ରହୁଥିଲେ । ମାଟିମା'ର ସବୁଜ ତୃଣଶଯ୍ୟା ଉପରେ ଶୟନ କରୁଥିଲେ । ଯେତେବେଳେ ଓ ଯେଉଁ ଦିନ ଯାହା ମିଳୁଥିଲା, ତାହା ସେ ଖାଦ୍ୟରୂପେ ଗ୍ରହଣ କରୁଥିଲେ । ସନ୍ନ୍ୟାସୀ ଥିଲେ ଅତ୍ୟନ୍ତ ପ୍ରଫୁଲ୍ଲ, ତେଜୋଦୀପ୍ତ, ମନନଶୀଳ । ତାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ସୁଭାଷଙ୍କ ହୃଦୟକୁ ଜୟ କରିଥିଲା । ସେ ଅଧିକାଂଶ ସମୟରେ ତାଙ୍କ ପାଖକୁ ଯାଇ ଆଳାପ-ଆଲୋଚନା କରୁଥିଲେ ।

ଜଣେ ଗୁରୁ ପାଇବା ପାଇଁ ମନ ତାଙ୍କର ବ୍ୟାକୁଳ ହେଲା; ଯେ କି ହେବେ ତାଙ୍କ ଜୀବନର ଦିଗ୍‌ଦର୍ଶକ, ଆତ୍ମାର ପରିପୂରକ, ଆଦର୍ଶର ଆଧାର । ଗୁରୁ ଅନୁସନ୍ଧାନ ପାଇଁ ମନ ବ୍ୟାକୁଳ ହେଲା । ଏକ କଠୋର ନିଷ୍ପତ୍ତି । କାହାରି ଅନୁମତି ନେଲେନାହିଁ । ପିପାସିତ ପଥିକ ସେ; ଏକା ବାହାରିପଡ଼ିଲେ ନିଜର ଲକ୍ଷ୍ୟପଥରେ । ବାଧା-ବନ୍ଧନ ମାନିଲେ ନାହିଁ । ସୁଭାଷ ତୀର୍ଥାଟନରେ ବାହାରିଲେ । ଭାରତର ତୀର୍ଥଭୂମିରେ ବିଚରଣକରି ନୂତନ ଆତ୍ମଶକ୍ତି ଆହରଣ କରିବେ । ୧୭ ବର୍ଷ ବୟସ୍କ ଏକ ନବୀନ ଯୁବକର ଅଟଳ ସିଦ୍ଧାନ୍ତ । ଋଷିକେଶ, ହରଦ୍ୱାର, ଲକ୍ଷ୍ମଣଝୁଲା, ମଥୁରା, ବୃନ୍ଦାବନ, ବନାରସ, ଗୟା ପ୍ରଭୃତି ସେ ପରିଭ୍ରମଣ କଲେ କେବଳ ସେତିକି ନୁହେଁ, ଭାରତର ଇତିହାସପ୍ରସିଦ୍ଧ ସ୍ଥାନ; ଯଥା— ଦିଲ୍ଲୀ, ଆଗ୍ରା ସେ ପରିଦର୍ଶନ କରିଥିଲେ । ପ୍ରତ୍ୟେକ ସ୍ଥାନରେ ତାଙ୍କର ସନ୍ଧାନୀ ଚକ୍ଷୁ ଗୁରୁ-ଅନ୍ୱେଷଣରେ ଘୂରିବୁଲୁଥିଲା ! ସେ ବହୁ ବିଦ୍ୱାନ୍ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସୁଥିଲେ । ଅନେକ ଧର୍ମଗୁରୁଙ୍କ ସାନ୍ନିଧ୍ୟ ଲାଭ କରୁଥିଲେ । ସେମାନଙ୍କ ସହିତ ମନଖୋଲା ଆଲୋଚନା ହେଉଥିଲା । ବହୁ ସାଧୁସନ୍ଥଙ୍କ ଗହଣରେ ସମୟ ଅତିବାହିତ କରିବାର ସୁଯୋଗ ତାଙ୍କୁ ମିଳୁଥିଲା । ଉପଯୁକ୍ତ ଗୁରୁଙ୍କର ଗୁରୁତ୍ୱ ସେ ସବୁରି ଭିତରୁ ଅନୁଭବ କରି-ପାରୁନଥିଲେ ।

ପର୍ଯ୍ୟଟନ ପର୍ଯ୍ୟାୟରେ ସେ ଅନେକ ପ୍ରତିକୂଳ ପରିସ୍ଥିତିର ମଧ୍ୟ ସମ୍ମୁଖୀନ ହୋଇଥିଲେ । କେଉଁଠାରେ ସେ ଅନାଦୃତ ହୋଇଛନ୍ତି ତ ଆଉ କେଉଁଠାରେ କାହାରି ସନ୍ଦେହ-ପରିସର ମଧ୍ୟକୁ ଆସିଛନ୍ତି । କେହି କେହି ତାଙ୍କୁ ଏକ ବିପ୍ଳବୀ ବଙ୍ଗୀୟ ଯୁବକ ଭାବି ହତାଦର ମଧ୍ୟ କରିଛନ୍ତି । ଏସବୁ ପରିସ୍ଥିତି ଅବଶ୍ୟ ବେଶି ସମୟ ପାଇଁ ରହନି; ସାନ୍ନିଧ୍ୟର

ମଧୁରତା ମଧ୍ୟରେ ସେସବୁ ମିଳାଇଯାଇଛି । ସଂଘର୍ଷ ଭିତରେ ପ୍ରତି ପାଦରେ ସେ ଆଗେଇଥିଲେ । ଧର୍ମାଶ୍ରମ ଓ ମଠଗୁଡ଼ିକ ଧର୍ମପୀଠ ହେଲେ ମଧ୍ୟ, ଜାତିଆଣ ତଥା ଉଚ୍ଚନୀଚ ଭେଦଭାବ ସେଠାରେ ଭରପୂର ହୋଇ ରହିଥିଲା । ସଂସ୍କାରବାଦୀ ନୂତନ ଯୁବକ ସୁଭାଷଙ୍କ ପ୍ରାଣରେ ଏହା ଗଭୀର ଆଘାତ ଦେଇଥିଲା । ତାଙ୍କର ଗୁରୁ-ଅନ୍ୱେଷଣ-ଯାତ୍ରା ଆଗକୁ ଆଉ ଆଗେଇ ପାରିଲାନାହିଁ ।

ସୁଭାଷ ହତାଶ ହୋଇ କଲିକତା ଫେରିଆସିଲେ । ମନ-ଅନୁକୂଳ ଜଣେ ଗୁରୁ ତାଙ୍କୁ ମିଳିଲେ ନାହିଁ । ଶାରୀରିକ କ୍ଳାନ୍ତି, ମାନସିକ ଅସ୍ଥିରତା, ପ୍ରଚଣ୍ଡ ଭାବାବେଗ, ଅଦମ୍ୟ ବାସନା ତାଙ୍କର ମାନସ-ଶରୀର ଭାରସାମ୍ୟ ଉପରେ ଆଘାତ ଦେଲା । ଅଳ୍ପଦିନ ପରେ ସେ ଅସୁସ୍ଥ ହୋଇପଡ଼ିଲେ । ସେ ଆନ୍ତ୍ରିକ ଜ୍ୱରାକ୍ରାନ୍ତ ହେଲେ । ଏଥିପାଇଁ ତାଙ୍କୁ ବହୁ କଷ୍ଟ ଭୋଗ କରିବାକୁ ପଡ଼ିଥିଲା ।

ସୁଭାଷ ରୋଗାକ୍ରାନ୍ତ ଥିବା ଅବସ୍ଥାରେ ଆରମ୍ଭ ହେଲା ପ୍ରଥମ ବିଶ୍ୱ-ମହାଯୁଦ୍ଧ । ନିଜ ଦେଶର ଅବସ୍ଥା ଓ ବିଶ୍ୱର ଅଶାନ୍ତ ପରିବେଶ ତାଙ୍କର ଯୁବଚେତନାରେ ଯଥେଷ୍ଟ ପ୍ରତିକୂଳ ପ୍ରଭାବ ପକାଇଥିଲା । ରୋଗଶଯ୍ୟାରେ ଥାଇ ମଧ୍ୟ ସେ ଭାରତର ମୁକ୍ତି-ସ୍ୱପ୍ନ ଦେଖୁଥିଲେ ଏବଂ ସ୍ୱାଧୀନ ଭାରତ ପାଇଁ ଏକ ଅତ୍ୟନ୍ତ ଶକ୍ତିଶାଳୀ ଉନ୍ନତ ସୈନ୍ୟବାହିନୀର ଆବଶ୍ୟକତା ଅନୁଭବ କରୁଥିଲେ ।

କିଛିଦିନ ପରେ ତାଙ୍କର ସ୍ୱାସ୍ଥ୍ୟର ଉନ୍ନତି ଘଟିଲା । ମାନସିକ ଆଶ୍ୱସ୍ତି ମଧ୍ୟ କିଛି ପରିମାଣରେ ଅନୁଭୂତ ହେଲା ।

ଭାରତର ମୁକ୍ତି-ଆନ୍ଦୋଳନ ସେତେବେଳେ ଏକ ନୂଆ ମୋଡ଼ ନେଇଥାଏ । ସୁଭାଷ ମୁକ୍ତି-ଆନ୍ଦୋଳନର ବିପ୍ଳବୀ ନେତାମାନଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ । ସ୍ତା ବୋଲି ସେ ସେମାନଙ୍କୁ ସେ ଅନ୍ଧଭାବରେ ଅନୁସରଣ କରୁଥିଲେ ତା ନୁହେଁ; ସେ ନିଜର ସ୍ୱାଧୀନ ଦୃଷ୍ଟିକୋଣରୁ ପ୍ରତ୍ୟେକ କଥା ବିଚାର କରୁଥିଲେ ।

ଇଂରେଜମାନଙ୍କର ଦୁର୍ବ୍ୟବହାର, ଭାରତୀୟମାନଙ୍କ ପ୍ରତି ଘୃଣା ତଥା ଅସହିଷ୍ଣୁତା ସୁଭାଷଙ୍କୁ ଗଭୀର ଅନ୍ତର୍ଯନ୍ତ୍ରଣା ଦେଉଥିଲା । ଏହା ବିରୁଦ୍ଧରେ ଜନମତ ସୃଷ୍ଟି କରିବା ପାଇଁ ସେ ରାଜନୈତିକ ମଞ୍ଚକୁ ଲକ୍ଷ୍ୟ ପ୍ରଦାନ କରିବାକୁ ସର୍ବଦା ଚିନ୍ତା କରୁଥିଲେ । ବୟସର ତରଳତା ଦୃଷ୍ଟିରୁ ସେ ପଛେଇଗଲେ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେବାପାଇଁ । କ୍ରାନ୍ତିକାରୀ ଗୁପ୍ତ-ସଂଗଠନ ମାଧ୍ୟମରେ ସେ ନିଜର ବହୁ ଆକାଙ୍କ୍ଷିତ ସ୍ୱପ୍ନକୁ ରୂପ ଦେଲେ ।

୧୯୧୫ରେ ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଫଳ ପ୍ରକାଶିତ ହେଲା । ସୁଭାଷ ପଢ଼ାପଢ଼ିରେ ଅବହେଳା କରିଥିଲେ ମଧ୍ୟ ପ୍ରଥମ ଶ୍ରେଣୀରେ ପାଶ କରିବାର ସଫଳତା ହାସଲ କରିଥିଲେ; କିନ୍ତୁ ବିଷୟଗତ ମାନୋନ୍ନତି ସନ୍ତୋଷଜନକ ନଥିଲା । ଏହା ମନମଧ୍ୟରେ କ୍ଷଣିକ ଅବସାଦ ସୃଷ୍ଟି କରିଥିଲେ ମଧ୍ୟ ସେ ନିଜର ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇନଥିଲେ ।

ଭାରତର ରାଜନୈତିକ ପରିବେଶ, ବିଶ୍ୱର ବିପର୍ଯ୍ୟସ୍ତ ବାୟୁମଣ୍ଡଳ ତାଙ୍କ ଭିତରେ ଗଭୀର ଆଲୋଡ଼ନ ଓ ସଂଘାତ ସୃଷ୍ଟି କରିଥିଲା । ବାହାରର ଘଟଣାପ୍ରବାହ ତାଙ୍କୁ ଦିନକୁ ଦିନ ଅନ୍ତର୍ମୁଖୀ କରାଇଥିଲା ଏବଂ ତାଙ୍କ ଚତୁଃପାର୍ଶ୍ୱରେ ସଂଘଟିତ ହେଉଥିବା ବହୁ ଅପ୍ରୀତିକର ଅବାଞ୍ଛିତ ଘଟଣା ହିଁ ତାଙ୍କୁ ଅଧିକରୁ ଅଧିକତର ରାଜନୈତିକ ସଚେତନତା ପ୍ରତି ଆକର୍ଷଣ କରିଥିଲା ।

ସୁଭାଷ ସେହି ପ୍ରେସିଡେନ୍ସି କଲେଜରେ ତୃତୀୟ-ବାର୍ଷିକ କଳାଛାତ୍ର ହିସାବରେ ଯୋଗଦେଇଥିଲେ । ଦର୍ଶନ ପ୍ରତି ତାଙ୍କର ଗଭୀର ଅନୁରକ୍ତି ଥିବାରୁ ସେ ସେଥିରେ ଅନର୍ସ ନେଇଥିଲେ । ଅଧିକ ନିଷ୍ଠା ଓ ଆନ୍ତରିକତାର ସହିତ ସେ ପଢ଼ାପଢ଼ିରେ ମନୋଯୋଗ ଦେଇଥିଲେ । ଲକ୍ଷ୍ୟ ଥିଲା ପରୀକ୍ଷାରେ ଅଧିକ ସଫଳତା ହାସଲ କରିବେ ।

ଘରେ ନପଶୁଣୁ ମୁଣ୍ଡରେ ଚାଳ ବାଜିଥିଲା । ସେତେବେଳେ ପ୍ରେସିଡେନ୍ସି କଲେଜରେ ମିଃ ଓଷ୍ଟନ୍ ନାମରେ ଜଣେ ଅଧ୍ୟାପକ କାର୍ଯ୍ୟ କରୁଥିଲେ । ସେ ଜଣେ କ୍ଷଣକୋପୀ, ଆତ୍ମାଭିମାନୀ ଇଂରେଜ ବ୍ୟକ୍ତି । ଭାରତୀୟମାନଙ୍କ ପ୍ରତି ତାଙ୍କର ଥିବା ସ୍ୱାଭାବିକ ଘୃଣା ଓ ଅନାଦର ଭାବ ଛାତ୍ରମାନଙ୍କ ଉପରେ ପ୍ରତିଫଳିତ ହୋଇଥିଲା । ସେ କଲେଜରେ ମିଃ 'ଓ' ନାମରେ ପରିଚିତ ।

ଦିନେ ସୁଭାଷ କଲେଜ ଲାଇବ୍ରେରୀରେ ବସି ପଢ଼ୁଥାନ୍ତି; ଶୁଣିବାକୁ ପାଇଲେ ତାଙ୍କର କେତେଜଣ ସହପାଠୀ ମିଃ 'ଓ'ଙ୍କ ଦ୍ୱାରା ଅତି ସାଧାରଣ କାରଣ ପାଇଁ ବିଶେଷ ଭାବରେ ଅପମାନିତ ତଥା ଦଣ୍ଡିତ ହୋଇଛନ୍ତି । ଘଟଣାର ଅନୁସନ୍ଧାନରୁ ଜଣାଗଲା ଯେ ମିଃ 'ଓ' ଶ୍ରେଣୀକକ୍ଷରେ ଅଧ୍ୟାପନାରତ ଥିବା ସମୟରେ ସେଇ ବାଟଦେଇ ବାରଣ୍ଡାରେ କେତେଜଣ ଛାତ୍ର କଥାବାର୍ତ୍ତା ହୋଇ ଯାଉଥିଲେ । ଏହା ଅଧ୍ୟାପକଙ୍କ ଅଧ୍ୟାପନାରେ ବାଧା ସୃଷ୍ଟି କଲା । ସେ ଉତ୍କ୍ଷିପ୍ତ ହୋଇ ଶ୍ରେଣୀକକ୍ଷରୁ ବାହାରିଆସି କେତେଜଣ ଛାତ୍ରଙ୍କ ବେକରେ ହାତ ଦେଇ ଧକ୍କାମାରି ଟାଣିଆଣିଥିଲେ । ଏହି ଅପ୍ରୀତିକର ପରିସ୍ଥିତିରେ ଛାତ୍ରମାନେ ଉତ୍ୟକ୍ତ ହେବା ସ୍ୱାଭାବିକ ଏବଂ ଏହାକୁ କେନ୍ଦ୍ରକରି କିଛି ସମୟପାଇଁ ଉତ୍ତେଜନା ସୃଷ୍ଟି ହେଲା ।

ସୁଭାଷ ଥିଲେ ଛାତ୍ର-ପ୍ରତିନିଧି । ସେ ଏପ୍ରକାର ଅପ୍ରୀତିକର ପରିସ୍ଥିତି ପ୍ରତି କଲେଜ ପ୍ରିନ୍ସିପାଲଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ମିଃ ଓଷ୍ଟନ୍ ନିଜର ଦୋଷ ପାଇଁ ଅପମାନିତ ଛାତ୍ରମାନଙ୍କୁ କ୍ଷମା ମାଗନ୍ତୁ, ଏହାହିଁ ଥିଲା ସୁଭାଷଙ୍କର ଦାବି ।

ଅଧ୍ୟକ୍ଷ ଓଷ୍ଟନ୍‌ଙ୍କ ପକ୍ଷ ସମର୍ଥନକରି ପରିସ୍ଥିତିର ଏକ ନୂତନ ମୋଡ଼ ଦେବାକୁ ଚେଷ୍ଟା କରିଥିଲେ । ତାଙ୍କ ମତରେ, "ଓଷ୍ଟନ୍ ବଳ ପ୍ରୟୋଗ କରିନାହାନ୍ତି କିମ୍ବା ପିଲାମାନଙ୍କୁ ଅପମାନିତ କରିନାହାନ୍ତି । ନିଜର ପ୍ରିୟ ଛାତ୍ରମାନଙ୍କ ବାହୁ ଧରି ସେମାନଙ୍କୁ ଟିକିଏ ବହଲାଇ ଦେବାରେ ବ୍ୟତିକ୍ରମ କେଉଁଠାରେ ହେଲା ? ଛାତ୍ରମାନେ ଏଥିପାଇଁ ଅନମନୀୟ ମନୋଭାବ ପ୍ରକାଶ କରିବା ଅନୁଚିତ ।"

ସୁଭାଷ ଓ ଛାତ୍ରସମାଜ ପ୍ରିନ୍‌ସପାଲଙ୍କର ଏ ପ୍ରକାର ଅଭିସନ୍ଧିମୂଳକ ମତାମତ ନେଇ ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ଶ୍ରେଣୀରେ କେହି ଯୋଗ ଦେଲେନାହିଁ । ଷ୍ଟ୍ରାଇକ୍ ସ୍କୁଲ୍‌ରହିଲା । ଏହା କଲେଜ ତଥା ସ୍ଥାନୀୟ ପରିବେଶରେ ଚହଲ ପକାଇଦେଲା । ଷ୍ଟ୍ରାଇକ୍ ଭାଙ୍ଗି ଦେବାପାଇଁ ଅଧ୍ୟକ୍ଷଙ୍କର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ଧମକଚମକ କିଛି କାମ ଦେଲାନାହିଁ । ସେ ଛାତ୍ରନେତାମାନଙ୍କୁ କଠୋର ଦଣ୍ଡାଦେଶ ଦେଲେ । ଓଷ୍ଟେନ୍‌ଙ୍କର ସମ୍ମାନଜନକ ନମନୀୟତା ଫଳରେ ଅଳ୍ପଦିନ ପରେ ଷ୍ଟ୍ରାଇକ୍ ଉଠାଇ ନିଆଗଲା—କିନ୍ତୁ ଅଧ୍ୟକ୍ଷ କୋହଳ ମନୋଭାବ ପ୍ରକାଶକଲେ ନାହିଁ ।

ଅନ୍ୟ ଏକ ଦିନର ଘଟଣା । ମିଃ ଓଷ୍ଟେନ୍ ପୂର୍ବପରି ଜଣେ ପ୍ରଥମ-ବାର୍ଷିକ ଛାତ୍ରକୁ ପୁଣି ମାଡ଼ଦେଇ ଅପମାନିତ କରିଥିଲେ । ଏହା ଛାତ୍ରମାନଙ୍କ ମଧ୍ୟରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ସେମାନେ 'ଯେସାକୁ ତେସା' ନୀତିରେ ତାଙ୍କୁ ମଧ୍ୟ ଅପମାନିତ କଲେ; ଫଳରେ ଏକ ଅପ୍ରୀତିକର ବାତାବରଣ ପୁଣି ସୃଷ୍ଟି ହେଲା । ଏହାକୁ ଆୟତ୍ତ କରିବା କଲେଜ କର୍ତ୍ତୃପକ୍ଷଙ୍କ ସାଧ୍ୟାତୀତ ଥିଲା । ବେଙ୍ଗଲ ସରକାର କଲେଜଟିକୁ ଅନିର୍ଦ୍ଦିଷ୍ଟ ସମୟପାଇଁ ବନ୍ଦ କରିଦେଲେ ଓ ଛାତ୍ରମାନଙ୍କ ଉପରେ ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲା । ସରକାର ସମସ୍ତଙ୍କର ଗୁପାରେ ଏକ ତଦନ୍ତ କମିଶନ ବସାଇଲେ । ଅଧ୍ୟକ୍ଷ ଏ ପ୍ରକାର ସରକାରୀ କାର୍ଯ୍ୟାନୁଷ୍ଠାନକୁ ନିଜର ସମ୍ମାନହାନିକର ଭାବି ବିରୋଧ କରିବାରୁ ତାଙ୍କୁ ସସ୍‌ପେଣ୍ଡ କରିଦିଆଗଲା ।

ଅଧ୍ୟକ୍ଷ ସାମୟିକ ଅବ୍ୟାହତି ନେବାପୂର୍ବରୁ ଯେଉଁ ଛାତ୍ରନେତାମାନଙ୍କ ଉପରେ ତାଙ୍କର ବ୍ୟକ୍ତିଗତ କ୍ରୋଧ ଥିଲା, ସେ ସେମାନଙ୍କୁ କଲେଜରୁ ବହିଷ୍କାର କରିଦେଲେ । ସୁଭାଷ ଏହି ଦୁର୍ଯୋଗର ସମ୍ମୁଖୀନ ହେଲେ । ଅନ୍ୟ କୌଣସି କଲେଜରେ ମଧ୍ୟ ପଢ଼ିବାକୁ ତାଙ୍କୁ ଅନୁମତି ଦିଆଗଲାନାହିଁ । ପରିସ୍ଥିତି ଏପରି ହେଲା, ବିଶ୍ୱବିଦ୍ୟାଳୟରୁ ତାଙ୍କୁ ବହିଷ୍କୃତ ହେବାକୁ ପଡ଼ିଲା । ତଦନ୍ତ କମିଟିର ରିପୋର୍ଟ କିଛିଦିନପରେ ପ୍ରକାଶିତ ହେଲା । ଛାତ୍ରମାନେ ଦୋଷୀ ସାବ୍ୟସ୍ତ ହେଲେ । ସୁଭାଷଙ୍କର ଭବିଷ୍ୟତ ଶିକ୍ଷା ସୁଯୋଗ ବ୍ୟାହତ ହେଲା ।

ଦୁର୍ଯୋଗ ଅନେକ ସମୟରେ ସୁଯୋଗର ଭିତ୍ତିଭୂମି ରୂପେ କାର୍ଯ୍ୟ କରିଥାଏ । ଏପ୍ରକାର ଅହେତୁକ ବିପଦ ଭିତରେ ସେ ଭାଙ୍ଗିପଡ଼ିନଥିଲେ । ସେ ଅଦମ୍ୟ ମନୋବଳ ନେଇ ଆଗେଇଗଲେ । ସତ୍ୟ ପାଇଁ ସଂଘର୍ଷକରି ଏପ୍ରକାର ଦୁଃସ୍ଥିତିର ସମ୍ମୁଖୀନ ହୋଇଥିବାରୁ ସେ ଆଦୌ ବିଚଳିତ ହୋଇନଥିଲେ । ବରଂ ତାଙ୍କ ଭିତରେ ସାହସ, ଧୈର୍ଯ୍ୟ, ଉପସ୍ଥିତ ବୁଦ୍ଧିରବୋଧ ସୃଷ୍ଟି ହୋଇଥିଲା । ଏହାହିଁ ଥିଲା ତାଙ୍କ ପାଇଁ ଭାବୀ ସଂଘର୍ଷମୟ ଜୀବନର ପାଥେୟ ।

ଦୂର ଦିଗ୍‌ବଳୟରୁ ଭାସିଆସିଛି ଏକ ଉଜ୍ଜ୍ୱଳ ରେଖା ।

ନୈରାଶ୍ୟ ଭିତରେ ଆଶାର ନବୀନ ସ୍ପର୍ଶ । କଲେଜରୁ ବହିଷ୍କୃତ ହେବାପରେ ସୁଭାଷ କଲିକତାରୁ କିଛିଦିନ ପାଇଁ କଟକ ଚାଲିଆସିଲେ । ପରିବେଶ ଓ ପରିସ୍ଥିତିର ପରିବର୍ତ୍ତନ ଭିତରେ ମାନସିକ ଉଦ୍‌ବେଗ କିଛି ଅଂଶରେ କମିଗଲା । ପିତାମାତା ପ୍ରକୃତ ଘଟଣା ଜାଣିବା ପରେ ସୁଭାଷଙ୍କୁ କଲେଜର ଅପ୍ରୀତିକର ଘଟଣା ବିଷୟରେ କୌଣସି ପ୍ରଶ୍ନ କରିନଥିଲେ । ଏଥିପାଇଁ ତାଙ୍କୁ କୌଣସି ପ୍ରକାରର ତିରସ୍କାର ଭୋଗକରିବାକୁ ପଡ଼ିନଥିଲା; ଅଥଚ ପିତାମାତାଙ୍କର ତାଙ୍କ ପାଇଁ ଥିଲା ଶାସନର ଏକ ନୀରବ ଇଙ୍ଗିତ । ଆଚରଣରେ ତାଙ୍କର ଫୁଟିଉଠିଥିଲା ପ୍ରଚ୍ଛନ୍ନ ପ୍ରତିକ୍ରିୟା । କ୍ଷମତା ସହିତ ପ୍ରତ୍ୟକ୍ଷ ସଂଘର୍ଷକୁ ସେମାନେ ପସନ୍ଦ କରୁନଥିଲେ । ନେତୃତ୍ୱ ନେବାର ଅର୍ଥ ନିର୍ଯାତନା ଯେ ଭୋଗକରିବାକୁ ପଡ଼େ ଏହା ଅନୁଚ୍ଚାରିତ ଅର୍ଥବୋଧ ଭିତରେ ସେମାନେ ବୋଧହୁଏ ସୁଭାଷଙ୍କୁ ବୁଝାଇ ଦେଇଥିଲେ; କିନ୍ତୁ ସେମାନଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ଅତୁଟ ଥିଲା ।

ଯେଉଁ ସ୍କୁଲ-ବନ୍ଧୁମାନଙ୍କ ଗହଣରେ ତାଙ୍କୁ ସମୟ ଅତିବାହିତ କରିବାକୁ ପଡୁଥିଲା, ସେମାନେ ଥିଲେ ଅତୀବ ଶ୍ରଦ୍ଧାଶୀଳ ଓ ସୁଭାଷଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । ନିଜର ଭାଇଭଉଣୀମାନେ ସୁଭାଷଙ୍କ ପ୍ରତି ସମ୍ବେଦନଶୀଳ ଥିଲେ ।

ନିକଟରେ ଘଟିଯାଇଥିବା ଘଟଣାବଳୀ ସୁଭାଷଙ୍କର ଚିନ୍ତାବିନ୍ୟାସକୁ ଏକପ୍ରକାର ବଦଳାଇ ଦେଇଥିଲା । ଭିତରର ପୁରୁଷକାର ଭିତରେ ପରିବର୍ତ୍ତନର ପଦଧ୍ୱନି । ଏହା ମନ୍ଥର ଥିଲେବି ଥିଲା ଶକ୍ତିଶାଳୀ । ସେ ଅନୁଭବ କରୁଥିଲେ, ସତେ ଯେପରି ତାଙ୍କ ଭିତରେ ଏକ ଭୀଷଣ ବାତ୍ୟାର ସୂତ୍ରପାତ ହୋଇଛି···ବିପ୍ଳବର ବାତ୍ୟା । ଜୀବନରେ ସ୍ଥିର ସ୍ଥିତିସ୍ଥାପକତାରେ ଚଞ୍ଚଳତାର ଶିହରଣ । ତା'ପରେ ଏ ବାତ୍ୟା ଆକସ୍ମିକ ଭାବରେ ଭୀଷଣରୁ ଭୀଷଣତର ହେଲା । ତାଙ୍କ ଭିତରେ ଥିବା ସହଜାତ ଲଜ୍ଜାପ୍ରବଣତା, ପାର୍ଥକ୍ୟ-ବୋଧ, ସଙ୍କୋଚ କୁଆଡ଼େ ଉଭେଇଗଲା । ସତେ ଯେପରି ସେ ଏକ ନୂତନ ଦୀକ୍ଷାପ୍ରାପ୍ତ ନବୀନ ସନ୍ନ୍ୟାସୀ !

ଅଧ୍ୟୟନର ଛିନ୍ନ ସୂତ୍ରକୁ ପୁଣି ଥରେ ଯୋଗକରିବାକୁ ହେବ । ପୁଣି ଥରେ ସ୍କୁଲ-ଜୀବନ ଆରମ୍ଭ କରିବାକୁ ହେବ । ଦୀର୍ଘ ଦିନର ବିରତି ପାଇଁ ସେ ମାନସିକ ଯନ୍ତ୍ରଣା ଅନୁଭବ କରିଛନ୍ତି । ବିଶ୍ୱବିଦ୍ୟାଳୟ ପୂର୍ବବତ୍ କରି ତାଙ୍କୁ ଅନୁକମ୍ପା ପ୍ରଦର୍ଶନ କରିବ ଓ

ସେ ଶିକ୍ଷାଲାଭ କରିବାର ସୁଯୋଗ ପୁଣି ପାଇବେ—ଏ ଆଶା ଥିଲା ତାଙ୍କ ପାଇଁ ବହୁତ ଦୂରରେ । ସେ ନିଜର ଅଧ୍ୟୟନ-ପିପାସା ମେଣ୍ଟାଇବା ପାଇଁ ପିତାମାତାଙ୍କର ସହଯୋଗ କାମନା କଲେ । ବିଦେଶରେ ଶିକ୍ଷାଲାଭ କରିବାପାଇଁ ସେ ତାଙ୍କୁ ଅନୁରୋଧ କଲେ । କିନ୍ତୁ ଜାନକୀନାଥ ଏ ପ୍ରସ୍ତାବର ସପକ୍ଷରେ ନଥିଲେ । ତାଙ୍କର ଇଚ୍ଛା, ସେ ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୁଅନ୍ତୁ ।

ମଣିଷ ପରିସ୍ଥିତିର ଦାସ । ବିଶ୍ୱବିଦ୍ୟାଳୟର ସୁବିଚାର ପାଇଁ ଅପେକ୍ଷା କରିବାକୁ ହେବ । ଅପେକ୍ଷାର ଅବସାନ କେବେ ହେବ, ତାହା ଈଶ୍ୱରଙ୍କ ଉପରେ ନିର୍ଭର କରେ । ଉପସ୍ଥିତ ପରିସ୍ଥିତିର ସମାଧାନ ପାଇଁ ଧୈର୍ଯ୍ୟ ହିଁ ଏକମାତ୍ର ପାଥେୟ ।

ସମସ୍ତ ସୁଭାଷଙ୍କ ପାଇଁ ଭାରାକ୍ରାନ୍ତ ହୋଇଉଠିଲା । ସେ ତା'ର ସଦୁପଯୋଗ ନିମନ୍ତେ ଜନସେବାକୁ ନିଜର କରିନେଲେ । ଉପସ୍ଥିତ ପରିସ୍ଥିତିରେ ସମାଜସେବା ହିଁ ତାଙ୍କ ପାଇଁ ଏକମାତ୍ର ଶାନ୍ତିର ପ୍ରଲେପ ।

ସେତେବେଳେ ଓଡ଼ିଶାର ସାମାଜିକ ଅବସ୍ଥା ଥିଲା ଭିନ୍ନ ପ୍ରକାରର । ଲୋକମାନଙ୍କର ଆର୍ଥିକ ସ୍ଥିତି ଦୁର୍ବଳ ଥିଲା । ବସନ୍ତ ଓ ମହାମାରୀ ପରି ସଂକ୍ରାମକ ରୋଗକବଳରେ ଥରକୁ ଥର ଲୋକମାନେ ପଡ଼ୁଥିଲେ । ଅନେକ ସମୟରେ ଏହାର ସଂହାରଲୀଳା ଜନଜୀବନକୁ ଦୋହଲାଇ ଦେଉଥିଲା । ଲୋକମାନେ ଚିକିତ୍ସାର ସୁଯୋଗ ପାଉନଥିଲେ । ଦାରିଦ୍ର୍ୟ ଭିତରେ ସେମାନେ ବୃତ୍ତିରିକ୍ତ ଚିକିତ୍ସା-ବ୍ୟବସ୍ଥା କରିପାରୁ ନଥିଲେ । ନିଜ ଭାଗ୍ୟ ଉପରେ ନିର୍ଭର କରିବା ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଉପାୟ ନଥିଲା ।

ସୁଭାଷ ତାଙ୍କର ବନ୍ଧୁ ସମଚନ୍ଦ୍ରଙ୍କ ପୁରାତନ ବନ୍ଧୁଙ୍କୁ ନେଇ ଏକ ସେବାଦଳ ଗଠନ କଲେ । ବସନ୍ତ, ମହାମାରୀ ପ୍ରଭୃତି ସଂକ୍ରାମକ ରୋଗ ବିରୁଦ୍ଧରେ ତାଙ୍କର ଅଭିଯାନ ଆରମ୍ଭହେଲା । ଗ୍ରାମାଞ୍ଚଳର ଲୋକମାନଙ୍କ ପାଖରେ ଫଳପ୍ରଦ ଚିକିତ୍ସା ପହଞ୍ଚାଇଦେବା ଥିଲା ତାଙ୍କର ଲକ୍ଷ୍ୟ । ରୋଗ ବିରୁଦ୍ଧରେ ସଚେତନତା ସୃଷ୍ଟି କରିବା ପାଇଁ ସେମାନେ ପ୍ରଥମ ପଦକ୍ଷେପ ନେଇଥିଲେ । ପ୍ରତିଷେଧକ ବ୍ୟବସ୍ଥା ଉପରେ ଅଧିକ ଧ୍ୟାନ ଦେଇଥିଲେ । ସେତେବେଳେ ଡାକ୍ତରଖାନାମାନଙ୍କରେ ଯଥେଷ୍ଟ ପରିମାଣରେ ତାଲିମପ୍ରାପ୍ତ ନର୍ସ ନଥିଲେ । କଲେରା ଓ୍ୱାର୍ଡ଼ର ଅବସ୍ଥା ଥିଲା ସବୁଠାରୁ ବଳି ଶୋଚନୀୟ । ସାଧାରଣ ଅନଭିଜ୍ଞ ମେହନ୍ତରମାନେ ରୋଗୀମାନଙ୍କ ସେବାରେ ନିଯୁକ୍ତ ଥିଲେ । ସେବାର ଅର୍ଥ ଥିଲା ମୃତ୍ୟୁବରଣ କରୁଥିବା ଲୋକମାନଙ୍କର ଶବକୁ ସ୍ଥାନାନ୍ତରିତ କରିବା ।

ଯୁବକ ସୁଭାଷଙ୍କ ମନ ବିଦ୍ରୋହୀ ହୋଇଉଠିଲା ।

ତାଙ୍କର ସେବାଦଳ ତାଲିମ ନେଇ କଲେରା ଓ୍ୱାର୍ଡ଼ରେ କାମ କଲେ । ମୃତ୍ୟୁହାର ପୂର୍ବ ତୁଳନାରେ କମିବାକୁ ଲାଗିଲା । ଗାଁଗହଳରେ ବୁଲି ରୋଗାକ୍ରାନ୍ତ ଲୋକମାନଙ୍କର ସେବାରେ କି ଅପୂର୍ବ ଆନନ୍ଦ ! ନିଶ୍ଚିତ ମୃତ୍ୟୁମୁଖରୁ ଲୋକମାନଙ୍କୁ ରକ୍ଷାକରି ସେମାନେ

ସେଉଁ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରୁଥିଲେ, ତାହା ଭାଷାରେ ପ୍ରକାଶ କରିଯାଇ ପାରିବନାହିଁ । ମୃତ୍ୟୁକବଳରୁ ରକ୍ଷାପାଇଯାଇଥିବା ଲୋକମାନଙ୍କର କୃତଜ୍ଞତାର ଶୁଭବାଣୀ, ସେମାନଙ୍କର ଅଭିନନ୍ଦନ, ଶୁଭାଶିଷ ଯୁବକମାନଙ୍କ ମନୋବଳକୁ ବହୁଗୁଣିତ କରିଥିଲା । ବିପ୍ଲବୀ ସୁଭାଷ ତା'ର ଭିତରୁ ପ୍ରେରଣାର ବାଣୀ ଶୁଣିବାକୁ ପାଇଥିଲେ । ତାହା ଥିଲା ତାଙ୍କ ଭାବୀ ଜୀବନପାଇଁ ସାଧନାର ମନ୍ତ୍ର । ମନୋବଳ, ସ୍ନେହ, ଶ୍ରଦ୍ଧା, ଧୈର୍ଯ୍ୟ, ସେବା ଓ ସହନଶୀଳତା ପ୍ରଭୃତି ବହୁ ମାନବିକ ଗୁଣର ବିକାଶ ଦିଗରେ ଏହା ସାହାଯ୍ୟ କରିଥିଲା । ଭବିଷ୍ୟତ ଜୀବନ-ମଂଚରେ ସଫଳ ନାୟକ ଭାବରେ ଅଭିନୟ କରିବାକୁ ସେ ପ୍ରୋତ୍ସାହିତ ହୋଇଥିଲେ ।

ଅକାଳ ମୃତ୍ୟୁବରଣ କରିଥିବା ଶହ ଶହ ଲୋକମାନଙ୍କୁ ଦେଖିଲେ ବିସ୍ମିତ ହେବାକୁ ହୁଏ । ଗଣି ଗଣି ଶବ ଏଣେତେଣେ ପଡ଼ି ପରିବେଶକୁ ଦୂଷିତ କରୁଥିଲା । ଶବସଂସ୍କାର କରି ପରିବେଶକୁ ନିର୍ମଳ ରଖିବା ପ୍ରଥମ କର୍ତ୍ତବ୍ୟ ବୋଲି ସୁଭାଷଙ୍କ ସେବାଦଳ ଅନୁଭବ କରିଥିଲେ । ବିତ୍ତଶାଳୀ ଲୋକମାନଙ୍କ କ୍ଷେତ୍ରରେ ଶବ-ସତ୍କାର କାର୍ଯ୍ୟ ବିଶେଷ ଅସୁବିଧାପ୍ରଦ ହେଉ ନଥିଲେ ମଧ୍ୟ ଗରିବ ଲୋକମାନଙ୍କ ପାଇଁ ଏହା ଥିଲା ଅତ୍ୟନ୍ତ କଷ୍ଟସାଧ୍ୟ । ସତ୍କାର ପାଇଁ ଅର୍ଥବ୍ୟବସ୍ଥା କରିବା ଥିଲା ସବୁଠାରୁ ବଳି ଦୁରୂହ ବ୍ୟାପାର । ଗରିବ ଲୋକମାନଙ୍କର ଶବସତ୍କାର ପାଇଁ ସୁଭାଷଙ୍କର ସେବାଦଳ ବିହିତ ବ୍ୟବସ୍ଥା କରୁଥିଲେ । ଏଥିପାଇଁ ଗାଁ-ଗାଁ ବୁଲି ଅର୍ଥ ସଂଗ୍ରହ କରିବାକୁ ପଡ଼ୁଥିଲା । ଅନେକ ସମୟରେ ଶବବାହକମାନଙ୍କର ଅଭାବ ଅନୁଭୂତ ହେଉଥିଲା; ସେବା ସଙ୍ଘର ସଭ୍ୟମାନେ ଏ ଗୁରୁଦାୟିତ୍ୱ ତୁଲାଉଥିଲେ ।

ସମାଜସେବା ଏକ ନୂତନ ଜୀବନର ସନ୍ଧାନ ଦେଇଥିଲା । ସମାଜର ତଥାକଥିତ ଦୁର୍ବଳ ଶ୍ରେଣୀର ଲୋକମାନେ ପ୍ରାୟ ଗାଁମାନଙ୍କରେ ବସବାସ କରନ୍ତି । ସେମାନଙ୍କର ଜୀବନଯାପନ ପ୍ରଣାଳୀରେ ଆର୍ଥିକ ଅନଟନ, ନିରକ୍ଷରତା, ଅନ୍ଧବିଶ୍ୱାସ ପ୍ରଭୃତି ଯେଉଁ ପ୍ରଭାବ ପକାଏ, ତାହା ସେମାନଙ୍କୁ ବହୁ ସୁଯୋଗରୁ ବଞ୍ଚିତ କରେ । ସୁଭାଷଙ୍କର ସେବାଦଳ ଏହି ବଂଚିତ ଶ୍ରେଣୀର ଲୋକମାନଙ୍କର କଲ୍ୟାଣକଳ୍ପେ ବହୁ ରଚନାତ୍ମକ କାର୍ଯ୍ୟ ହାତକୁ ନେଇଥିଲେ ।

ଗ୍ରାମହିଁ ଭାରତର ଆତ୍ମା । ଗ୍ରାମ୍ୟ ଜୀବନର ସୁଖ-ଦୁଃଖ, ଅଭାବ-ଅନଟନ, ଆଶା-ନୈରାଶ୍ୟ, ଆନନ୍ଦ-ନିରାନନ୍ଦର ଚିତ୍ର ସୁଭାଷଙ୍କ ହୃଦୟ ଉପରେ ନିବିଡ଼ ପ୍ରଭାବ ପକାଇଥିଲା । ଆତ୍ମା ସହିତ ଆତ୍ମାର ନିବିଡ଼ ବନ୍ଧନ ସେ ଉପଲବ୍ଧି କରିଥିଲେ । ସେବାମାଧ୍ୟମରେ ସେ ଯେଉଁ ଆତ୍ମୋପଲବ୍ଧି କରିଥିଲେ ତାହା ହେଲା ତାଙ୍କର ଭାବୀ ଜୀବନର ପାଥେୟ । ଭାରତର ଆତ୍ମାକୁ ବୁଝିବା ପାଇଁ ଏହା ମଧ୍ୟରେ ଏକ ପ୍ରେରଣା ଥିଲା । ତାହାହିଁ ତାଙ୍କ ପାଇଁ ଏକ ନୂତନ ସୁଯୋଗ ।

ଜନଜୀବନର ଦର୍ପଣରେ ନିଜ ଜୀବନର ରୂପକୁ ଦେଖିବାର ସୁଯୋଗ ସମସ୍ତଙ୍କୁ ମିଳେନା । ଯେଉଁମାନେ ଆତ୍ମଦର୍ଶୀ, ଆତ୍ମପର୍ଯ୍ୟବେକ୍ଷଣ ପାଇଁ ନିଜେ ଆଗେଇଆସନ୍ତି,

ସେମାନଙ୍କୁ ଏ ସୁଫଳ ମିଳିଥାଏ । ସୁଭାଷ ସେ ଦର୍ପଣରେ ନିଜର ଆତ୍ମରୂପକୁ ଦେଖିବାକୁ ଚେଷ୍ଟା କରିଥିଲେ । ଭିତରର ବହୁ ପ୍ରଚ୍ଛନ୍ନ ଅଭିଳାଷ, ମନଗହନର ରୁଦ୍ଧ ଆବେଗ, ହୃଦୟର ଅପରନ୍ତ ଅଭିଘାତ, ନବୀନ ଆଶାର ଶୁଭ୍ର ମେଘାଲୋକ ଏବଂ ତାଙ୍କ ଆତ୍ମ-ଶକ୍ତିର ଦୁର୍ଜୟ କରିମଢ ଭାସମାନ ଚିତ୍ରପଟ ତା ଉପରେ ପ୍ରତିବିମ୍ବିତ ହେବାର ସେ ଦେଖିବାକୁ ପାଇଲେ । ଅହେତୁକ ଭାବରେ ଏକ ନୂତନ ଶକ୍ତି-ସରିତ୍ ଯେ ତାଙ୍କ ଭିତରେ ପ୍ରବାହିତ ହେଉଛି, ତାହା ସେ ଅନୁଭବ କରିଥିଲେ । ଏ ପରିବର୍ତ୍ତନ ଥିଲା ନିବିଡ଼ ଭାବରେ ଅନ୍ତର୍ମୁଖୀ ଏବଂ ଏହା ଦେ ତାଙ୍କର ଚିନ୍ତାରାଜ୍ୟରେ ବିସ୍ଫୋରଣ ସୃଷ୍ଟି କରିଥିଲା, ତାର କମ୍ପନ ସେ ବିପୁଳ ପରିମାଣରେ ଅନୁଭବ କରୁଥିଲେ ।

କ୍ରମେ ତାଙ୍କ ଭିତରେ ଆତ୍ମ-ବିଶ୍ଳେଷଣ ଆରମ୍ଭ ହେଲା ।

ଅନେକ ପରିସ୍ଥିତିରେ କୌଣସି ଏକ ନିଷ୍ପତ୍ତିର ନିକଟବର୍ତ୍ତୀ ହେବା ସମୟରେ ମଧ୍ୟ ତାହା ଆକସ୍ମିକ ଭାବରେ ବଦଳିଯାଉଥିଲା । ଅନେକ ପାରିପାର୍ଶ୍ୱିକ ଘଟଣାପ୍ରବାହ ତାଙ୍କୁ ପରିପକ୍ୱ କରିବା ଦିଗରେ ସାହାଯ୍ୟ କରିଥିଲେ ମଧ୍ୟ, ମାନସିକ ସଂଘର୍ଷ ଘଟାଇବାରେ ସାହାଯ୍ୟ କରୁଥିଲା ।

ମଣିଷ କେବଳ ଶରୀରସର୍ବସ୍ୱ ନୁହେଁ ।

ଶରୀର ଭିତରେ ସେ ଏକ ମନନଶୀଳ ମନସର୍ବସ୍ୱ ଜୀବ । ସୁଭାଷ ବହୁ ସଂଘର୍ଷ ଭିତରେ ଗତି କରିବା ଫଳରେ ତାହା ମାନସମଣ୍ଡଳର ସ୍ଥିର ପରିବେଶକୁ ସମୟରେ କୋଳାହଳମୟ କରିପକାଉଥିଲା । ଅହେତୁକ ଭୟର ଭୂତ ସ୍ୱପ୍ନ ଭିତରେ ବି ତାଙ୍କୁ ବିବ୍ରତ କରୁଥିଲା । ସେମାନଙ୍କର ଆକ୍ରମଣରେ ସୁପ୍ତ ମନର କୋମଳ ବୃତ୍ତିସମୂହ କ୍ଷତାକ୍ତ ହେଉଥିଲା । ସେ ଯେତେବେଳେ ମାନସିକ ଗ୍ଲାନିର କାରଣ ବିଷୟରେ ନିଜେ ସଚେତନ ହୋଇଗଲେ, ସେତେବେଳେ ମାନସିକ ପରିବେଶକୁ ସଜାଡ଼ି ନେଇ ସୁସ୍ଥ ତଥା ଦୃଢ଼ ମନୋଭାବ ପୋଷଣ କରିବା ଫଳରେ ଅପ୍ରୀତିକର, ଯନ୍ତ୍ରଣାଦାୟକ ସ୍ୱପ୍ନସମୂହ ଆସ୍ତେ ଅପସରିଗଲା । ମାନସିକ ସ୍ଥିତି ସମୟକ୍ରମେ ଅନୁକୂଳ ହେବାକୁ ଲାଗିଲା । ସେ ସ୍ୱପ୍ନ-ଯନ୍ତ୍ରଣାରୁ ରକ୍ଷା ପାଇଗଲେ । ଅବଚେତନ ମନର ଅବାନ୍ତର ପ୍ରତିକ୍ରିୟା ମଉଳିଗଲା ।

ଏଥିଭିତରେ ଗୋଟିଏ ବର୍ଷ ବିତିଗଲାଣି ।

ସୁଭାଷ କଟକରୁ କଲିକତା ଫେରିଆସିଲେ । ବିଶ୍ୱବିଦ୍ୟାଳୟର ଦୟାଭିକ୍ଷା କରିବା ବ୍ୟତୀତ ତାଙ୍କ ପାଖରେ ଅନ୍ୟ କିଛି ପନ୍ଥା ନଥିଲା । କର୍ମକର୍ତ୍ତାମାନଙ୍କର ହୃଦୟ ପରିବର୍ତ୍ତନ ହୋଇପାରିଲେ ସେ ପୁଣିଥରେ ଶିକ୍ଷାଲାଭ କରିବାର ସୁଯୋଗ ପାଇବେ । ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟ କହିଲେ ସାର୍ ଆଶୁତୋଷ ମୁଖାର୍ଜୀଙ୍କୁ ବୁଝାଉଥିଲା । ସେ ଚାହିଁଲେ ଦଣ୍ଡ କୋହଳ କରାଯାଇ ପାରିବ । ସୁଭାଷ ଏଥିପାଇଁ କ୍ଷେତ୍ର ପ୍ରସ୍ତୁତ କରୁଥିଲେ । ଆଶାଭରା ମନର ଉଦ୍‌ବେଗ ବଡ଼ ଅସହ୍ୟ । ସିଦ୍ଧାନ୍ତ ଯେତିକି ବିଳମ୍ବ ହେଉଥାଏ, ମନ ସେତିକି ବ୍ୟଗ୍ର ତଥା ବ୍ୟସ୍ତ ହେଉଥାଏ ।

ସେତେବେଳେ ସୈନ୍ୟବାହିନୀ ପାଇଁ ଲୋକ ନିଆଯାଉଥାଏ । ସୁଭାଷ ନିଜର ଆବେଗକୁ ସମ୍ବରଣ କରିନପାରି ଧୈର୍ଯ୍ୟ ପରୀକ୍ଷା ଭିତରେ ଆଉ ଅଧିକ ସମୟ ଅତିବାହିତ କରିବାକୁ ପସନ୍ଦ କଲେନାହିଁ ।

ମନରେ ଅପରନ୍ତ ଆବେଗ । ସୈନ୍ୟବାହିନୀରେ ଲୋକ ନିଯୁକ୍ତ ହେଉଥାନ୍ତି । ସେ ମଧ୍ୟ ଯାଇ ସେଥିରେ ଯୋଗଦେଲେ । ସମସ୍ତ ପ୍ରକାରର ଟିକିନିଖି ପରୀକ୍ଷା ଭିତରେ ସେ ସଫଳତା ଲାଭ କଲେ । ଏକମାତ୍ର ରହିଲା ଆଖି-ପରୀକ୍ଷା । ସେଥିରେ କୌଣସି ଅସୁବିଧା ନ ହେଲେ ସେ ସୈନ୍ୟବାହିନୀର ଅନ୍ତର୍ଭୁକ୍ତ ହୋଇଯିବେ । ଆଖି-ପରୀକ୍ଷାର ଦାୟିତ୍ୱ ଥିଲା ଜଣେ ଇଂରେଜ ସର୍ଜନଙ୍କ ହାତରେ । ସେ ଯଥାବିଧି ପରୀକ୍ଷା କରିବା ପରେ ସବୁ ବିଷୟରେ ସଫଳତା ହାସଲ କରିଥିବା ସୁଭାଷଙ୍କୁ କେବଳ ଆଖି-ଦୋଷପାଇଁ ଅନୁପଯୁକ୍ତ ବୋଲି ପ୍ରକାଶକଲେ । ସୁଭାଷ ଗଭୀର ମର୍ମଦାହ ଭିତରେ ନିଜର ବିଫଳତାକୁ ଗ୍ରହଣକଲେ ।

୧୯୧୭ ମସିହା ଜୁଲାଇ ମାସର ସେ ଶୁଭ ସମ୍ବାଦଟି ମଧୁର ଦିନଟି ଭୁଲିବାର ନୁହେଁ । ଏଥିଭିତରେ ବିଶ୍ୱବିଦ୍ୟାଳୟର ତୁଙ୍ଗ କର୍ମକର୍ତ୍ତା ତାଙ୍କ ଉପରେ ଥିବା ନିଷେଧାଜ୍ଞା ଉଠାଇ ନେଇଥିଲେ । ସୁଭାଷ ପୁଣିଥରେ ଶିକ୍ଷାର୍ଥୀ ଜୀବନକୁ ଫେରିଆସିବା ପାଇଁ ସୁଯୋଗ ପାଇଲେ । ପ୍ରେସିଡେନ୍‌ସି କଲେଜରେ ଆଉ ଥରେ ନାଁ ଲେଖାଇ ପଢ଼ିବାକୁ ସେ ଆଗ୍ରହ ପ୍ରକାଶ କଲେନାହିଁ । ଅନ୍ୟ ଯେକୌଣସି କଲେଜରେ ନାଁ ଲେଖାଇଲେ ଅନ୍ତତଃ ମାନସିକ ପରାଭବରୁ ତାଙ୍କୁ ମୁକ୍ତି ମିଳିବ ।

'ବଙ୍ଗବାସୀ' କଲେଜରେ ନାଁ ଲେଖାଇବା ପାଇଁ ତାଙ୍କୁ ସୁଯୋଗ ମିଳିଲା; କିନ୍ତୁ 'ଦର୍ଶନ'ରେ ଅନର୍ସ ଶ୍ରେଣୀ ନଥିବାରୁ ସେ ସେଠାରେ ପ୍ରବେଶ କରିପାରିଲେ ନାହିଁ ।

ସ୍କଟିସ୍ ଚର୍ଚ୍ଚ କଲେଜରେ ନାଁ ଲେଖାଇବା ପାଇଁ ମନସ୍ଥକରି ତା'ର ଅଧ୍ୟକ୍ଷଙ୍କୁ ସେ ସାକ୍ଷାତ କଲେ । ନିଜର ସମସ୍ତ ଘଟଣା ପ୍ରକାଶ କରି କଲେଜରେ ଯୋଗଦେବା ପାଇଁ ଅନୁମତି ଦେବାକୁ ଅନୁରୋଧ କଲେ । ଅଧ୍ୟକ୍ଷ ମହାଶୟ ଥିଲେ ପ୍ରକୃତରେ ଉଦାର ଓ ସହାନୁଭୂତିସମ୍ପନ୍ନ । ସେ କହିଲେ, "ପ୍ରେସିଡେନ୍‌ସି କଲେଜର ଅଧ୍ୟକ୍ଷ ବାଧା ନଦେଲେ ଗ୍ରହଣ କରିବାରେ କୌଣସି ଅସୁବିଧା ହେବନାହିଁ । ତେବେ ସେ ସମ୍ପର୍କରେ ମୁଁ ତାଙ୍କର ମତାମତ ଲୋଡ଼ିବି ।"

ନାଁ ଲେଖା ହୋଇଗଲା ।

ତୃତୀୟ ବାର୍ଷିକ କଳାଶ୍ରେଣୀ ଭିତରେ ସୁଭାଷ ନାଁ ଲେଖାଇଲେ । ପୂର୍ବ ସାଥୀମାନେ ସେତେବେଳକୁ ବି. ଏ. ପାଶ କରିସାରି ଏମ୍. ଏ. ପଢ଼ୁଥାନ୍ତି । ସୁଭାଷ ପ୍ରଥମେ ଟିକିଏ ମନସ୍ତାତ୍ତ୍ୱିକ ଲଘୁତ୍ୱବୋଧ ଅନୁଭବ କଲେ; କିନ୍ତୁ ପରେ ତାହା ଘୁଞ୍ଚିଗଲା । କନ୍ୟାକୁମାରୀ ଘଟଣାର ଉଦ୍ଦାମତା କମିଯିବା ପରେ ସେ ଯେପରି ଶାନ୍ତ-କାନ୍ତ କୁଳୁକୁଳୁ ସଙ୍ଗୀତ-ଗାନ

କରି ତା ଚଳପଥରେ ଆଗେଇଯାଏ, ସୁଭାଷ ସେହିପରି ସାଂପ୍ରତିକ ପରିସ୍ଥିତିରେ ଏକ ଶାନ୍ତ ଜୀବନ ଯାପନ କରିବାକୁ ଆଗେଇଗଲେ ।

ସ୍କଟିସ୍ ଚର୍ଚ୍ଚ କଲେଜର ଅଧ୍ୟକ୍ଷ ଯେପରି ଚତୁର, ସେପରି ବିଚାରଶୀଳ ଓ ହୃଦୟବାନ୍ । ତାଙ୍କର ଦର୍ଶନଶାସ୍ତ୍ରରେ ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା ଏବଂ ସୁନ୍ଦର ଭାବରେ ସେ ପାଠ ଦାନ କରି ଛାତ୍ରମାନଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ବାଇବେଲ ଶିକ୍ଷା ଏତେ ସାବଲୀଳ ଢଙ୍ଗରେ ସେ ଦେଇପାରୁଥିଲେ ଯେ, ଯେକୌଣସି ଛାତ୍ର ମନରେ ତାହା ଗଭୀର ରେଖାପାତ କରୁଥିଲା । ସୁଭାଷଚନ୍ଦ୍ର ତାଙ୍କର ଅନ୍ତର୍ନିହିତ ଚମତ୍କାରିତା ଏବଂ ବ୍ୟକ୍ତିତ୍ୱ ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ । ଡ: ଅର୍କୋହାର୍ଟଙ୍କ ଛାତ୍ରବତ୍ସଳତା ସମସ୍ତଙ୍କୁ ମୁଗ୍ଧ କରିଥିଲା ।

ସୁଭାଷ କଲେଜର ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂଯୁକ୍ତ ଥିଲେ । ତାଙ୍କ ଭିତରେ ଥିବା ନେତୃତ୍ୱର ନମନୀୟତା ଏକ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । କଲେଜର ଶିକ୍ଷାର୍ଥୀମାନେ ତାଙ୍କ ମନର ମହକରେ ମହକିତ ଥିଲେ । ତାଙ୍କ ସ୍ଥାନ ସେମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ଥିଲା ।

ସୈନିକର ଜୀବନ ପାଇଁ ସୁଭାଷଙ୍କର ଏକ ବିଶେଷ ଆକର୍ଷଣ ଥିଲା । ପ୍ରଥମ ଥର ସେ ସୈନ୍ୟଶ୍ରେଣୀଭୁକ୍ତ ହେବାପାଇଁ ସଫଳକାମ ହୋଇ ପାରିନଥିଲେ । ମନ ଭିତରେ ଗୋଟାଏ ଅବଶୋଷ ରହିଯାଇଥିଲା । ପୁଣି ଥରେ ଏ ଦିଗରେ ତାଙ୍କୁ ଆଉ ଏକ ସୁଯୋଗ ମିଳିଲା । ସରକାର ବିଶ୍ୱବିଦ୍ୟାଳୟରେ ଏକ ପ୍ରତିରକ୍ଷା ବିଭାଗ ଖୋଲିଲେ—ଭାରତୀୟ ଟେରିଟୋରିଆଲ ଆର୍ମିରେ ଲୋକ ନିଆଗଲା । ସୁଭାଷ ସେଥିରେ ନିଜକୁ ସାମିଲ କରିବା ପାଇଁ ମନସ୍ଥ କଲେ । ତାଙ୍କର ଧାରଣା ଶାରୀରିକ ପରୀକ୍ଷା ସେତେ କଡ଼ାକଡ଼ି ଭାବରେ କରାଯିବ ନାହିଁ ଓ ସେ ଏଥର ପରୀକ୍ଷାରେ ନିଶ୍ଚୟ କୃତକାର୍ଯ୍ୟ ହେବେ । ଆଖି-ପରୀକ୍ଷା ଉପରେ ବୋଧହୁଏ ଏତେ ଗୁରୁତ୍ୱ ଦିଆଯିବ ନାହିଁ । ସତକୁ ସତ ତାଙ୍କର ଅଭିଳାଷ ପରିପୂର୍ଣ୍ଣ ହୋଇଥିଲା । ସେ ଏଥିରେ ଯୋଗଦେବାର ସୁଯୋଗ ପାଇଲେ ।

କଲିକତା ମୈଦାନରେ ତାଲିମକାମ ଆରମ୍ଭହେଲା ।

ସମବେତ ଲୋକମାନଙ୍କୁ ଦେଖିଲେ ଜଣାପଡ଼େ, ସତେ ଯେପରି ସେମାନେ ବହୁ ବ୍ୟତିକ୍ରମ ଭିତରେ ଏକକ ଓ ଅନତିକ୍ରମ ଅବିଭକ୍ତ ବ୍ୟକ୍ତିତ୍ୱ । ବେଶପୋଷାକର ବିଭିନ୍ନତା ସାମରିକ ମଂଚରେ କୌତୂହଳ ସୃଷ୍ଟି କରୁଥାଏ । ତଥାପି ସେମାନେ ଯେ ସୈନିକର ମନୋଭାବ ନେଇ ସମସ୍ତେ ସମବେତ ହୋଇଥିଲେ ଓ ତାଲିମ ଗ୍ରହଣ କରୁଥିଲେ ତାହା ପ୍ରକୃତରେ ଆନନ୍ଦର କଥା । ତେବେ ଏ ପରିସ୍ଥିତି ବେଶି ଦିନ ରହିଲାନାହିଁ । ପ୍ରାୟ ଦୁଇ ମାସ ପରେ, ଯେତେବେଳେ ସମସ୍ତେ ସୈନିକର ପୋଷାକ ପାଇଗଲେ ଓ ବନ୍ଧୁକ ଧରି ଡ୍ରିଲ କରିବାକୁ ଆରମ୍ଭ କଲେ ସେତେବେଳେ ସମସ୍ତଙ୍କ ମଧ୍ୟରେ ଏକ ଆତ୍ମପ୍ରତ୍ୟୟ ସୃଷ୍ଟି ହେଲା ଯେ ସେମାନେ ଦେଶର ସେବାକାରୀ ସୈନିକ ।

ସମସ୍ତଙ୍କମେ ଏହି ନୂତନ ଯୁବକମାନେ ସୈନିକର କର୍ତ୍ତବ୍ୟ ପାଳନ କରିବାରେ ଯଥେଷ୍ଟ କୃତିତ୍ୱ ପ୍ରତିପାଦନ କରିଥିଲେ । ଅଶିକ୍ଷିତ ସୈନ୍ୟମାନଙ୍କ ଅପେକ୍ଷା ଶିକ୍ଷା ଲାଭ କରିଥିବା ଏଇ ଛାତ୍ରମାନେ ସହଜ ଓ ସରଳ ଭାବରେ ଯେ ଗୁରୁତ୍ୱପୂର୍ଣ୍ଣ ସାମରିକ କୌଶଳ ଶିକ୍ଷା କରିବାକୁ ସମର୍ଥ ହୋଇପାରିଲେ, ଏଥିରେ ବିସ୍ମିତ ହେବାର କିଛି ନଥିଲା । କ୍ୟାମ୍ପ-ଜୀବନର ସ୍ୱାଦ ସେମାନଙ୍କୁ ଆନନ୍ଦ ଦେଇଥିଲା । ପାରିବାରିକ ଜୀବନର ସମନ୍ୱୟଠାରୁ ଏହା ଏକ ମଧୁର ବ୍ୟତିକ୍ରମ । ଅନେକ ସମୟରେ କଠିନତା ଭିତରେ ବି ଆନନ୍ଦର ମଧୁରତା ଥାଏ । ଗ୍ରହୀତାର ଗ୍ରହଣ କରିବାର ଶକ୍ତି ଓ ପରିସ୍ଥିତି ପ୍ରତି ପ୍ରକାଶ କରିବାର ଦୃଷ୍ଟିଭଙ୍ଗୀ ଉପରେ ଏହା ନିର୍ଭର କରିଥାଏ ।

କିଛିଦିନ ପରେ ବନ୍ଧୁକଚାଳନା-କୌଶଳ ସେମାନେ ଶିକ୍ଷା କଲେ ।

ଜୀବନରେ ଏକ ନୂତନ ଆନନ୍ଦ ଓ ଅଭିନବ ଉନ୍ମାଦନା ସେମାନେ ଅନୁଭବ କଲେ । ବନ୍ଧୁକଚାଳନା ତାଲିମ୍ କାମ ଅଳ୍ପେ ଶେଷ ହେବାକୁ ବସିଲା । ସୁଭାଷ ସୈନିକ-ବେଶରେ କାନ୍ଧରେ ବନ୍ଧୁକ ପକାଇ ଯେତେବେଳେ ଆଗେଇଗଲେ, ସେତେବେଳେ ତାଙ୍କର ସେହି ଅମାପ ଆନନ୍ଦକୁ କଳନା କରିବା ସମ୍ଭବ ନୁହେଁ । ସୈନିକତ୍ୱ ତାଙ୍କୁ ଯେତିକି ଆନନ୍ଦ ଦେଇଥିଲା; ତା ଅପେକ୍ଷା ଅଧିକ ଆତ୍ମ-ବିଶ୍ୱାସ ସୃଷ୍ଟି କରିଥିଲା । ପିଲ୍-ଦିନର ମାନସିକ ଅବସାଦ ଆସ୍ତେ ଦୂରେଇଗଲା । ସେ ନିଜ ଭିତରେ "ମୁଁ ହିଁ"ର ପ୍ରଭାବ ଯଥେଷ୍ଟ ଭାବରେ ଅନୁଭବ କରିଥିଲେ । ତାଙ୍କ ଚରିତ୍ରରେ ଯେଉଁ ଦିଗଟା ଅଭାବ ରହି-ଯାଇଥିଲା ବୋଲି ସେ ଭାବୁଥିଲେ, ସୈନିକର ଜୀବନ ଭିତରୁ ସେ ତାହା ଗ୍ରହଣ କରିବାର ସୁଯୋଗ ପାଇଲେ । ସୈନିକର ସ୍ୱପ୍ନ ତାଙ୍କର ଚରିତାର୍ଥ ହେଲା । ସେ ଗଭୀର ଆତ୍ମତୃପ୍ତି ଅନୁଭବ କଲେ । ଏହା ତାଙ୍କର ପ୍ରାଧାନ୍ୟ ବଢ଼ାଇଥିଲା ।

ପୂରା ଗୋଟିଏ ବର୍ଷ ସୈନିକର ଅଭିନୟରେ ବିତିଗଲା ।

ତୃତୀୟ-ବାର୍ଷିକ କଲାଶ୍ରେଣୀ ହିସାବରେ ଶିକ୍ଷା ପ୍ରତି ଯେତିକି ସମୟ ବିନିଯୋଗ କରିବା କଥା; ତାହା ସେ କରି ପାରିନଥିଲେ । ଚତୁର୍ଥ ବର୍ଷହିଁ ସେ କେବଳ ପଢ଼ାପଢ଼ିରେ ମନୋନିବେଶ କଲେ । ଗଭୀର ଅଧ୍ୟବସାୟ ଫଳରେ ୧୯୧୯ ମସିହାରେ ସେ ବି. ଏ. ପରୀକ୍ଷାରେ କୃତିତ୍ୱ ହାସଲ କଲେ । ଦର୍ଶନଶାସ୍ତ୍ରରେ ସେ ପ୍ରଥମ ଶ୍ରେଣୀରେ ଅନର୍ସ ପାଇ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ଏମ୍. ଏ. ପଢ଼ିବା ପାଇଁ ବ୍ୟବସ୍ଥା ହେଲା । ଦର୍ଶନରେ ଏମ୍. ଏ. ପଢ଼ିବା ତାଙ୍କର ଇଚ୍ଛା ନୁହେଁ । ମନସ୍ତତ୍ତ୍ୱପ୍ରତି ତାଙ୍କର ଆକର୍ଷଣ ଅଧିକ । ତାଙ୍କର ଇଚ୍ଛା ପରୀକ୍ଷାମୂଳକ ମନସ୍ତତ୍ତ୍ୱରେ ଏମ. ଏ. କରିବେ । ଜନଜୀବନକୁ ଅନୁଧ୍ୟାନ କରିବା ପାଇଁ ଏହା ସୁଯୋଗ ଦେବ । ତାହାହିଁ ହେଲା; କିନ୍ତୁ ବେଶି ଦିନ ପାଇଁ ନୁହେଁ—ଏ ସୁଯୋଗରୁ ସେ ବଞ୍ଚିତ ହେଲେ ପରିସ୍ଥିତିର ପରିବର୍ତ୍ତନ ଦୃଷ୍ଟିରୁ ।

ସେଦିନର ସନ୍ଧ୍ୟା ସାରାଜୀବନ ପାଇଁ ଯେପରି ରୋମାଞ୍ଚକର, ସେପରି ସ୍ମୃତି-ସଜଳ । ଆକସ୍ମିକ ଭାବରେ ଖବର ଆସି ପହଞ୍ଚିଲା—ସୁଭାଷଚନ୍ଦ୍ରଙ୍କ ପିତା ଜାନକୀନାଥ ଖବର

ଦେଇଛନ୍ତି ବଡ଼ପୁଅ ଶରତ୍‌ଚନ୍ଦ୍ରଙ୍କ ହାତରେ—ଇଂଲଣ୍ଡରେ ଆଇ. ସି. ଏସ୍. ପରୀକ୍ଷା ପାଇଁ ପଢ଼ିବାକୁ ଯିବେ । ସୁଭାଷଙ୍କ ପାଇଁ ଏ ସମ୍ବାଦ ଯେତିକି ଆନନ୍ଦପ୍ରଦ ଥିଲା; ସେତିକି ମଧ୍ୟ ଥିଲା ବିସ୍ମୟକର । ସେ ଯେତେବେଳେ ମନର ଚରମ ବ୍ୟାକୁଳତା ଭିତରେ ପଢ଼ିବା ପାଇଁ ବିଦେଶକୁ ଯିବାକୁ ଚାହୁଁଥିଲେ, ସେତେବେଳେ ସେ ପ୍ରସ୍ତାବ ତାଙ୍କର ଗ୍ରହଣଯୋଗ୍ୟ ହୋଇ ନଥିଲା । ଯେତେବେଳେ ସେ ଏକ ସ୍ଥିର ପରିବେଶ ଭିତରେ ନିଜର ଭବିଷ୍ୟତ କର୍ମପନ୍ଥା ବାଛିନେଲେ, ଠିକ୍ ସେହି ମୁହୂର୍ତ୍ତରେ ବିଦେଶରେ ଶିକ୍ଷା ଲାଭ ପାଇଁ ଅଯାଚିତ ନିମନ୍ତ୍ରଣ ଆସି ପହଞ୍ଚିଲା । ସାଂପ୍ରତିକ ପରିସ୍ଥିତିରେ ସେ କଣ କରିବେ, କିଛି ସ୍ଥିର କରି ପାରିଲେ ନାହିଁ । ତାଙ୍କ ହାତରେ ସମୟ ଖୁବ୍ ଅଳ୍ପ; ଗୋଟିଏ ଦିନ ଭିତରେ ସ୍ଥିରମତ ଦେବାକୁ ହେବ—ଯିବେ କି ନାହିଁ । କଣ କରିବେ କିଛି ସ୍ଥିର କରିପାରିଲେ ନାହିଁ । ନିଜର ସମସ୍ତ ଭବିଷ୍ୟତ ଯୋଜନା ଏକ ଅଦୃଶ୍ୟ ଶକ୍ତିର ପ୍ରଭାବରେ ଯେ ଓଲଟପାଲଟ ହୋଇଯାଉଛି ସେ ତାହା ଅନୁଭବ କରିଥିଲେ । ଯାହା ତାଙ୍କର ସ୍ୱପ୍ନର ସୀମା ସ୍ପର୍ଶ କରିନଥିଲା, ତାହା ଯେ ବାସ୍ତବ କ୍ଷେତ୍ରରେ ଘଟିବାକୁ ଯାଉଛି—ଏହା ବିଧି-ନିର୍ଦ୍ଦେଶ ବ୍ୟତୀତ ଅଉ କଣ ହୋଇପାରେ ?

କିନ୍ତୁ କେଉଁଥିପାଇଁ ? ଲାଭ କଣ ? କି ଉପକାର ସାଧିତ ହେବ ? ଇଂରେଜ ସରକାରଙ୍କ ଅଧୀନରେ ପରାଧୀନ ଭାବରେ ଲୋଭନୀୟ ଚାକିରିଟିଏ ବ୍ୟତୀତ ତାଙ୍କୁ ଆଉ ମିଳିବ କଣ ? ସ୍ୱାଧୀନ ମନୋଭାବର ସମାଧି ଉପରେ ଯେ ଏ ସୌଭାଗ୍ୟ-ସୌଧ ନିର୍ମିତ ହେବାକୁଯାଉଛି, ସେ ମର୍ମେ ମର୍ମେ ତାହା ଅନୁଭବ କରୁଥିଲେ । ତଥାପି ସେ ଯିବେ । ଭୋଗର ପାଥେୟ ଯୋଗାଡ଼ କରିବାକୁ ନୁହେଁ, ତ୍ୟାଗର ଗରିମାରେ ତାରୁଣ୍ୟର ବିଭବ ଭରିଦେବା ପାଇଁ ବୋଧହୁଏ ସେ ସାଧନା କରିବେ ।

ସେ ଇଂଲଣ୍ଡ ଗଲେ । ସେଦିନ ୧୯୧୯ ମସିହା, ସେପ୍‌ଟେମ୍ବର ମାସ ପନ୍ଦର ତାରିଖ । ଜୀବନର ଏକ ନୂତନ ଦିଗନ୍ତର ଆବିଷ୍କାର ପାଇଁ ଏହି ଶୁଭ ଯାତ୍ରା । ଲକ୍ଷ୍ୟର ପରିପୂରଣ ନିମନ୍ତେ ସେ ଯାଉଛନ୍ତି । ଏ ଯାତ୍ରା ଶୁଭମସ୍ତୁ ହେଉ ।

## ( ୪ )

ପ୍ରଥମ ମହାଯୁଦ୍ଧ ପରିସମାପ୍ତିର ଠିକ୍ ଅବ୍ୟବହିତ ପୂର୍ବର ଘଟଣା ।

ସେତେବେଳକୁ ଜାଲିଆନାୱାଲା ହତ୍ୟାକାଣ୍ଡ ସଂଘଟିତ ହୋଇସାରିଥାଏ । ଏ ମହାପ୍ରଳୟର କମ୍ପନ ବାହାରକୁ କିଛିମାତ୍ରାରେ ଅନୁଭୂତ ହୋଇପାରିଥିଲେ ମଧ୍ୟ

ବାହ୍ୟଜଗତ୍ ଏହି ଜଘନ୍ୟ ହତ୍ୟା-ବିଭୀଷିକାର ପ୍ରତ୍ୟକ୍ଷ ଅନୁଭୂତି ଅନୁଭବ କରି ପାରିନଥିଲା । ଇଂରେଜ ସରକାରଙ୍କ କଡ଼ା ନିୟନ୍ତ୍ରଣ ପାଇଁ ହିଁ ଏହା ସମ୍ଭବ ହୋଇଥିଲା । ସାରା ପଞ୍ଜାବରେ ସାମରିକ ଆଇନ୍ ବଳବତ୍ତର ଥିଲା । ଆଭ୍ୟନ୍ତରୀଣ ସମ୍ବାଦ ପରିବେଷଣ ଉପରେ କଠୋର କଟକଣା ଜାରି ହୋଇଥିଲା; ତେଣୁ ସମ୍ବାଦପତ୍ରମାନଙ୍କର ସ୍ୱାଧୀନତା ପ୍ରାପ୍ତ ନଥିଲା । ବାହାରର ଲୋକମାନେ ଭିତରର ଭୟାବହତା ଅନୁଭବ କରି ପାରୁନଥିଲେ ।

ମହାତ୍ମା ଗାନ୍ଧୀ ଥିଲେ ବ୍ୟତିକ୍ରମ; କୌଣସି ଶକ୍ତି ପକ୍ଷରେ ତାଙ୍କର ଅନ୍ତଃଶକ୍ତିକୁ ପ୍ରତିହତ କରିବା ସମ୍ଭବ ହେଉନଥିଲା । ସେ ତାଙ୍କର ପଦଯାତ୍ରା ଆରମ୍ଭ କରିଥିଲେ ଦେଶର ପ୍ରତି ପୁର-ପଲ୍ଲୀରେ । ପଞ୍ଜାବ ଘଟଣାର ପ୍ରତିକ୍ରିୟା ଅନୁଧ୍ୟାନ କରିବା ତାଙ୍କର ଲକ୍ଷ୍ୟ । ଦେଶବାସୀ କିପରି ଭାବରେ ଏହାକୁ ଗ୍ରହଣ କରିଛନ୍ତି, ତାହା ବୁଝିବା ପାଇଁ ସେ ବଡ଼ ବ୍ୟଗ୍ର । ଲୋକମାନେ ସଠିକ ଘଟଣା ଜାଣି ନପାରି କେବଳ ଗୁଜବ ଆକାରରେ କିଛିକଥା ଶୁଣିବାକୁ ପାଉଥିଲେ । ସତ୍ୟର ଉଦ୍‌ଘାଟନ ପାଇଁ ସମସ୍ତେ ବ୍ୟଗ୍ରତାର ସହିତ ଅପେକ୍ଷା କରିଥାନ୍ତି । ଦେଶ ବାହାରର ସମ୍ବାଦପତ୍ରମାନଙ୍କରେ ପଞ୍ଜାବ ଘଟଣାର ଲଘୁ ବିନ୍ୟାସ ଦେଖିବାକୁ ମିଳୁଥିଲା । ତାହା ମନ ଉପରେ ବିଶେଷ ପ୍ରଭାବ ପକାଇପାରୁନଥିଲା ।

ସୁଭାଷ ସେତେବେଳକୁ କାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇସାରିଥାନ୍ତି । ଇଂଲଣ୍ଡରେ ପହଞ୍ଚିବା ପରେ ଖବରକାଗଜମାନଙ୍କରୁ ପଞ୍ଜାବ ସମ୍ବନ୍ଧରେ ଯାହାକିଛି ଜାଣିଥିଲେ ସେଥିରେ ସେ ଅଧିକ ବିଚଳିତ ହୋଇପାରୁନଥିଲେ । ଘଟଣାର ଗୁରୁତ୍ୱ ଅନୁଭବ କରିବାର ସୁଯୋଗ ତାଙ୍କୁ ମିଳିନଥିଲା । ବ୍ରିଟିଶ ସମ୍ବାଦପତ୍ରମାନଙ୍କରେ ସତ୍ୟ ଘଟଣାର ଅପଲାପ କରାଯାଉଥିଲା ।

ବାପାଙ୍କ ପାଖରେ କରାଯାଇଥିବା ଶପଥ ରକ୍ଷାକରିବାକୁ ହେବ । ସୁଭାଷ ଗଭୀର ଅନୁରକ୍ତିର ସହ କାମ୍ବ୍ରିଜରେ ଭାରତୀୟ ସିଭିଲ୍ ସର୍ଭିସ୍ ପାଇଁ ଅଧ୍ୟୟନରତ ହେଲେ । କାମ୍ବ୍ରିଜର ସ୍ୱାଧୀନ ବାତାବରଣ ତାଙ୍କୁ ଆକୃଷ୍ଟ କରିଥିଲା । ଏହି ଅନୁଷ୍ଠାନର ଛାତ୍ରମାନଙ୍କର ସାମାଜିକ ସମ୍ମାନ ଓ ପ୍ରତିପତ୍ତି ଅନ୍ୟମାନେ ସ୍ୱୀକାର କରୁଥିଲେ । ବିଶ୍ୱବିଦ୍ୟାଳୟରେ ଯେଉଁ ସନ୍ଦେହମୁକ୍ତ ସମ୍ମାନଜନକ ସ୍ୱାଧୀନ ପରିବେଶ ସୁଭାଷଙ୍କୁ ମିଳିଥିଲା, ତାହା ତାଙ୍କର ମନ ଉପରେ ଗଭୀର ରେଖାପାତ କରିଥିଲା । ଆଖିଆଗରେ ଭାସିଆସୁଥିଲା ଅତୀତର ଆନ୍ତରିକତା-ବିହୀନ ଘଟଣାବଳୀ । କଲିକତାରେ ଅଧ୍ୟୟନ କରୁଥିବା ସମୟରେ ପୁଲିସର ସନ୍ଦେହ-କୁହୁଡ଼ିରେ ସେମାନେ ବୁଡ଼ିରହିଥିଲେ । ଏଠାରେ ସେହି ବିଷଚକ୍ଷୁର ବିକଟ ଦନ୍ତଗୁଡ଼ାକ ଆଉ ନାହିଁ । ସମ୍ମାନ ସନ୍ଦେହର ସ୍ଥାନକୁ ଅଧିକାର କରିଛି । ସୁଭାଷ ନୂତନ ପରିବେଶରେ ଉତ୍ସାହିତ ହୋଇଛନ୍ତି । କାମ୍ବ୍ରିଜ ତାଙ୍କୁ ନୂତନ ସମ୍ମାନ ଦେଇଛି ।

ପରୀକ୍ଷା ପାଇଁ ଅଭିପ୍ରେତ ପାଠ୍ୟ ବିଷୟ ଭିତରେ ଇଂରାଜୀ, ସଂସ୍କୃତ, ଦର୍ଶନ, ଇଂରେଜ ଆଇନ୍, ରାଜନୀତି-ବିଜ୍ଞାନ, ଆଧୁନିକ ଇଉରୋପ ଇତିହାସ, ଇଂରାଜୀ ଇତିହାସ, ଅର୍ଥନୀତି,

ଏବଂ ଭୂଗୋଳ ଅନ୍ତର୍ଗତ । ପୂର୍ବପଠିତ ପାଠ ସହିତ ବର୍ତ୍ତମାନ ପାଠର ସମ୍ପର୍କ ପ୍ରାୟ ନାହିଁ, କହିଲେ ଚଳେ । ନୂତନ ବିଷୟବସ୍ତୁ ଉପରେ ଜ୍ଞାନ ଆହରଣ କରିବାପାଇଁ ଗଭୀର ଅଧ୍ୟୟନ ଆବଶ୍ୟକ । ନିୟମିତ ନଥିଲେ ନିର୍ମୋଚନ ସମ୍ଭବ ନୁହେଁ । ସେ ନିଷ୍ଠାର ସହିତ ଅଧ୍ୟୟନରତ ହେଲେ—ଲକ୍ଷ୍ୟ ପୂରଣ କରିବାକୁ ହେବ ।

କାମ୍ବ୍ରିଜରେ ତାଙ୍କୁ ଅନେକ ଉପାଦେୟ ଭାଷଣ ଗ୍ରହଣ କରିବାକୁ ପଡ଼ୁଥିଲା । ପରୀକ୍ଷା ପାଇଁ ଏ ସବୁର ଉପାଦେୟତା ଯଥେଷ୍ଟ ଅଧିକ । ଏହା ବ୍ୟତୀତ ମାନସିକ ତଥା ନୈତିକ ପରିପୁଷ୍ଟି ପାଇଁ ଅନେକ ଅଭିଭାଷଣ ଯେ ଅତ୍ୟନ୍ତ ଫଳପ୍ରଦ ଥିଲା, ତାହା ଅସ୍ୱୀକାର କରାଯାଇନପାରେ । ଦୀର୍ଘ ଆଠମାସଧରି ଅଧ୍ୟୟନ ବ୍ୟତୀତ ସମୟର ଅନ୍ୟ କୌଣସି ଅଯଥା ଉପଯୋଗ ନଥିଲା । କଠିନ ପରିଶ୍ରମ ହିଁ ଥିଲା ଏକମାତ୍ର ସାଧନା ।

କାମ୍ବ୍ରିଜରେ ଥିବା ଅବସ୍ଥାରେ ଭାରତୀୟ ଛାତ୍ର ଏବଂ ଇଂରେଜ ଛାତ୍ରମାନଙ୍କ ମଧ୍ୟରେ ସମ୍ପର୍କ ମୋଟାମୋଟି ସୌହାର୍ଦ୍ଦ୍ୟପୂର୍ଣ୍ଣ ଥିଲେ ମଧ୍ୟ ଇଂରେଜ ଛାତ୍ରମାନଙ୍କ ମଧ୍ୟରେ ଏକ ପ୍ରଚ୍ଛନ୍ନ ଅହଂଭାବ ରହିଥିଲା । ଅମୃତସର ଘଟଣା ଘଟିବା ପରଠାରୁ ଭାରତୀୟ ଛାତ୍ରମାନେ ଅଧିକ ସ୍ପର୍ଶକାତର ଥିଲେ । ନିଜର ଆତ୍ମସମ୍ମାନବୋଧ ଉପରେ ସେମାନେ ଅତ୍ୟନ୍ତ ସଚେତନ ଥିଲେ । ଭାରତୀୟ ଛାତ୍ରମାନେ ବିଶେଷ କ୍ଷେତ୍ରରେ ସଫଳତା ହାସଲକଲେ ମଧ୍ୟ ବିଦ୍ୱେଷର ଏକ ଶୀତଳ ସ୍ରୋତ ଆଶାର ଉଷ୍ମତାକୁ ସମୟେ ସମୟେ ନଷ୍ଟ କରିଦେଉଥିଲା । ଭାରତୀୟ ଛାତ୍ରମାନେ ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ହେଉଥିଲେ । ଅବଶ୍ୟ ଏ ପରିସ୍ଥିତି ପ୍ରକାଶ୍ୟ ଭାବରେ ଘଟୁନଥିଲା । କିନ୍ତୁ ପ୍ରଚ୍ଛନ୍ନ ହାତର କାରସାଦ ଯୁକ୍ତିଯୁକ୍ତତାର ଆଳ ଦେଖାଇ ଭାରତୀୟ ଛାତ୍ରମାନଙ୍କୁ ମାନସିକ ପରାଭବ ଦେଉଥିଲା ।

କାମ୍ବ୍ରିଜରେ ସେତେବେଳେ ଭାରତୀୟ ଛାତ୍ରମାନେ ବହୁ ଦିଗରେ ନିଜର ପ୍ରତିଷ୍ଠା ଅର୍ଜନ କରିପାରିଥିଲେ । ପଢ଼ାପଢ଼ିରେ ସେମାନଙ୍କର ଖ୍ୟାତି ଅଧିକ ଥିଲା । କ୍ରୀଡ଼ା କସରତରେ ସେମାନେ ଇଂରେଜ ଛାତ୍ରମାନଙ୍କ ତୁଳନାରେ ନିମ୍ନ ମାନର ନଥିଲେ ।

କାମ୍ବ୍ରିଜରେ ଅଧ୍ୟୟନ କରିବା ଦ୍ୱାରା ସୁଭାଷଙ୍କର ମାନସିକ ଦିଗ୍‌ବଳୟ ବିସ୍ତୃତ ହେବାର ସୁଯୋଗ ପାଇଲା । ତାଙ୍କର ରାଜନୈତିକ ଅବବୋଧ ଓ ଚିନ୍ତାଧାରା ଏକ ନୂତନ ମୋଡ଼ ଗ୍ରହଣକଲା । ଆନ୍ତର୍ଜାତିକ ରାଜନୀତିର ଅନ୍ତର୍ନିହିତ ସ୍ରୋତକୁ ନିଜ ଭିତରେ ପରିପୁଷ୍ଟ କରିବାର ସୁଯୋଗ ତାଙ୍କୁ ମିଳିଲା ।

ଏଥିମଧ୍ୟରେ ବହୁ ଘଟଣାପ୍ରବାହର ଆଲେଖ୍ୟ ନେଇ ଆଠଟି ମାସ ବିତିଯାଇଛି । ଲଣ୍ଡନରେ ୧୯୨୦ ମସିହା ଜୁଲାଇ ମାସର ପ୍ରଥମ ଭାଗରେ ସିଭିଲ୍ ସର୍ଭିସ ପ୍ରତିଯୋଗିତା ପରୀକ୍ଷା ଆରମ୍ଭ ହେଲା । ସୁଭାଷ କଠିନ ପରିଶ୍ରମ କରିଥିଲେ ମଧ୍ୟ ତାଙ୍କର ପ୍ରସ୍ତୁତି ଆଶାନୁରୂପ ହୋଇ ନ ଥିଲା । ପ୍ରତିଯୋଗିତାରେ ଅନେକ ମେଧାବୀ ଛାତ୍ର ଅଂଶ ଗ୍ରହଣ

କରିଥିଲେ । ସେମାନଙ୍କର ଦୀର୍ଘଦିନର ପ୍ରସ୍ତୁତି ସେମାନଙ୍କୁ ଆଶାନ୍ୱିତ କରିପାରିଥିଲା । ସୁଭାଷ ପ୍ରତିଯୋଗିତାରେ ଆଶାନୁରୂପ ସଫଳତା କରିପାରିବେ—ଏ ବିଶ୍ୱାସ ତାଙ୍କର ନ ଥିଲା । ପରୀକ୍ଷା ପ୍ରାୟ ମାସେ ପର୍ଯ୍ୟନ୍ତ ଚାଲିଲା ।

ସେ ଦିନର ସେ ମଧୁମୟ ସଂଧ୍ୟା ଥିଲା ଖୁବ୍ ଉତ୍ତେଜନାମୟ ।

ଆକସ୍ମିକ ଭାବରେ ଗୋଟିଏ ଟେଲିଗ୍ରାମ୍ ଆସି ପହଞ୍ଚିଲା । ଲେଖାଥିଲା, **'CONGRATULATIONS SEE MORNING POST'**। ସୁଭାଷ ଆନନ୍ଦରେ ଯେତିକ ବିହ୍ୱଳ ହେଲେ, ସେତିକ ବିସ୍ମିତ ହେଲେ ମଧ୍ୟ । ମନ ଭିତରେ ଅପ୍ରତ୍ୟାଶିତ ଆଶାର ଉଚ୍ଛଳ ତରଙ୍ଗ । ରାତିର ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କ ପାଇଁ ବେଗମୋନ ଥିଲା—ସତେ କ'ଣ ତାଙ୍କର ସ୍ୱପ୍ନ ସାର୍ଥକ ହୋଇଛି ! ପିତାଙ୍କର ଆଶା ସତେ କ'ଣ ରୂପାୟିତ ହୋଇଛି !

ସକାଳ ହେଲା । ମର୍ଣ୍ଣିଙ୍ଗ୍ ପୋଷ୍ଟର ଗୋଟିଏ କପି ତାଙ୍କୁ ମିଳିଗଲା । ସେ ଦେଖିଲେ ପରୀକ୍ଷାର ଫଳ ପ୍ରକାଶ ପାଇଛି ଏବଂ ସେ ଚତୁର୍ଥ ସ୍ଥାନ ଅଧିକାର କରିଛନ୍ତି । ସେ ଭାରି ଆନନ୍ଦିତ ହେଲେ ଏବଂ ପିତାଙ୍କ ପାଖକୁ ତାରବାର୍ତ୍ତା ପଠାଇଲେ ।

ଲକ୍ଷ୍ୟ ହାସଲ ହୋଇଯିବା ପରେ ଅଲକ୍ଷ୍ୟରେ ଏକ ଜଟିଳ ସମସ୍ୟା ଆସି ତାଙ୍କ ସମ୍ମୁଖରେ ଦେଖାଦେଲା । ସେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦାନ କରି ବ୍ରିଟିଶ ସରକାରଙ୍କ ଅଧୀନରେ ଏକ ଚାକିରିସର୍ବସ୍ୱ ଜୀବନଯାପନ କରିବେ, କି ଚାକିରି ନ କରି ଏକ ସ୍ୱାଧୀନ ନୀତିପୁଷ୍ଟ ଜୀବନଯାପନ କରି ଦେଶସେବା କରିବେ—ଏହା ହିଁ ଥିଲା ତାଙ୍କପାଇଁ ଅତି ଜଟିଳ ପ୍ରଶ୍ନ ।

ଆଖିଆଗରେ ଆମୋଦଦାୟକ ଜୀବନର ରଙ୍ଗିନ୍ ଇନ୍ଦ୍ରଧନୁ, ପୁଣି ସଂଘର୍ଷମୟ ତରଙ୍ଗାୟିତ ସ୍ୱପ୍ନିଳ ଜୀବନର ଦିଗହଜା ପରିସୀମା । ଯେକୌଣସି ଗୋଟିଏକୁ ବାଛି ନେବାକୁ ହେବ—ଭୋଗପାତ୍ର ଆକଣ୍ଠ ପାନ କରିବେ କିମ୍ବା ତ୍ୟାଗ-ତଟିନୀରେ ନିଜର ସବୁ ସୁଖ-ସମ୍ଭୋଗକୁ ଜଳାଞ୍ଜଳି ଦେବେ ।

ସେତେବେଳେ ବଙ୍ଗଳାର ସବୁଠାରୁ ବଳି ଜନପ୍ରିୟ ନେତା ଥିଲେ ଚିତ୍ତରଞ୍ଜନ ଦାସ । ସୁଭାଷଙ୍କର ତାଙ୍କ ପ୍ରତି ଗଭୀର ସମ୍ମାନ ଥିଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ତାଙ୍କ ପାଖକୁ ଏକ ପତ୍ର ଲେଖିଲେ । ସାଂପ୍ରତିକ ପରିସ୍ଥିତିରେ ତାଙ୍କୁ କ'ଣ କରିବାକୁ ହେବ, ସେ ତାଙ୍କର ମୂଲ୍ୟବାନ୍ ମତାମତ ଲୋଡ଼ିଥିଲେ । ଏ ଚିଠିଟି ସେ ପ୍ରଥମ କରି ଲେଖିଥିଲେ ୧୯୨୧ ମସିହା ଫେବୃଆରି ୧୬ ତାରିଖରେ । କଂଗ୍ରେସର ରଚନାତ୍ମକ କାର୍ଯ୍ୟ କ'ଣ ହେବା ଉଚିତ, ସମାଜର ଦୁର୍ବଳଶ୍ରେଣୀର ଲୋକମାନଙ୍କ ଉନ୍ନତି ପାଇଁ କ'ଣ କରିବାକୁ ହେବ, ଭାରତକୁ ମୁକ୍ତ କରିବାପାଇଁ କିପରିଭାବରେ କାମ କରିବାକୁ ହେବ—ଏ ସଂପର୍କରେ ସେ ବହୁ ମତାମତ ଲୋଡ଼ିଥିଲେ । ତାଙ୍କର ଭାବୀ ଜୀବନ ପାଇଁ ସେ କି ନିଷ୍ପତ୍ତି ନେବେ ଓ ତାଙ୍କ ଭିତରେ ଥିବା ବୈପ୍ଳବିକ ଯୁବଶକ୍ତିକୁ କିପରି ଭାବରେ ମୁକ୍ତି-ଆନ୍ଦୋଳନ

କ୍ଷେତ୍ରରେ ବିନିଯୋଗ କରାଯାଇପାରିବ, ସେ ସଂକ୍ରାନ୍ତରେ ସେ ମିଃ ଦାସଙ୍କର ମୂଲ୍ୟବାନ୍ ମତାମତ ଖୋଜିଥିଲେ । ଚିଠିଟି ଅତି ଦୀର୍ଘ ଥିଲେ ମଧ୍ୟ ତାଙ୍କ ରଚନାତ୍ମକ ମନର ବହୁ ଦିଗ ଉନ୍ମୋଚନ କରୁଥିଲା ।

ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ସୁଭାଷଙ୍କଠାରୁ ଅନୁରୂପ ଏକାଧିକ ପତ୍ର ପାଇଥିଲେ । ସେ ପ୍ରସଙ୍ଗଛଳରେ ତାଙ୍କ ପାଖକୁ ଲେଖିଥିଲେ—"ଭାରତରେ କଂଗ୍ରେସ ବହୁ ରଚନାତ୍ମକ କାର୍ଯ୍ୟ କରୁଛି ଓ ଭବିଷ୍ୟତରେ କରିବାପାଇଁ ନୂତନ କର୍ମସୂଚୀ ସ୍ଥିର କରିଛି । ଏ ସବୁ ଜନକଲ୍ୟା ମୂଳକ କାର୍ଯ୍ୟ କରିବା ପାଇଁ ଆମ ଦେଶରେ ବର୍ତ୍ତମାନ ସଚ୍ଚୋଟ କର୍ମୀର ଅଭାବ ଅନୁଭୂତ ହୁଏ । ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଜୀବନ୍ୟାସ ଦେବାକୁ ହେଲେ ନିଷ୍ଠାପର କର୍ମୀ ଓ ତ୍ୟାଗନିଷ୍ଠ କର୍ତ୍ତବ୍ୟର ଚରମ ଆବଶ୍ୟକତା ରହିଛି । ତମେ ମାତୃଭୂମିକୁ ଫେରିଆସିଲେ ତାହା ଅନୁଭବ କରିପାରିବ । ସଦିଚ୍ଛା ଓ ସଦ୍‌ଭାବନା ହିଁ ଏକାନ୍ତ କାମ୍ୟ ।"

ଏ ପତ୍ରଟି ଥିଲା ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ସିଦ୍ଧାନ୍ତ ନେବାପାଇଁ ଅତୀବ ମୂଲ୍ୟବାନ୍ । ପତ୍ର ଭିତରେ ସ୍ୱଦେଶଭାବନାର ଯେଉଁ ପ୍ରଚ୍ଛନ୍ନ ସ୍ୱର ଲିପିବଦ୍ଧ ହୋଇଥିଲା । ସେ ମର୍ମେ ମର୍ମେ ତାହା ଅନୁଭବ କରିଥିଲେ । ଯୁକ୍ତିଯୁକ୍ତ ସିଦ୍ଧାନ୍ତ ନେବାପାଇଁ ସେ ପତ୍ରରେ ନୀରବ ନିର୍ଦ୍ଦେଶ ଥିଲା ।

ସୁଭାଷ ମାନସିକ ଦ୍ୱନ୍ଦ୍ୱଭିତରେ ନିଜର ସ୍ୱାଧୀନ ମତକୁ ପିତାଙ୍କ ପାଖକୁ ଲେଖି ପଠାଇଥିଲେ । ସେ ଯେ ଭାରତୀୟ ପ୍ରଶାସନିକ ସେବାସଂସ୍ଥାରୁ ବିଦାୟ ନେବାକୁ ଚାହାନ୍ତି, ଏ ସିଦ୍ଧାନ୍ତ ଯେତେ ଅପ୍ରୀତିକର ହେଲେ ମଧ୍ୟ ନିର୍ଭୀକ ଭାବରେ ତାଙ୍କୁ ଜଣାଇଥିଲେ । ପିତାଙ୍କର ମତାମତ ଜାଣିବାପାଇଁ ତାଙ୍କୁ ବ୍ୟଗ୍ରତାର ସହିତ ଅପେକ୍ଷା କରିବାକୁ ହେଲା । 'ଦାରିଦ୍ର୍ୟ ତଥା ଜନସେବା ହିଁ ଜୀବନର ଧ୍ୟେୟ'—ଏହା ହିଁ ଥିଲା ପତ୍ରର ମର୍ମ-ବାଣୀ । ଶାସକୀୟ ସମ୍ଭୋଗ ଅପେକ୍ଷା ଜନଜୀବନ ସହିତ ନିଜକୁ ସାମିଲ କରିବାପାଇଁ ସେ ଅଧିକ ପସନ୍ଦ କରିଥିଲେ ।

ସୁଭାଷଙ୍କର ପିତା ଜାନକୀନାଥ ପତ୍ରମଧ୍ୟରୁ ପୁତ୍ରର ନିଭୃତ ମନୋଭାବ ଅଧ୍ୟୟନ କରିପାରିଥିଲେ । ତାଙ୍କର ପ୍ରତିକ୍ରିୟା ପ୍ରତିକୂଳ ନ ହେଲେ ମଧ୍ୟ ଅନୁକୂଳ ନ ଥିଲା । ସ୍ୱକୀୟକ୍ଷେତ୍ରରେ ଥାଇ ଜନସେବା କରାଯାଇପାରିବ ନାହିଁ, ଏପରି ଭାବିବା ଠିକ୍ ନୁହେଁ ବୋଲି ସେ ଭାବୁଥିଲେ । ସୁଭାଷ ସେବା-ସୁଯୋଗ କଥା ଚିନ୍ତା କରୁନଥିଲେ; ତାଙ୍କରି ବିଚାର ଥିଲା ନୀତିଦୃଷ୍ଟିରୁ ଏହା କେତେ ଦୂର ସଙ୍ଗତ, ସେ ତାହା ପର୍ଯ୍ୟାଲୋଚନା କରିଥିଲେ । ବିଦେଶୀ ସରକାରର ଏକ ଅଙ୍ଗରୂପେ ଅନ୍ତର୍ଭୁକ୍ତ ହୋଇ ନିଜର ସ୍ୱାଧୀନ ମନୋଭାବ ଓ ସ୍ୱାତନ୍ତ୍ର୍ୟକୁ ବିସର୍ଜନ କରିବାକୁ ସେ ଜଣେ ସ୍ୱାଧୀନଚେତା ଯୁବକର ନୀତିସମ୍ମତ କାର୍ଯ୍ୟ ବୋଲି ଭାବୁ ନ ଥିଲେ । ଭାରତୀୟ ଯୁବଶକ୍ତି ନିଜର ସ୍ୱାର୍ଥସାଧନ

ପାଇଁ ଯଦି ଦାସାନୁବୃତ୍ତିକୁ କେବଳ ଅବଲମ୍ବନ ରୂପେ ଗ୍ରହଣକରେ, ତା'ହେଲେ ସ୍ୱରାଜର ସ୍ୱପ୍ନ ତା'ଠାରୁ ବହୁ ଦୂରରେ ରହିଯିବ । ଭାରତର ପ୍ରତ୍ୟେକ ବ୍ୟକ୍ତି ମାତୃଭୂମି ଏବଂ ମାତୃଶକ୍ତିର ପଦତୀର୍ଥରେ ତ୍ୟାଗର ନୈବେଦ୍ୟ ଅର୍ପଣ ନ କଲେ ଚିରଦିନ ପାଇଁ ଭାରତ ପରାଧୀନ ହୋଇ ରହିବ, ଏ ଆଶଂକା ସୁଭାଷଙ୍କ ମନକୁ ସର୍ବଦା ଚଞ୍ଚଳ କରୁଥିଲା ।

ଜାନକୀନାଥ ପୁତ୍ରର ଯୁବସୁଲଭ ସ୍ୱପ୍ନ ତଥା ଉଦ୍ୟମ ଭାବାଳୁତାକୁ ଅତିରିକ୍ତ ଆଗ୍ରହ ରୂପେ ଗ୍ରହଣ କରିଥିଲେ । ନିଜର ଭବିଷ୍ୟତ ବୃତ୍ତି ବିଷୟରେ ଏକ କଠୋର ନିଷ୍ପତ୍ତି ନେବାର ସମୟ ଯେ ପରିପକ୍ୱ ହୋଇନାହିଁ, ସେ ମର୍ମେ ମର୍ମେ ତାହା ଅନୁଭବ କରୁଥିଲେ । ପୁତ୍ରକୁ ଏହା ଜଣାଇଦେବା ତାଙ୍କର ଇଚ୍ଛା ଥିଲା । ପିତାଙ୍କର ଏତାଦୃଶ ଦୃଷ୍ଟିଭଙ୍ଗୀ ପଛରେ ଯେଉଁ ଅମାପ ଶ୍ରଦ୍ଧା ଓ ସନ୍ତାନପ୍ରେମ ପ୍ରଚ୍ଛନ୍ନଭାବରେ ଥିଲା, ସୁଭାଷ ତାହା ଯେ ଅନୁମାନ କରିନଥିଲେ ତା ନୁହେଁ; କିନ୍ତୁ ସେ ନିବିଡ଼ ଆନ୍ତରିକତାର ସହିତ ଅନୁଭବ କରୁଥିଲେ ଯେ ତ୍ୟାଗ ଏବଂ ଆତ୍ମୋତ୍ସର୍ଗ ବିନା ମୁକ୍ତି ଅସମ୍ଭବ । ଯେ କେହି ହେଉନା କାହିଁକି, ଜାତୀୟତା ପାଇଁ ନିଶ୍ଚିତ ଭାବରେ ନିଜକୁ ଉତ୍ସର୍ଗ କରିବାକୁ ହେବ, ତେବେ ସେ କାହିଁକି ଏ ସେବା-ସୁଯୋଗରୁ ନିଜକୁ ବଞ୍ଚିତ କରିବେ । ଏହାହିଁ ଥିଲା ଆତ୍ମ-ଆଶ୍ୱାସନା । ଜନ୍ମଭୂମିର ମୁକ୍ତି-ଆନ୍ଦୋଳନରେ ଝାସଦେବାପାଇଁ ବହୁ ପ୍ରତିଭାର ଆବଶ୍ୟକତା ଥିଲା । ସିଭିଲ୍ ସର୍ଭିସ ପରି ଅତି ଉଚ୍ଚତମ ପଦପଦବୀକୁ ଅଗ୍ରାହ୍ୟ କରି ସେତେବେଳେ କେହି ଜଣେ ମଧ୍ଯ ଜନ-ଆନ୍ଦୋଳନରେ ଯୋଗଦେଉନଥିଲେ । ସୁଭାଷ ଭାବିଲେ, ସେ ଯଦି ଏପରି ଏକ ଲୋଭନୀୟ ପଦବୀକୁ ପରିହାର କରିପାରିବେ, ତାହାହେଲେ ଅନ୍ୟ ଚାକିରିଜୀବୀମାନଙ୍କ ପାଇଁ ଏହା ଏକ ସୁସ୍ଥ ଆଦର୍ଶ ତଥା ପରମ୍ପରା ସୃଷ୍ଟି କରିବ । ଭାରତୀୟମାନଙ୍କର ଚାକିରି ପ୍ରତି ମୋହ ଏବଂ ଆକର୍ଷଣ ଥିବା ପର୍ଯ୍ୟନ୍ତ ବିଦେଶୀ ଶାସନତନ୍ତ୍ର ଠିକ୍ ଭାବରେ ଚାଲିବ, ଯାହାକି ସ୍ୱରାଜ ପାଇଁ ଏକ ଅଲଂଘ୍ୟ ପ୍ରତିବନ୍ଧକ । ଚାକିରିର ପ୍ରଲୋଭନ ଯେତିକି ପ୍ରତିହତ ହେବ, ସ୍ୱରାଜ ସେତିକି ହେବ ନିକଟବର୍ତ୍ତୀ । ତାଙ୍କୁ ଭାରତୀୟ ସିଭିଲ୍ ସର୍ଭିସରୁ ଅବ୍ୟାହତି ନେବାକୁ ହେବ—ଏହା ବିଧି-ନିର୍ଦ୍ଦିଷ୍ଟ । ମାହେନ୍ଦ୍ର ମୁହୂର୍ତ୍ତ ଚାଲିଯାଉଛି; ତା'ର ସଦ୍‌ବିନିଯୋଗ କରିବାକୁ ହେବ ।

ସୁଭାଷ ସିଭିଲ୍ ସର୍ଭିସରୁ ଇସ୍ତଫା ଦେବାପାଇଁ ସିଦ୍ଧାନ୍ତ ନେଲେ । ନିମ୍ନଲିଖିତ ମାନସିକ ପ୍ରବୋଧନା ତାଙ୍କୁ ଏ ସିଦ୍ଧାନ୍ତ ପାଇଁ ପ୍ରେରଣା ଯୋଗାଇଥିଲା :

"ଜାତୀୟ ତଥା ଆଧ୍ୟାତ୍ମିକ ଅଭିଳାଷ ତୁଳନାରେ ସିଭିଲ୍ ସର୍ଭିସ୍‌ର ସାମୟିକ ସୁଯୋଗ ଲୋଭନୀୟ ନୁହେଁ ।"

"ଯଦି ଚିତ୍ତରଞ୍ଜନ ଦାସ ତାଙ୍କର ପରିଣତ ବୟସରେ ସର୍ବସ୍ୱ ତ୍ୟାଗ କରି ଅନିଶ୍ଚିତ ଭବିଷ୍ୟତକୁ ଦେଶସେବାପାଇଁ ବରଣ କରିପାରିଲେ, ତା' ହେଲେ ତାଙ୍କ ପରି ଜଣେ

ଛାତ୍ରମାନ ଯୁବକ, ଯାହା କି ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ କୌଣସି ପ୍ରକାରର ସାଂସାରିକ ବନ୍ଧନ ନାହିଁ, ସେ ଏଥିପାଇଁ ଅଧିକ ସାମର୍ଥ୍ୟ ପ୍ରକାଶ କରିନପାରିବେ କାହିଁକି ?"

"ତ୍ୟାଗର ଜ୍ୱଳନ୍ତ ପ୍ରତିମୂର୍ତ୍ତି ଶ୍ରୀଯୁକ୍ତ ଅରବିନ୍ଦ ଘୋଷ ଦେଶସେବା ପାଇଁ ଯେପରି ଭାବରେ ଉତ୍ସର୍ଗୀକୃତ ଜୀବନଯାପନ କରୁଛନ୍ତି, ସେହିପରି ଏକ ଉତ୍ସର୍ଗର ଉଜ୍ଜ୍ୱଳ ଅଧ୍ୟାୟ ସେ ସୃଷ୍ଟି ନକରିବେ କାହିଁକି ?"

"ଯଦି ପ୍ରତ୍ୟେକ ଭାରତୀୟ ମୁକ୍ତି ଆନ୍ଦୋଳନ ପାଇଁ ନିଜ ଜୀବନର ମୂଲ୍ୟ ଦେଇପାରିବେ; ତା ହେଲେ ଅଚିରେ ସ୍ୱରାଜର ସୂର୍ଯ୍ୟ ଭାରତଭୂମିରେ ଉଦିତ ହେବ; ଏଥିପାଇଁ ପ୍ରତ୍ୟେକ ଭାରତୀୟ ପ୍ରତିଜ୍ଞାବଦ୍ଧ ହେବା ଦରକାର ।"

"ବିଦେଶୀ ସରକାର ସହିତ ଅସହଯୋଗ କରିବାହିଁ ଜାତୀୟ ଆନ୍ଦୋଳନରେ ସହଯୋଗ କରିବାର ପ୍ରକୃଷ୍ଟ ପନ୍ଥା । ଏହାକୁ ବିଳମ୍ବିତ କରିବାର କୌଣସି କାରଣ ନାହିଁ । ଗୋଟିଏ ସରକାରକୁ ସମାଧି ଦେବାକୁ ହେଲେ ତା ସହିତ ପ୍ରତ୍ୟକ୍ଷ ସମ୍ପର୍କକୁ ଛିନ୍ନ କରିବା ଆବଶ୍ୟକ ।"

"ପୃଥିବୀର ଏକ ମହାନ୍ ଜାତି ହିସାବରେ ଆମକୁ ନିଜର ସ୍ୱାତନ୍ତ୍ର୍ୟ ରକ୍ଷାକରିବାକୁ ହେବ । କୌଣସି ଜାତିର ସ୍ୱାତନ୍ତ୍ର୍ୟ କେବଳ ସାଲିସହୀନ ଆଦର୍ଶ ଓ ପରମ୍ପରା ଉପରେ ପ୍ରତିଷ୍ଠା କରିଯାଇପାରେ ।"

ସୁଭାଷ ଇସ୍ତଫା ଦେବା ପଛରେ ବିଶେଷ ଭାବରେ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ କାମ କରିଥିଲା । ଏ ପ୍ରକାର କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ତାଙ୍କର ବହୁ ବନ୍ଧୁ ଓ ଶୁଭେଚ୍ଛୁ ବ୍ୟକ୍ତି ଅନୁରୋଧ କରିଥିଲେ । ଏପରିକି ବହୁ ଉଚ୍ଚପଦସ୍ଥ ଇଂରେଜ ମଧ୍ୟ ନିଜର ଅପକ୍ୱ ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବାକୁ ସୁଭାଷଙ୍କୁ ବାରଣ କରିଥିଲେ । ସେମାନଙ୍କ ମଧ୍ୟରେ ସାର୍ ଉଇଲିଅମ ଡ୍ୟୁକ୍, ମିଃ ରବର୍ଟ ପ୍ରଭୃତି ଅନ୍ୟତମ । ସୁଭାଷ କିନ୍ତୁ ସେମାନଙ୍କୁ ନମ୍ରତାର ସହିତ ଜଣାଇଦେଇଥିଲେ ଯେ ତାଙ୍କର ସିଦ୍ଧାନ୍ତ ଅପରିପକ୍ୱ ନୁହେଁ; ବରଂ ତାହା ସୁଚିନ୍ତିତ ଓ ପୂର୍ଣ୍ଣ ପରିଣତ ଚିନ୍ତାଧାରାର ପରିପ୍ରକାଶ । ସିଭିଲ୍ ସର୍ଭିସ୍ ପରି ଏକ ବୈଚିତ୍ର୍ୟହୀନ ଜୀବନଯାପନ କରିବା ଅପେକ୍ଷା ଉତ୍ତର-ଜୀବନରେ ସାମ୍ବାଦିକତାକୁ ନିଜର ପେଷାରୂପେ ଗ୍ରହଣ କରିବାକୁ ସେ ଇଚ୍ଛାନ୍ତି ।

ସୁଭାଷ ନିଜର ସିଦ୍ଧାନ୍ତରେ ଅଟଳ ଥିଲେ ମଧ୍ୟ ପିତାମାତାଙ୍କର ଇଚ୍ଛା ତଥା ଆଶା ଓ ଅଭିଳାଷ ବିରୁଦ୍ଧରେ କାମ କରିବାକୁ ଯାଇ ସାରା ଜୀବନ ପାଇଁ ଦୁଃଖ-କଷ୍ଟର କଣ୍ଟକିତ ପଥକୁ ବରଣ କରିନେବାର ଅନମନୀୟ ମନୋଭାବ ପରୋକ୍ଷରେ ତାଙ୍କୁ ମାନସିକ ଯନ୍ତ୍ରଣା ଦେଉଥିଲା । ସେ କିନ୍ତୁ ଅନୁଭବ କରୁଥିଲେ, ନିଜର ସିଦ୍ଧାନ୍ତକୁ ରୂପ ଦିଆଯାଇପାରିଲେ ତାହା ଚରମ ଶାନ୍ତିର କାରଣ ହେବ । ପୁତ୍ର ହିସାବରେ ପିତାମାତାଙ୍କୁ ଅସନ୍ତୁଷ୍ଟ କରିବାକୁ ଯାଇ ନୈତିକତା ଦିଗରୁ ସେ କେତେଦୂର ଯୁକ୍ତିଯୁକ୍ତ କାମ କରୁଛନ୍ତି, ତାହାହିଁ ଥିଲା ତାଙ୍କର ଚିନ୍ତାର ବିଷୟ ।

ବୃହତ୍ତର ଜାତୀୟ ସ୍ୱାର୍ଥ ପାଇଁ ସୁଭାଷ ସିଭିଲ୍ ସର୍ଭିସ୍‌ରୁ ଇସ୍ତଫା ଦେଲେ । ଦୀର୍ଘଦିନ-ବ୍ୟାପୀ ଚାଲିଥିବା ମାନସିକ ଦ୍ୱନ୍ଦ୍ୱର ଅବସାଦ ହେଲା । ସେ ଅନୁଭବ କଲେ, ଜନ୍ମଭୂମି ସର୍ବୋପରି; ତାର ସେବା କରିବାକୁ ହେବ । ସେ ସେଥିପାଇଁ ଉତ୍ସର୍ଗୀକୃତ । ତାଙ୍କର ଏ ତ୍ୟାଗ ବିଧି-ନିର୍ଦ୍ଦିଷ୍ଟ ।

ସୁଭାଷ ବାଲ୍ୟ-ଜୀବନରୁ ଥିଲେ ସ୍ୱାଧୀନଚେତା । ଭାରତର ସାଂପ୍ରତିକ ରାଜନୈତିକ ଘଟଣାବଳୀ ସୁଭାଷଙ୍କ ବିପ୍ଳବୀ ମନ ଉପରେ ଗଭୀର ରେଖାପାତ କରିଥିଲା । କାଂବ୍ରିଜରୁ ଆସିବାପରେ ଏହି ଆଦର୍ଶ ଅନୁଷ୍ଠାନ ତାଙ୍କର ମନ-ଆକାଶରେ ନୂତନ ଆଶାର ମେଘଖଣ୍ଡ ସଞ୍ଚାର କଲା । ପ୍ରେରଣାର ମୌସୁମୀରେ ମନମାଟି ରସସିକ୍ତ ହେଲା । ସ୍ୱାଧୀନତାର ମମତାମୟ ମଞ୍ଜିଟି ଯେ ମନ-ଉଦ୍ୟାନରେ ଅଙ୍କୁରିତ ହୋଇଥିଲା, ତାହା କ୍ରମେ ନବକିଶଳୟର ଉଦ୍ଦାମ ଉଦ୍‌ଗମରେ ଉଲ୍ଲସିତ ହୋଇ ଉଠିଲା । ସେ ହେବେ ତା'ର ଉପଭୋକ୍ତା । ଘାତ-ପ୍ରତିଘାତରେ ଊର୍ମିଳ ଜୀବନସିନ୍ଧୁରେ ସେ କର୍ତ୍ତବ୍ୟର ତରଣୀକୁ ବାହିବେ । ସେ ଅନୁଭବ କରିଥିଲେ : "ସଂଘର୍ଷ ନଥିଲେ ଏବଂ ମନୁଷ୍ୟ ଦାୟିତ୍ୱ ତଥା ବିପଦକୁ ଆମନ୍ତ୍ରଣ ନକଲେ ଜୀବନର ସର୍ବୋତ୍ତମ ମାଧୁରୀ ନଷ୍ଟ ହୋଇଯାଏ ।"

( ୫ )

ସେଦିନ ୧୯୨୧ ମସିହା ଜୁଲାଇ ୧୬ ତାରିଖ । ସୁଭାଷ ଭାରତୀୟ ପ୍ରଶାସନିକ ସେବାପଦ ତ୍ୟାଗକରି ଭାରତକୁ ଫେରିଆସିଥାନ୍ତି । ପ୍ରଥମେ ଆସି ପହଞ୍ଚିଥାନ୍ତି ବମ୍ବେରେ । ଜନ୍ମଭୂମିର ଡାକ ତାଙ୍କୁ ପାଗଳ କରିଛି । ତା'ର ମୁକ୍ତି ପାଇଁ ସେ ଜୀବନର ସର୍ବସ୍ୱ ଅର୍ପଣ କରିଛନ୍ତି । ନବଯୌବନର ଉଦ୍ଦାମ ଉଲ୍ଲାସରେ ଉଲ୍ଲସିତ ସୁଭାଷ ଦେଶ ପାଇଁ ସବୁ ଦିଗରୁ ନିଜକୁ ପ୍ରସ୍ତୁତ କରୁଥାନ୍ତି । ଭବିତବ୍ୟ ତାଙ୍କର ଭାଗ୍ୟ ପାଇଁ ଯାହା ରଖିଛି, ସେ ତାକୁ ସାଦରେ ଗ୍ରହଣ କରିବେ । ସେ ଭାଗ୍ୟବାଦୀ ନଥିଲେ; କିନ୍ତୁ ଭାଗ୍ୟ ଉପରେ ତାଙ୍କର ଆସ୍ଥା ଥିଲା ।

ଭାରତରେ ପହଞ୍ଚିଲା ସମୟରେ ରାଜନୈତିକ ଆକାଶରେ ବିଦ୍ରୋହର ନୂତନ ମେଘଖଣ୍ଡ ଭାସମାନ ହେଉଥିବାର ସେ ଦେଖିଲେ । ପ୍ରାୟ ଦେଢ଼ ବର୍ଷ ପୂର୍ବରୁ ନାଗପୁର କଂଗ୍ରେସ ଅଧିବେଶନ ସରିଥାଏ ଓ ତା' ପରେ ପରେ କଂଗ୍ରେସର ଆଦର୍ଶଗତ ଅଭିମୁଖ୍ୟର ମୋଡ଼ ବଦଳିଥାଏ । ମହାତ୍ମା ଗାନ୍ଧୀ ଭାରତୀୟ କଂଗ୍ରେସର ଜୀବନ୍ୟାସ ଦେଇଥାନ୍ତି । ଭାରତୀୟ

ନେତୃବୃନ୍ଦ ଗାନ୍ଧିଜୀଙ୍କର ନେତୃତ୍ୱକୁ ସର୍ବାନ୍ତଃକରଣରେ ଗ୍ରହଣ କରିଥାନ୍ତି । ସେତେବେଳେ 'ଭାରତୀୟ କଂଗ୍ରେସ' କହିଲେ ଗାନ୍ଧୀ ଓ 'ଗାନ୍ଧୀ' କହିଲେ ଭାରତୀୟ କଂଗ୍ରେସକୁ ହିଁ କେବଳ ବୁଝାଉଥିଲା ।

ସୁଭାଷ ବମ୍ବେରେ ପାଦ ଦେଲାକ୍ଷଣି ପ୍ରଥମେ ମହାତ୍ମା ଗାନ୍ଧୀଙ୍କ ପାଖକୁ ଯାଇଥିଲେ । ସେତେବେଳେ ଗାନ୍ଧିଜୀ ଲେବାର୍ଣ୍ଣମ୍ ରୋଡ଼ରେ ରହୁଥିଲେ । ବିଦେଶୀ ଶାସନର ମୁକାବିଲା ପାଇଁ ସେତେବେଳେ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନ କଂଗ୍ରେସ ନୀତିଗତ ଭାବରେ ଗ୍ରହଣ କରିଥିଲା । ତାହା ଥିଲା ଭାରତୀୟମାନଙ୍କ ହାତରେ ବିଦେଶୀ ଶକ୍ତି ସହିତ ସଂଘର୍ଷ କରିବାକୁ ଅହିଂସାରୂପକ ଅସ୍ତ୍ର ।

ସୁଭାଷ ମହାତ୍ମା ଗାନ୍ଧୀଙ୍କର ନୂତନ ମନ୍ତ୍ରରେ ଦୀକ୍ଷିତ ହେବାକୁ ଇଚ୍ଛା କରିଥିଲେ । ଅସହଯୋଗ ଆନ୍ଦୋଳନରେ ଝାସଦେବା ପୂର୍ବରୁ ସେ ମହାତ୍ମା ଗାନ୍ଧୀଙ୍କର ମନୋଭାବ, ଆନ୍ଦୋଳନର ରୂପରେଖ, ଏହାର କାର୍ଯ୍ୟସୂଚୀ ଏବଂ ଗୁରୁତ୍ୱ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବା ପାଇଁ ମହାତ୍ମା ଗାନ୍ଧୀଙ୍କ ସହିତ ଏକ ଦୀର୍ଘ ଆଲୋଚନା କରିଥିଲେ । ତାଙ୍କ ମନ ମଧ୍ୟରେ ଥିବା ବହୁ ଅମୀମାଂସିତ ପ୍ରଶ୍ନ ସେ ଗାନ୍ଧୀଜୀଙ୍କୁ ପଚାରିଥିଲେ । ମହାତ୍ମା ଗାନ୍ଧୀ ଆନ୍ଦୋଳନର ବିଶଦ ବିବରଣୀ ବିଷୟରେ ସୁଭାଷଙ୍କୁ ଅବହିତ କରିଥିଲେ ମଧ୍ୟ ସୁଭାଷ ଏଥିରେ ବିଶେଷ ସନ୍ତୋଷ ପ୍ରକାଶ କରି ପାରିଲେ ନାହିଁ । କେବଳ ଆଇନ୍-ଅମାନ୍ୟ ଓ ଟିକସ-ପ୍ରତ୍ୟାଖାନ ଦ୍ୱାରା ବିଦେଶୀ ସରକାର ଭାରତମାଟିରୁ କିପରି ଅପସରିଯିବ, ସେ କଳ୍ପନା କରିପାରିଲେ ନାହିଁ । ଏ ସମ୍ବନ୍ଧରେ ତାଙ୍କର ମହାତ୍ମା ଗାନ୍ଧୀଙ୍କ ସହିତ ହୃଦୟଖୋଲା ଆଲୋଚନା ହୋଇଥିଲା ।

ଗାନ୍ଧିଜୀ ସୁଭାଷଙ୍କ ମାନସିକ ପ୍ରତିକ୍ରିୟା ଅନୁଭବ କରିପାରିଲେ ଓ କଲିକତା ଫେରିଯାଇ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କୁ ଭେଟିବାକୁ ପରାମର୍ଶ ଦେଲେ । ସେ କଂଗ୍ରେସର ନୂତନ ନୀତି, ତାର ରଚନାତ୍ମକ କାର୍ଯ୍ୟକ୍ରମ ବିଷୟରେ ବିଶଦ ଧାରଣା ଦେଇ-ପାରିବେ ବୋଲି ଆଶା କରିଥିଲେ । ଯୁବକ ସୁଭାଷଙ୍କ ତରଙ୍ଗାୟିତ ମନକୁ ସେ ସମ୍ପୂର୍ଣ୍ଣ ଶାନ୍ତ କରିପାରିଲେ ନାହିଁ । ମହାତ୍ମା ଗାନ୍ଧୀଙ୍କର ନେତୃତ୍ୱକୁ ସୁଭାଷ ମାନିନେଇଥିଲେ ମଧ୍ୟ ସ୍ୱାଧୀନତା ଲାଭ କରିବା ପାଇଁ ତାଙ୍କ ଦ୍ୱାରା ଅନୁଷ୍ଠିତ ଅହିଂସ ଆନ୍ଦୋଳନକୁ ସେ ହୃଦୟର ସହିତ ଗ୍ରହଣ କରିପାରିନଥିଲେ । ଶକ୍ତି ସହିତ ମୁକାବିଲା କରିବା ପାଇଁ ଶକ୍ତିର ଏକାନ୍ତ ଆବଶ୍ୟକ, ଏହା ସେ ମର୍ମେ ମର୍ମେ ଅନୁଭବ କରିଥିଲେ ।

ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରଭାବ ସୁଭାଷଙ୍କ ଉପରେ ଯେ କିଛି ପରିମାଣରେ ପଡ଼ିନଥିଲା, ତା ନୁହେଁ । ଗାନ୍ଧିଜୀଙ୍କର ନେତୃତ୍ୱରେ ପରିଚାଳିତ ଅସହଯୋଗ ଆନ୍ଦୋଳନରେ ଝାସ ଦେବା ପାଇଁ ସେ ଶେଷରେ ନିଷ୍ପତ୍ତି ନେଲେ । ମତ ଓ ପଥର ଭିନ୍ନତା ଥିଲେ ମଧ୍ୟ ସମସ୍ତଙ୍କର ଲକ୍ଷ୍ୟ ସମାନ । ରାଜନୈତିକ ଜୀବନର ପ୍ରାରମ୍ଭରେ ଜଣେ

ବୟୋଜ୍ୟେଷ୍ଠ ନେତାଙ୍କର ନେତୃତ୍ୱକୁ ମାନିନେବା ବିଜ୍ଞତାର କାର୍ଯ୍ୟ ହେବବୋଲି ସୁଭାଷ ଭାବିଲେ । ଉପଯୁକ୍ତ ତାଲିମପାଇଁ ଜଣେ ପ୍ରବୀଣ ଗୁରୁଙ୍କର ଆବଶ୍ୟକତା ଯେ ପ୍ରତି କ୍ଷେତ୍ରରେ ରହିଛି, ସେ ତାହା ମର୍ମେ ମର୍ମେ ଅନୁଭବ କରିଥିଲେ । ସ୍ୱରାଜଲାଭ କରିବାର ଧାରାରେ ଉଭୟ ନେତାଙ୍କର ମୌଳିକ ମତ-ପାର୍ଥକ୍ୟ ଥିଲେ ମଧ୍ୟ ମହାତ୍ମା ଗାନ୍ଧୀଙ୍କର ମାହାତ୍ମ୍ୟକୁ ସେ ଅସ୍ୱୀକାର କରିନଥିଲେ ।

ଚିତ୍ତରଞ୍ଜନ ଥିଲେ ଅକ୍ଷରେ ଅକ୍ଷରେ ଦେଶବନ୍ଧୁ । ତାଙ୍କର ଅସରନ୍ତି ବିଭବଭରା ଓ ବିଭୂତିଭରା ଜୀବନ ମାତୃଭୂମିର ସେବାରେ ନିୟୋଜିତ ହୋଇଥିଲା । ସେ ତ୍ୟାଗପୂତ ଆଦର୍ଶ ଜୀବନ ଯାପନ କରୁଥିଲେ । ସେ ଅନୁଭବ କରୁଥିଲେ ଯେ, ଯୁବଶକ୍ତି ହିଁ ସ୍ୱାଧୀନତାଲାଭର ଆଧାର । ଭାରତର ଯୁବଶକ୍ତିକୁ ଠିକ୍ ଭାବରେ ନିୟନ୍ତ୍ରଣ କରାଯାଇପାରିଲେ ଅଚିରେ ଲକ୍ଷ୍ୟ ହାସଲ ହୋଇପାରିବ । ଯୁବକମାନଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ତଥା ସହାନୁଭୂତି ଥିଲା ।

ସୁଭାଷ, ଚିତ୍ତରଞ୍ଜନଙ୍କର ଦୂରଦୃଷ୍ଟି ଏବଂ ସ୍ୱାଧୀନତା ଆନ୍ଦୋଳନ ଉପରେ ଆଧାରିତ ଦୃଷ୍ଟିଭଙ୍ଗୀରେ ନୂତନ ଆଲୋକର ଆଲେଖ୍ୟ ଦେଖିବାକୁ ପାଇଥିଲେ । କଂଗ୍ରେସରେ ସେ ଯୋଗଦେଇ ରଚନାତ୍ମକ କାର୍ଯ୍ୟଗୁଡ଼ିକୁ ଆଗେଇନେବାପାଇଁ କାର୍ଯ୍ୟସୂଚୀ ଆରମ୍ଭ କରିଦେଲେ ।

ଆଇନ୍ ଅମାନ୍ୟ ଆନ୍ଦୋଳନ, ବିଦେଶୀ ବସ୍ତ୍ର ବର୍ଜନ, ଶିକ୍ଷା ଅନୁଷ୍ଠାନ ତ୍ୟାଗ ପ୍ରଭୃତି ବହୁ ବିରୋଧାତ୍ମକ କାର୍ଯ୍ୟ ମହାତ୍ମା ଗାନ୍ଧୀଙ୍କର ନିର୍ଦ୍ଦେଶରେ ଯେତେବେଳେ ଭାରତରେ ମୁଣ୍ଡ ଟେକିଥାଏ, ସେତେବେଳେ ହଠାତ୍ ଇଂରେଜ ସରକାର ଏକ ଘୋଷଣା-ନାମା ପ୍ରକାଶ କଲେ ଯେ ପ୍ରିନ୍ସ ଅଫ୍ ୱେଲ୍ସ ଭାରତ ପରିଦର୍ଶନରେ ନଭେମ୍ବର ମାସରେ ଆସିବେ । ସୁଭାଷଙ୍କୁ ଏକ ଅପୂର୍ବ ସୁଯୋଗ ମିଳିଗଲା । ଇଂଲଣ୍ଡ ଯୁବରାଜଙ୍କର ଭାରତ-ଗସ୍ତକୁ ଭଣ୍ଡୁର କରିବା ପାଇଁ ସେ ଅସହଯୋଗ ଆନ୍ଦୋଳନକୁ ସକ୍ରିୟ ଭାବରେ କାର୍ଯ୍ୟକାରୀ କରିବାକୁ ଲାଗିପଡ଼ିଲେ । ଏହାହିଁ ଥିଲା କଂଗ୍ରେସ ହାଇକମାଣ୍ଡଙ୍କର ସିଦ୍ଧାନ୍ତ । ଦେଶସାରା ଏଥିପାଇଁ ହରତାଳ ପାଳିତ ହେଲା । କଲିକତାରେ ସଂପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା ।

ବେଙ୍ଗଲ ସରକାର କଂଗ୍ରେସ କର୍ମୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ବେଆଇନ ବୋଲି ଘୋଷଣା କଲେ । ହଜାର ହଜାର ଛାତ୍ର, ଶ୍ରମିକ, ଆଇନଜୀବୀ ଓ ସର୍ବସାଧାରଣ ନିଜକୁ ସ୍ୱେଚ୍ଛାସେବୀ ତାଲିକାଭୁକ୍ତ କଲେ । ସେମାନଙ୍କୁ ଆପତ୍ତିଜନକ ରାଜନୈତିକ କାର୍ଯ୍ୟକଳାପ ପାଇଁ ଆରେଷ୍ଟ କରାଗଲା ! ସହର ଭିତରେ ଥିବା ଦୁଇଟା ପ୍ରକାଣ୍ଡକାୟ କାରାଗାର ରାଜନୈତିକ ବନ୍ଦୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲା । ୧୯୨୧ ମସିହା ଡିସେମ୍ବର ୧୦ ତାରିଖ ଦିନ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଏବଂ ସୁଭାଷଚନ୍ଦ୍ର ବୋଷ

ପ୍ରମୁଖ ବହୁ ଗଣ୍ୟମାନ୍ୟ ନେତା କାରାରୁଦ୍ଧ ହେଲେ । ଏହାହିଁ ହେଉଛି ସୁଭାଷଙ୍କର ପ୍ରଥମ କାରା-ଜୀବନର ଅଭିଜ୍ଞତା । ଅନ୍ୟାୟର ମୂକସାକ୍ଷୀ ହୋଇ ରହିବା ଅପେକ୍ଷା ସମ୍ମାନର ସହିତ କାରାବରଣ କରିବା ବରଂ ଶ୍ରେୟସ୍କର, ଏହି ଅନୁଚିନ୍ତନ ତାଙ୍କୁ ଆନନ୍ଦ ଦେଉଥିଲା । ଜୀବନର ଆଗାମୀ ଦିନଗୁଡ଼ିକ ଯେ ଏଇପରି କଣ୍ଟକର ତଥା ମର୍ଯ୍ୟାଦାପୂର୍ଣ୍ଣ, ସେ ମର୍ମେ ମର୍ମେ ଅନୁଭବ କରୁଥିଲେ । ଶରୀରକୁ ଯନ୍ତ୍ରଣା-ଯଜ୍ଞରେ ଆହୁତି ଦେଇ ଉଦାତ୍ତ କଣ୍ଠରେ ମୁକ୍ତିମନ୍ତ୍ର ଗାନ କରିବାକୁ ହେବ; ନିମଜ୍ଜନ ମୁକ୍ତିର ନିମିତ୍ତ ହେବ—ଏଥିରେ ସନ୍ଦେହର ଅବକାଶ ନାହିଁ ।

ଜଣେ ଉତ୍ସର୍ଗୀକୃତ ବ୍ୟକ୍ତି ପାଇଁ ଦାୟିତ୍ୱର ଦୀର୍ଘତା କେତେ ଅଧିକ, ତାହା ସୁଭାଷଙ୍କ ଜୀବନରୁ ସହଜରେ ଅନୁମାନ କରାଯାଇପାରିବ । ବେଙ୍ଗଲ କଂଗ୍ରେସ ଦ୍ୱାରା ପ୍ରତିଷ୍ଠିତ ଜାତୀୟ ବିଶ୍ୱବିଦ୍ୟାଳୟର ସେ ପ୍ରଧାନ ପୁରୋଧା ଥିଲେ । ବେଙ୍ଗଲ ପ୍ରାଦେଶିକ କମିଟିର ସେ ମଧ୍ୟ ଜଣେ ସକ୍ରିୟ ସଭ୍ୟ ଥିଲେ ଏବଂ ପରେ ତାଙ୍କୁ ଏହାର ପବ୍ଲିସିଟି ଅଫିସର ଭାବରେ ଦାୟିତ୍ୱ ଦିଆଯାଇଥିଲା । ସେ ମଧ୍ୟ ଜାତୀୟ ସ୍ୱେଚ୍ଛାସେବୀ ବାହିନୀର କ୍ୟାପ୍ଟେନ ଥିଲେ ।

ରାଜନୈତିକ ପରିସ୍ଥିତିର ପାଗ ବଦଳିଗଲା । ଆନ୍ଦୋଳନର ଉଗ୍ରତାକୁ କମାଇ-ଦେବାପାଇଁ ତତ୍କାଳୀନ ଭାଇସ୍‌ରୟ ଲର୍ଡ଼ ରିଡିଙ୍ଗ୍ ଏକ କୌଶଳପୂର୍ଣ୍ଣ ଆଭିମୁଖ୍ୟ ଗ୍ରହଣ କଲେ । ୧୯୨୨ ମସିହାରେ ଇଂରେଜ ସରକାର ତଥା କଂଗ୍ରେସ ମଧ୍ୟରେ ଏକପ୍ରକାର ରାଜନୈତିକ ସମାଧାନ ପାଇଁ ସେ ଆହ୍ୱାନ ଦେଲେ । ସେତେବେଳେ ବେଙ୍ଗଲର ପ୍ରଖ୍ୟାତ ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ କାରାଗାର-ଜୀବନ ଯାପନ କରୁଥାନ୍ତି । ସେ ବନ୍ଦି-ଜୀବନ ଯାପନ କରୁଥିଲେ ମଧ୍ୟ ଏକ ଆପୋଷ ସମାଧାନର ସୂତ୍ର ବାହାର କରିବା ପାଇଁ ଯେଉଁ ପରିବେଶ ସୃଷ୍ଟି ହୋଇଛି, ତାକୁ ପସନ୍ଦ କରିଥିଲେ । ବହୁ ବିଚାର-ବିମର୍ଷ ପରେ, ମନର ଅସରନ୍ତି ସଂଘାତ ଓ ସଂଶୟ ଭିତରେ ମହାତ୍ମା ଗାନ୍ଧୀ ଭାଇସ୍‌ରୟଙ୍କ ସହିତ ଆଲୋଚନା କରିବା ପାଇଁ ରାଜି ହୋଇଥିଲେ । ଏହା କିନ୍ତୁ ଫଳପ୍ରଦ ହୋଇପାରିଲା ନାହିଁ । ଭାଇସ୍‌ରୟଙ୍କ ପ୍ରସ୍ତାବ ଭାରତୀୟ ନେତୃବୃନ୍ଦଙ୍କ ଦ୍ୱାରା ବହୁ ବିଳମ୍ବରେ ଗୃହୀତ ହୋଇଥିବାରୁ ସେ ନିଜର ମତ ବଦଳାଇଦେଲେ । ଏ ପରିସ୍ଥିତି ସୁଭାଷଙ୍କ ମନରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନ ଓ କରଛାଡ଼ ଆନ୍ଦୋଳନ ପରିସ୍ଥିତିରେ ଏକ ମୃଦୁ କମ୍ପନ ସୃଷ୍ଟି କରିଥିଲେ ମଧ୍ୟ ସମାଧାନର କୌଣସି ସୂତ୍ର ବାହାର କରାଯାଇ ପାରି ନଥିଲା । ଉତ୍ତରପ୍ରଦେଶର ଚୌରିଚୌରା ଘଟଣାରେ ଏହି ଆନ୍ଦୋଳନର ବିଫଳତା ପ୍ରକାଶ ପାଇଲା ଏବଂ ମହାତ୍ମା ଗାନ୍ଧୀ ଏହାକୁ ବନ୍ଦ କରିଦେଲେ । ମହାତ୍ମା ଗାନ୍ଧୀଙ୍କୁ ଆନ୍ଦୋଳନ ପାଇଁ ଦୁଇବର୍ଷ କାରାଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ଅସହଯୋଗ, ଆଇନ-ଅମାନ୍ୟ, କର-ପ୍ରତ୍ୟାଖାନ ପ୍ରଭୃତି କାର୍ଯ୍ୟ ଯେତେ ଅହିଂସ ଉପାୟରେ କରାଗଲେ ମଧ୍ୟ ସେଥିରେ ହିଂସାର ପ୍ରବଣତା ନିଶ୍ଚିତ ଭାବରେ ଅଧିକ ।

ସାଧାରଣ ଲୋକମାନେ ପ୍ରବଣତାର ପରିପୋଷକ; ଆଦର୍ଶର ପରିପାଳକ ନୁହନ୍ତି । ଚୌରିଚୌରାରେ ଯେଉଁ ପ୍ରକାରର ପୋଡ଼ାଜାଳା, ଭଙ୍ଗାରୁଜା, ହିଂସାକାଣ୍ଡ ସଂଘଟିତ ହେଲା, ତାହା ମହାତ୍ମା ଗାନ୍ଧୀଙ୍କୁ ବିଚଳିତ କରିପକାଇଥିଲା । ଜନମାନସର ଉଦ୍‌ବେଳନ ଓ ଜନପ୍ରତିନିଧିଙ୍କର ଭାବାବେଗ ମଧ୍ୟରେ ସମତା ଯେ ରକ୍ଷାକରାଯାଇ ପାରିଲା ନାହିଁ, ଏ ଘଟଣା ହିଁ ତାର ପ୍ରମାଣ ।

ସୁଭାଷ କାରାଗାରରୁ ଫେରିବା ପରେ ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ଦ୍ୱାରା ଆରମ୍ଭ ହୋଇଥିବା ରିଲିଫ୍ କାମରେ ଯୋଗଦେଇଥିଲେ । ଏ ରିଲିଫ୍ ଉତ୍ତର ବଙ୍ଗଳାର ବନ୍ୟା-ପୀଡ଼ିତ ଲୋକମାନଙ୍କ ସାହାଯ୍ୟ ପାଇଁ ଆରମ୍ଭ ହୋଇଥିଲା । ଗଭୀର ନିଷ୍ଠାର ସହିତ ସେ ଏ କର୍ତ୍ତବ୍ୟ ତୁଲାଇଥିଲେ ।

ସୁଭାଷଙ୍କର ପ୍ରଜ୍ଞାଦୀପ୍ତ ପ୍ରାଣ, କେବଳ ଜନସେବାରୁ ଆନନ୍ଦ ପାଇଲା ନାହିଁ । ସେ ଏହାର ଯଥାର୍ଥ ବିନିଯୋଗ ପାଇଁ ଏକ ବଙ୍ଗଳା ଦୈନିକ ପତ୍ରିକାର ସମ୍ପାଦକ ଦାୟିତ୍ୱ ଗ୍ରହଣ କଲେ । ଏହାର ନାମ ଥିଲା "ବଙ୍ଗଳାର କଥା" । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱରାଜଦଳର ଏହା ଥିଲା ମୁଖପତ୍ର । ପଣ୍ଡିତ ମୋତିଲାଲ ନେହେରୁ ଏହାର ପ୍ରଧାନ ପୃଷ୍ଠପୋଷକ ଥିଲେ । 'ଗୟା କଂଗ୍ରେସ' ଅଧିବେଶନରେ ସ୍ୱରାଜଦଳର ପ୍ରତିଷ୍ଠା ଘୋଷିତ ହୋଇଥିଲା । ପରେ ସୁଭାଷ ହେଲେ ସ୍ୱରାଜଦଳର ସେକ୍ରେଟାରୀ । ଅଳ୍ପଦିନ ପରେ କଲିକତା କର୍ପୋରେସନ ଗଠିତ ହେଲା ଓ ଚିତ୍ତରଞ୍ଜନ ଦାସ ତାହାର ପ୍ରଥମ ମେୟର ରୂପେ ଯୋଗ ଦେଇଥିଲେ । ସୁଭାଷ ପ୍ରଧାନ ଏକଜିକ୍ୟୁଟିଭ ଅଫିସର ଭାବରେ ସେଠାରେ ନିଯୁକ୍ତି ଲାଭ କଲେ । ତାଙ୍କର ନିଷ୍ଠା, କର୍ତ୍ତବ୍ୟାନୁରକ୍ତି, ସୁଷ୍ଠୁ ପରିଚାଳନା ଯେପରି ତାଙ୍କୁ ଯଶସ୍ୱୀ କରିଥିଲା, ସେହିପରି ସେ ଜଣେ ଦକ୍ଷ ପ୍ରକାଶକ ହିସାବରେ ପ୍ରତ୍ୟେକ ବ୍ୟକ୍ତିର ସମ୍ମାନଭାଜନ ହୋଇଥିଲେ । ସେତେବେଳକୁ ତାଙ୍କର ବୟସ ଥିଲା ୨୭ବର୍ଷ । ଉଦ୍ଦାମ ଯୌବନର ଉଚ୍ଛଳ ତରଙ୍ଗରେ ତରଙ୍ଗାୟିତ ଯୁବକଟି ମନରେ କର୍ତ୍ତବ୍ୟର ଉନ୍ମାଦନା । ତିନି ହଜାର ଟଙ୍କା ଦରମା ବଦଳରେ ସେ କେବଳ ମାତ୍ର ଦେଢ଼ ହଜାର ଟଙ୍କା ଗ୍ରହଣ କରିଥିଲେ । ଅଫିସର ଗୁରୁ ଦାୟିତ୍ୱ ଭିତରେ ସାରାଦିନ ତାଙ୍କୁ ବୁଡ଼ିରହିବାକୁ ପଡ଼ୁଥିଲା ।

ସେତେବେଳେ ସ୍ୱରାଜଦଳର ଲୋକପ୍ରିୟତା ଯଥେଷ୍ଟ ଭାବରେ ବଢ଼ିଯାଇଥିଲା । ଏହା ପଛରେ ଥିଲା ସୁଭାଷଙ୍କ ପ୍ରଚ୍ଛନ୍ନ ବ୍ୟକ୍ତିତ୍ୱର କୁହୁକ । ସତେ ଯେପରି ଏକ ଦୀପ୍ତିମାନ୍ ଯୁବକସନ୍ନ୍ୟାସୀ ଦେଶସେବା-ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଜନଜୀବନକୁ ଉଦ୍‌ବୁଦ୍ଧ କରିବାରେ ସିଦ୍ଧିଲାଭ କରିଛନ୍ତି ।

ହଠାତ୍ ଆକାଶର ଶୁଭ୍ର ବୁକୁରେ କଳାମେଘର ଛାୟା ଘୋଟିଗଲା ।

ଏକ ବୈପ୍ଳବିକ ସଂଗଠନର ଷଡ଼ଯନ୍ତ୍ର ଭିତରେ ସୁଭାଷ ଲିପ୍ତଥିବାର ଏକ ମିଥ୍ୟା ମୋକଦ୍ଦମା ବ୍ରିଟିଶ ସରକାର ରୁଜୁ କରିଥିଲେ ଓ ଫଳରେ ତାଙ୍କୁ କାରାବରଣ

କରିବାକୁ ପଡ଼ିଥିଲା । ପ୍ରଥମେ ସେ ବଙ୍ଗଳାର ଜେଲମାନଙ୍କରେ ଥିଲେ ଓ ପରେ ତାଙ୍କୁ ବର୍ମାର ଏକ ଜେଲକୁ ଅଣାଯାଇଥିଲା । ସେତେବେଳେ ବର୍ମା ଇଂରେଜମାନଙ୍କ ଦ୍ୱାରା ଶାସିତ ହେଉଥିଲା ଓ ବର୍ମାର ପ୍ରଶାସନିକ ସମ୍ପର୍କ ଭାରତ ସହିତ ସଂଶ୍ଳିଷ୍ଟ ଥିଲା । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ସେହି ଜେଲରେ ବନ୍ଦୀ ଥିଲେ ଦୀର୍ଘ ଛ'ବର୍ଷ ପାଇଁ । ଲାଲା ଲଜପତ୍ ରାୟ ମଧ୍ୟ ଏକ ବର୍ଷ ପାଇଁ ସେଠାରେ କାରାରୁଦ୍ଧ ହୋଇଥିଲେ । ସେମାନଙ୍କପରି ଭାରତର କୃତୀ ସନ୍ତାନମାନଙ୍କ ଗହଣରେ କାରାରୁଦ୍ଧ ଜୀବନର ସ୍ମୃତି ସୁଭାଷଙ୍କ ମନରେ ଗଭୀର ରେଖାପାତ କଲା । ସେ ସେଠାରେ ପ୍ରାୟ ଅଢ଼େଇବର୍ଷ ରହିବା ପରେ ପୁଣି ବଙ୍ଗଳା ଜେଲକୁ ତାଙ୍କୁ ଅଣାଗଲା । କିନ୍ତୁ ଅଳ୍ପ ଦିନ ପରେ ସ୍ୱାସ୍ଥ୍ୟଗତ କାରଣ ନେଇ ତାଙ୍କୁ ମୁକ୍ତ କରିଦିଆଗଲା ।

ସଂଘର୍ଷ ଥିଲେ ମାହିଁ ।

ସେ ଜେଲରେ ଥିବା ସମୟରେ ବ୍ରିଟିଶ ସରକାରଙ୍କ ମନମୁଖୀ ଶାସନ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେତେବେଳେ ଏକ ଅଭୂତପୂର୍ବ ଘଟଣା ଘଟିଥିଲା । ଇଂରେଜ ଶାସକଗୋଷ୍ଠୀ ଭାରତୀୟମାନଙ୍କର ସାମାଜିକ ସମାବେଶକୁ ଯେତିକି ଭୟ କରୁଥିଲେ, ସେତିକି ସନ୍ଦେହ ମଧ୍ୟ କରୁଥିଲେ । ଏପରିକି ପର୍ବପର୍ବାଣୀରେ ଲୋକସମାଗମକୁ ସେମାନେ ସରକାରଙ୍କ ବିରୁଦ୍ଧରେ ପ୍ରଚ୍ଛନ୍ନ ବିଦ୍ରୋହ ବୋଲି ଭାବୁଥିଲେ । ୧୯୨୭ ମସିହା; ସେ ବର୍ଷ ବଙ୍ଗଳାର ଲୋକପ୍ରିୟ ଦୁର୍ଗାପୂଜା ସରକାରଙ୍କ ତରଫରୁ ବନ୍ଦ କରିଦିଆଯାଇଥାଏ । ଜେଲରେ ଥିବା ସମୟରେ ଏ ସମ୍ବାଦ ସୁଭାଷଙ୍କ ପ୍ରାଣରେ ଗଭୀର ଆଘାତ ଦେଇଥିଲା । ବଙ୍ଗାଳୀମାନଙ୍କର ଏକମାତ୍ର ଉନ୍ମାଦମୟ ଉତ୍ସବକୁ ସରକାର ବନ୍ଦ କରିଦେବାର ଅଧିକାର ନାହିଁ । ସେ ଏହାର ପ୍ରତିବାଦ କରି କାରାଗାର ମଧ୍ୟରେ ୭ ସପ୍ତାହ ପର୍ଯ୍ୟନ୍ତ ଅନଶନ କଲେ । ତାହାହିଁ ହେଲା ତାଙ୍କର ସ୍ୱାସ୍ଥ୍ୟଭଙ୍ଗର କାରଣ । ସେଥିପାଇଁ ସରକାର ତାଙ୍କୁ କାରାମୁକ୍ତ କଲେ ।

୧୯୨୫ ମସିହାରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କର ଆକସ୍ମିକ ଭାବରେ ଦେହାନ୍ତ ହେଲା । କାରାଗାର ଭିତରେ, ତାଙ୍କର ଗୁରୁପ୍ରତିମ ମହାନ୍ ନେତା ଦେଶବନ୍ଧୁଙ୍କ ବିୟୋଗ ସୁଭାଷଙ୍କୁ ବିଚଳିତ କରିପକାଇଥିଲା । ଏ ବିୟୋଗ ଥିଲା ଅତ୍ୟନ୍ତ ମର୍ମାନ୍ତକ । ଦେଶବନ୍ଧୁଙ୍କ ପରି ଏକ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ରାଜନୈତିକ ଆକାଶରୁ ଯେ ଅନ୍ତର୍ହିତ ହୋଇଗଲା, ତାହା ଥିଲା ଭାରତୀୟମାନଙ୍କ ପାଇଁ ଚରମ ଦୁର୍ଭାଗ୍ୟର କାରଣ । ତାଙ୍କଦ୍ୱାରା ପ୍ରତିଷ୍ଠିତ ସ୍ୱରାଜଦଳ ଏ ଦୁର୍ଘଟଣାରେ ଅଧିକ କ୍ଷତିଗ୍ରସ୍ତ ହୋଇଥିଲା । ଏହା ଏକପ୍ରକାର ଅଚଳ ଅବସ୍ଥାର ସମ୍ମୁଖୀନ ହୋଇଥିଲା । ସେତେବେଳକୁ ମହାତ୍ମା ଗାନ୍ଧୀଙ୍କ ମନରେ ପୂର୍ବ ଉଦ୍ଦୀପନାର ପ୍ରଖର ସ୍ରୋତ କ୍ରମେ ଦୁର୍ବଳ ହୋଇ ଆସୁଥାଏ । ସେ ସର୍ବସାଧାରଣ ଜୀବନକ୍ଷେତ୍ରରୁ ପ୍ରାୟ ବିଦାୟ ନେଇଥାନ୍ତି । ଏହିପରି ଏକ ସନ୍ଧିସନ୍ଧ ମୁହୂର୍ତ୍ତରେ ରାଜନୈତିକ ଜୀବନର ନିଥରତା ସ୍ୱରାଜ ଆନ୍ଦୋଳନକୁ ମନ୍ଦୀଭୂତ କରିଥାଏ । ସୁଭାଷଙ୍କ ଅନ୍ତର ନାନା

ଦୃଷ୍ଟିଭଙ୍ଗୀରେ ସ୍ୱତନ୍ତ୍ର; ତଥାପି ସେ ଜଣେ ବିପ୍ଳବୀର ମାନସିକ ଆଭିମୁଖ୍ୟ ନେଇ ଦୁଃସ୍ଥିତିକୁ ପରିସ୍ଥିତିର ପରାଜୟ ବୋଲି ଗ୍ରହଣ କରି ନ ଥିଲେ । କାରାଗାର-ଜୀବନଯାପନ ବେଳେ ଦେଶର ମହାନ୍ ନେତାମାନଙ୍କର ସଂସ୍ପର୍ଶରେ ଆସି, ସେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେବାପାଇଁ ତାଲିମ ପାଉଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସହିତ ସେ ସ୍ୱାଧୀ ସଂଗ୍ରାମର ନାନା ପରିକଳ୍ପନା ତଥା ଯୋଜନା ପ୍ରସ୍ତୁତ କରିଥିଲେ । ତାଙ୍କର ସେଇ ଅତୀତର ଅନୁଭୂତି ବର୍ତ୍ତମାନର ସଙ୍କଟମୟ ପରିସ୍ଥିତିରେ ସହାୟକ ହୋଇଥିଲା ।

କଲିକତାରେ ପହଞ୍ଚିବା ପରେ ସୁଭାଷ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ । ଅନେକ ଦିନ ପରେ ସକ୍ରିୟ ରାଜନୀତିରେ ଯୋଗଦେବାପାଇଁ ଏହା ତାଙ୍କୁ ସୁଯୋଗ ପ୍ରଦାନ କଲା । ଗଭୀର ଆନ୍ତରିକତାର ସହିତ ସେ ଏଥିପାଇଁ ନିଜକୁ ଉତ୍ସର୍ଗ କଲେ ।

ସେତେବେଳେ ଭାରତୀୟ ଜୀବନଧାରାରେ ଅଶାନ୍ତ ପରିବେଶ ସୃଷ୍ଟି ହୋଇଥିଲା । ବ୍ରିଟିଶ ସରକାରଙ୍କ ଦ୍ୱାରା 'ସାଇମନ କମିଟି'ର ନିଯୁକ୍ତି ନେଇ ଲୋକମାନେ ଉତ୍ତେଜିତ ହୋଇଥିଲେ । 'କମିଟି'କୁ ସାଂବିଧାନିକ ସଂସ୍କାରର ପରବର୍ତ୍ତୀ ପର୍ଯ୍ୟାୟ ବିଷୟରେ ପାର୍ଲାମେଣ୍ଟକୁ ଏକ ରିପୋର୍ଟ ଦେବାକୁ କୁହାଯାଇଥିଲା । ଭାରତୀୟମାନେ ଏଥିପାଇଁ କେତେଦୂର ଯୋଗ୍ୟ ତାହା ନିର୍ଦ୍ଧାରଣ କରିବା ଥିଲା ଏହାର ଲକ୍ଷ୍ୟ । ପ୍ରତ୍ୟେକ ରାଜନୈତିକ ବ୍ୟକ୍ତି ବ୍ରିଟିଶ ସରକାରଙ୍କର ଏ ପ୍ରକାର ଆଭିମୁଖ୍ୟକୁ ଭାରତୀୟମାନଙ୍କର ସ୍ୱାର୍ଥ-ବିରୋଧୀ ବୋଲି ଭାବୁଥିଲେ । ଏହା ବିରୁଦ୍ଧରେ ସେମାନଙ୍କର ଆନ୍ଦୋଳନ ତୀବ୍ରତର ହେଲା । ସୁଭାଷ ଏହି ଆନ୍ଦୋଳନର ପ୍ରଧାନ ପୃଷ୍ଠପୋଷକଭାବରେ ଏହାର ପ୍ରତିରୋଧ କରିଥିଲେ ।

ସ୍ୱରାଜ ଆନ୍ଦୋଳନର ଏଇପରି ଏକ ମୁହୂର୍ତ୍ତରେ 'ସର୍ବଭାରତୀୟ ଯୁବ କଂଗ୍ରେସ'ର ସଭାପତି ଭାବରେ ସୁଭାଷ ନିଯୁକ୍ତ ହୋଇଥିଲେ । ୧୯୨୮ ମସିହାରେ କଂଗ୍ରେସ ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ଦୁଇଟି ଗୋଷ୍ଠୀ ମୁଣ୍ଡ ଟେକିଥିଲା : ଦକ୍ଷିଣପନ୍ଥୀ ଓ ବାମପନ୍ଥୀ । ସୁଭାଷ ବୋଷ, ପଣ୍ଡିତ ଜବାହରଲାଲ ନେହେରୁ, ଶ୍ରୀନିବାସ ଆୟାଙ୍ଗାର ପ୍ରଭୃତି ଏକତ୍ର ହୋଇ ବାମପନ୍ଥୀ ଗୋଷ୍ଠୀ ଆରମ୍ଭ କରିଥିଲେ । ଏହି ଦଳ କଂଗ୍ରେସ ଭିତରେ ଥିଲେ ଅଧିକ ଶକ୍ତିଶାଳୀ ଓ ଲୋକମାନଙ୍କର ପ୍ରକୃତ ଆସ୍ଥା-ଭାଜନ । ସେମାନେ ଭାରତୀୟ ସ୍ୱାଧୀନତା ଲିଗ୍ ଆରମ୍ଭ କରିଥିଲେ । ଭାରତର ଏକମାତ୍ର ଦାବୀ 'ସ୍ୱାଧୀନତା' ହାସଲ ପାଇଁ । ସେହି ବର୍ଷ ଶେଷରେ ମାଡ୍ରାସଠାରେ ଯେଉଁ କଂଗ୍ରେସ ଅଧିବେଶନ ବସିଲା; ସେଥିରେ ଏକ ଐତିହାସିକ ସିଦ୍ଧାନ୍ତ ଗ୍ରହଣ କରାଗଲା । ତାହା ଥିଲା 'ସ୍ୱାଧୀନତା ଲାଭ' ହିଁ କଂଗ୍ରେସର ଏକମାତ୍ର ଦାବୀ; ସ୍ୱରାଜ ଆନ୍ଦୋଳନର ଏକମାତ୍ର ଲକ୍ଷ୍ୟ ।

୧୯୨୮ ମସିହା ଡିସେମ୍ବର ମାସରେ କଲିକତା କଂଗ୍ରେସ ଅଧିବେଶନ ଆରମ୍ଭ ହୋଇଥିଲା । ସୁଭାଷ ବଙ୍ଗଳା ସ୍ୱେଚ୍ଛାସେବୀ ଦଳର ସର୍ବୋଚ୍ଚ ଅଫିସର କମାଣ୍ଡିଂ ଭାବରେ

କାମ କରିଥିଲେ । କଂଗ୍ରେସ ଅଧିବେଶନ ମଂଚରେ ଶାନ୍ତିଶୃଙ୍ଖଳା ରକ୍ଷାକରିବା ଓ ଉପସ୍ଥିତ କଂଗ୍ରେସ କର୍ମୀମାନଙ୍କର ସୁବିଧା-ସୁଯୋଗ ପ୍ରତି ଦୃଷ୍ଟି ଦେବା ଏହି ସ୍ୱେଚ୍ଛାସେବୀମାନଙ୍କର କାମ ଥିଲା । ସେମାନେ ଦକ୍ଷତାର ସହିତ ଏସବୁ କାର୍ଯ୍ୟ ସମ୍ପାଦନ କରିଥିଲେ । ଜାତୀୟ ସ୍ୱାଧୀନତା ଆନ୍ଦୋଳନର ଏମାନେ ସଚ୍ଚୋଟ କର୍ମୀ ଭାବରେ ନିଜ ନିଷ୍ଠାର ପରିଚୟ ଦେଇଥିଲେ । ସୁଭାଷ ସେମାନଙ୍କୁ ସ୍ୱତନ୍ତ୍ର ପୋଷାକ ଭିତରେ ସଜ୍ଜିତ କରିଥିଲେ ଓ ସାମରିକ ତାଲିମ ମଧ୍ୟ ତାଙ୍କୁ ଦିଆଯାଇଥିଲା । ଏହା ଥିଲା ଭବିଷ୍ୟତ ପାଇଁ ଏକ ବୈପ୍ଳବିକ ଅନୁଚନ୍ତନର ପୂର୍ବ-ପ୍ରସ୍ତୁତି ।

ଅତି ଅଳ୍ପ ସମୟ ମଧ୍ୟରେ ସୁଭାଷ ସର୍ବଭାରତୀୟ ସ୍ତରରେ ଜଣେ ପ୍ରଭାବଶାଳୀ ନେତା ହିସାବରେ ପ୍ରତିଷ୍ଠିତ ହୋଇପାରିଥିଲେ । ମହାତ୍ମା ଗାନ୍ଧୀଙ୍କ ପରେ ଜବାହରଲାଲ ନେହେରୁ ଓ ତାଙ୍କ ପରେ ସୁଭାଷଙ୍କ ସ୍ଥାନ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସମ୍ମାନ ତାଲିକାରେ ରହିଥିଲା ।

ସୁଭାଷ ସାରା ଦେଶରେ ଚାଲିଥିବା ଯୁବ-ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଓ ସର୍ବଭାରତୀୟ ଯୁବକଂଗ୍ରେସର ସଭାପତି ରୂପେ ସେ ନିର୍ବାଚିତ ହେଲେ । ଜାତୀୟ କଂଗ୍ରେସର ସେବାଦଳର ଅଫିସର କମାଣ୍ଡିଂ ଭାବରେ ପୂର୍ବରୁ ଦାୟିତ୍ୱ ତୁଲାଉଥିଲେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ବହୁମୁଖୀ ଓ ପ୍ରତ୍ୟେକ କ୍ଷେତ୍ରରେ ସେ ନିଜ କାର୍ଯ୍ୟଦକ୍ଷତାର ପ୍ରମାଣ ଦେଇଥିଲେ । ସାରା ଦେଶର ଯୁବଶକ୍ତିକୁ ସ୍ୱାଧୀନତା ଆନ୍ଦୋଳନର ଅଂଶୀଦାର କରିବାପାଇଁ ତାଙ୍କର ପ୍ରଚେଷ୍ଟା ଥିଲା ବ୍ୟାପକତର । ସେ ଅନୁଭବ କରୁଥିଲେ ଯୁବଶକ୍ତିର ଯଥାର୍ଥ ବିନିଯୋଗ କରାଯାଇପାରିଲେ କଂଗ୍ରେସର ମହାନ୍ ଲକ୍ଷ୍ୟ ଅଚିରେ ପୂରଣ ହୋଇ ପାରିବ । ମୌସୁମୀକୁ ବାଦ୍ ଦେଇ ସବୁଜ ସୃଷ୍ଟି-ସମ୍ଭାରର କଳ୍ପନା କରାଯାଇପାରେନା । ଯୁବଶକ୍ତି ପ୍ରତ୍ୟେକ ଦେଶର ଅମୂଲ୍ୟ ସମ୍ପତ୍ତି । ତାର ସଦୁପଯୋଗ ଯେଉଁ ଦେଶ ଯେତେ ସୁଚିନ୍ତିତ ଧାରାରେ କରିପାରିଛି, ସେ ଦେଶ ପରିସ୍ଥିତିର ପ୍ରବାହ ଭିତରୁ ସେତେ ଅଧିକ ସୁଯୋଗ ଆହରଣ କରିଛି ଓ ଯେଉଁ ନେତା ଯୁବଶକ୍ତିକୁ ଯେତେ ଦକ୍ଷତାର ସହିତ ପରିଚାଳନା କରିଛନ୍ତି, ସେ ସେତେ ପ୍ରତିଷ୍ଠିତ ହୋଇଛନ୍ତି । ସୁଭାଷଙ୍କ ଜୀବନରେ ଏ ସତ୍ୟର ପରିପୂର୍ତ୍ତି ଘଟିଥିଲା । ସେ ଥିଲେ ଭାରତୀୟ ଯୁବମାନସର ପ୍ରତିନିଧି ଓ ସ୍ୱାଧୀନତା ଲାଭକରିବାର ସ୍ୱପ୍ନ ହିଁ ତାଙ୍କର ଥିଲା ଆଗ୍ନେୟ ଶପଥ ।

ବେଙ୍ଗଲ ସେବା ଅନୁଷ୍ଠାନ ଭାରତୀୟ ଯୁବଶକ୍ତିର ଥିଲା ଏକ କ୍ଷୁଦ୍ରତମ ଅଂଶବିଶେଷ । ତାହା ଥିଲା ପରିକଳ୍ପିତ ସ୍ୱରାଜଲାଭର ପରୀକ୍ଷାଗାର; ଲକ୍ଷ୍ୟ ପୂରଣପାଇଁ ସୁଚିନ୍ତିତ ଯୋଜନା ଓ କାର୍ଯ୍ୟକ୍ରମର ପ୍ରଚ୍ଛନ୍ନ ପ୍ରୟୋଗଶାଳା । ତାଙ୍କର ସ୍ୱାଧୀନ ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ଏଠାରେ ପ୍ରତିଫଳିତ ହୋଇଥିଲା । ଭବିଷ୍ୟତରେ ସମଗ୍ର ଯୁବଶକ୍ତିକୁ ପ୍ରଭାବିତ କରିବାର ଶକ୍ତି ତା' ମଧ୍ୟରେ ଥିଲା ।

ଗୋଟିଏ ସଫଳତା ଅନ୍ୟ ଏକ ସଫଳତାର ସୋପାନରୂପେ କାର୍ଯ୍ୟ କରେ । ସୁଭାଷ ସର୍ବଭାରତୀୟ ଶ୍ରମିକ କଂଗ୍ରେସର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ତାଙ୍କ ହାତରେ ରହିଲା ସାରା ଦେଶର ଶ୍ରମିକଶକ୍ତି । ଯୁବଶକ୍ତିର ନେତୃତ୍ୱ ପୂର୍ବରୁ ତ ମିଳିଥିଲା; ପରିବର୍ତ୍ତିତ ପରିସ୍ଥିତିରେ ଶ୍ରମିକଶକ୍ତିର ପୁନର୍ଗଠନଭାର ତାଙ୍କ ପରି ଜଣେ ନିଷ୍ଠାବାନ୍ ଦକ୍ଷ ବ୍ୟକ୍ତିର ହାତକୁ ଆସିଲା । ବର୍ତ୍ତମାନ ଜାତୀୟ କଂଗ୍ରେସର ନେତାମାନଙ୍କ ମଧ୍ୟରେ ତାଙ୍କ ସ୍ଥାନ ମହାତ୍ମା ଗାନ୍ଧୀଙ୍କ ପଛକୁ ଚାଲିଆସିଲା । ସେ ବ୍ୟକ୍ତି ଭିତରେ ଏକ ଅନୁଷ୍ଠାନରେ ପରିଣତ ହେଲେ । ସମସ୍ତଙ୍କର ଦୃଷ୍ଟି ତାଙ୍କ ଉପରେ ପୁଞ୍ଜିଭୂତ ହେଲା । ବର୍ତ୍ତମାନ ସେ ହୋଇଗଲେ ଭାରତୀୟ ଲୋକଶକ୍ତିର ଉତ୍ସ । ୧୯୩୧ ମସିହା ପର୍ଯ୍ୟନ୍ତ ପ୍ରାୟ ତିନିବର୍ଷ ସୁଭାଷ ଏହି ପଦବୀରେ ରହିଲେ ।

ପ୍ରଥମ ଅବସ୍ଥାରେ ରାଜନୀତି କ୍ଷେତ୍ରରେ ସୁଭାଷଙ୍କର ଅପରିପକ୍ୱତା ତାଙ୍କୁ ସ୍ୱାଧୀନ ଭାବରେ କିଛି କାମ କରିବାକୁ ଆତ୍ମପ୍ରତ୍ୟୟ ସୃଷ୍ଟି କରି ପାରିନଥିଲା । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କୁ ପରିପକ୍ୱତା ଦେଇଥିଲା ଓ ସେ ତାଙ୍କୁ ଏ ଦିଗରେ ପଥପ୍ରଦର୍ଶକ ହିସାବରେ ଗ୍ରହଣ କରିଥିଲେ । ସେ ଚାଲିଯିବାପରେ ସୁଭାଷ କିଛିମାତ୍ରାରେ ଶୂନ୍ୟତା ଅନୁଭବ କରିଥିଲେ; କିନ୍ତୁ ଯେତେବେଳେ ଜନମାନସରେ ତାଙ୍କର ଭାବମୂର୍ତ୍ତି ଦିନକୁ ଦିନ ଉଜ୍ଜ୍ୱଳତର ହେଲା ଓ ଜନତା ତାଙ୍କୁ ନୂତନ ଦାୟିତ୍ୱ ତୁଲାଇବାର ସୁଯୋଗ ଦେଲେ, ସେତେବେଳେ ସେ ନିଜର ବ୍ୟକ୍ତିଗତ ସାମର୍ଥ୍ୟ ଉପରେ ସଚେତନ ହେଲେ । ଆତ୍ମପ୍ରତ୍ୟୟ ଓ ମନୋବଳ ନେଇ ଏକା ସେ ନିଜର ଗନ୍ତବ୍ୟପଥରେ ଆଗେଇଗଲେ । ପୂର୍ବେ ଭାବପ୍ରବଣତା ଭିତରେ ସେ ସତର୍କ ନଥିଲେ, ବିଗ୍ଭର-ବିଭ୍ରାଟ ଯେ ସାଙ୍ଘାତିକ ପରିସ୍ଥିତି ସୃଷ୍ଟି କରିବ, ଏ ଦିଗରେ ସେ ବିଶେଷ ଭାବରେ ଅବହିତ ଥିଲେ ।

ଯୁବସଂଗଠନର ଦାୟିତ୍ୱ ତୁଲାଇବା ସମୟରେ ଭାରତୀୟ ଯୁବଶକ୍ତିର ସଂଗ୍ଭଳକ ହିସାବରେ ସେ ବୈପ୍ଳବିକ ଚିନ୍ତାଧାରା ଯୁବମାନସରେ ପ୍ରତିଫଳନ କରିଥିଲେ । ସର୍ବଭାରତୀୟ ଯୁବସଂଗଠନର ତୃତୀୟ ଅଧିବେଶନର କଥା । ୧୯୨୮ ମସିହା ଡିସେମ୍ବର ମାସ ୨୫ ତାରିଖ । ସେ ଯୁବକମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେବାକୁଯାଇ କହିଥିଲେ, "ଭାରତରେ ଯୁବକମାନଙ୍କର ସମସ୍ୟା ସ୍ୱତନ୍ତ୍ର ଏବଂ ଜାତୀୟ ଜୀବନରେ ଏହାର ପ୍ରାଧାନ୍ୟ ଯଥେଷ୍ଟ ଭାବରେ ରହିଛି । ଆଜିର କଂଗ୍ରେସ ଯୁବକମାନଙ୍କର ସେ ସବୁ ସମସ୍ୟାକୁ ଅନୁଧ୍ୟାନ କରି ଏକ ନୂତନ ଦିଗ୍‌ଦର୍ଶନ ଦେଇପାରିବ ଓ ଦେଶର ସାଂପ୍ରତିକ ପରିସ୍ଥିତିର ସମାଧାନ ଦିଗରେ ନିଶ୍ଚୟ ଆଲୋକପାତ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

"ବିଶ୍ୱ-ସମସ୍ୟାବଳୀ ଉପରେ ଆଜି ଯଦି ଦୃଷ୍ଟି ପକାଇବା, ତାହାହେଲେ ଆମେ ଜାଣି ପାରିବା ଯେ ଯୁବ-ଆନ୍ଦୋଳନ ଏକ ଲୋଭନୀୟ ବାକ୍ୟ-ବିନ୍ୟାସ ନୁହେଁ; ଏହା ସତ୍ୟତା ତଥା ବାସ୍ତବତା ଉପରେ ସଂପୂର୍ଣ୍ଣରୂପେ ଆଧାରିତ । କେତେ ଜଣ ଯୁବକଯୁବତୀ ମିଶି ଯେକୌଣସି ଗୋଟିଏ ଅନୁଷ୍ଠାନ ଗଢ଼ିଦେଲେ ତାହାକୁ ଯୁବସମ୍ମିଳନ ବୋଲି କୁହାଯାଇ

ପାରିବନାହିଁ । ପ୍ରଚଳିତ ପରିସ୍ଥିତି ଓ ବ୍ୟବସ୍ଥା ଉପରେ ଅସନ୍ତୋଷ ମନୋଭାବ ପ୍ରକାଶ କରି ଏହାର ଆମୂଳ ପରିବର୍ତ୍ତନ ପାଇଁ ଏକ ଉନ୍ନତ ବ୍ୟବସ୍ଥା କରିବାର ପ୍ରଚେଷ୍ଟା ହେଉଛି ଯୁବ-ଆନ୍ଦୋଳନ । ଏହାକୁ ସଂସ୍କାରମୂଳକ କାର୍ଯ୍ୟ ବୋଲି କହିଲେ ଭୁଲ ହେବ; ଏହା ହେଉଛି ଏକାନ୍ତ ଭାବରେ ବୈପ୍ଳବିକ । ବିପ୍ଳବର ଅର୍ଥ, ବର୍ତ୍ତମାନର ପ୍ରଚଳନକୁ ପ୍ରତ୍ୟାଖ୍ୟାନ କରି ଆଗାମୀ ପାଇଁ ଏକ ଉନ୍ନତ ବିଧିବିଧାନକୁ ଯେକୌଣସି ଉପାୟରେ ହେଉନା କାହିଁକି, ପ୍ରତିଷ୍ଠିତ କରିବାର ଧାରା । ଉନ୍ନତ ଦୃଷ୍ଟିଭଙ୍ଗୀ ଏହାର ପ୍ରାଣସତ୍ତା । ଅନାଦି ଯୁଗରୁ ମଣିଷ ଏହି ଉନ୍ନତ ଦୃଷ୍ଟିକୋଣ ନେଇ ସର୍ବଦା ଉତ୍ସାହିତ ହୋଇଛି ଏବଂ ସମାଜର ପୁନର୍ଗଠନ ଦିଗରେ ଅନୁପ୍ରେରିତ ହୋଇଛି । ସାରା ବିଶ୍ୱରେ ଯେଉଁଠାରେ ଯୁବ-ଆନ୍ଦୋଳନ ମୁଣ୍ଡଟେକିଛି, ସବୁ କ୍ଷେତ୍ରରେ ସେହି ଭାବପ୍ରବଣତା ଓ ଲକ୍ଷ୍ୟ । ଯେତେବେଳେ ବୟସ୍କମାନଙ୍କର ନେତୃତ୍ୱ ବିଫଳ ହୁଏ, ସେତେବେଳେ ଯୁବଶକ୍ତି ଲକ୍ଷ୍ୟ ପୂରଣ ପାଇଁ ଆଗେଇଆସେ ।

"ଯୁବ-ଆନ୍ଦୋଳନ ଏକ ବିପ୍ଳବ । ପରିସ୍ଥିତିର ଉତ୍କଟତା ଭିତରୁ ଏହାର ସୃଷ୍ଟି ।

"ଭାରତୀୟ ଯୁବଶକ୍ତି, ପୁରାତନ ନେତୃବୃନ୍ଦଙ୍କ ହାତରେ ସମସ୍ତ ଦାୟିତ୍ୱ ଅର୍ପଣକରିଦେଇ ସେମାନଙ୍କଦ୍ୱାରା ମୂକ ପଶୁପରି ପରିଚାଳିତ ହେବାକୁ ପସନ୍ଦ କରେନାହିଁ । ଏକ ନୂତନ ଭାରତ ଗଠନ ଦିଗରେ ତାର ନିର୍ଦ୍ଦିଷ୍ଟ ଭୂମିକା ରହିଛି । ସେ ସ୍ୱପ୍ନର ଭାରତ ହେବ ସବୁ ଦିଗରୁ ମୁକ୍ତ, ଶକ୍ତିଶାଳୀ ଏବଂ ମହାନ୍ ତଥା ବିରାଟ । ସେମାନେ ଆସନ୍ନ ଦାୟିତ୍ୱକୁ ନିଜ ହାତକୁ ନେଇଛନ୍ତି । ତାହା ତୁଲାଇବାକୁ ଯାଇ ଯେକୌଣସି ପରିସ୍ଥିତିର ମୁକାବିଲା ପାଇଁ ସେମାନେ ପ୍ରସ୍ତୁତ । ଫଳାଫଳ ଯାହା ହେଉନା କାହିଁକି, ସେଥିପାଇଁ ସେମାନଙ୍କର ଭ୍ରୂକ୍ଷେପ ନାହିଁ । ଏହି ବିରାଟ ଜାତୀୟ କର୍ତ୍ତବ୍ୟକୁ ସଂପାଦନ କରିବାପାଇଁ ସେମାନେ ବର୍ତ୍ତମାନ ନିଜକୁ ପ୍ରସ୍ତୁତ କରୁଛନ୍ତି । ପ୍ରତ୍ୟେକ ଦେଶପ୍ରେମୀ ବ୍ୟକ୍ତି ଏହି ଆନ୍ଦୋଳନ ଉପରେ ଅନ୍ତର୍ଦୃଷ୍ଟି ନିକ୍ଷେପ କରି ତାହାକୁ ସୁଚିନ୍ତିତ ଭାବରେ ସମାଲୋଚନା କରିବାର ସମୟ ଆସିଛି । ଦୋଷ-ଦୁର୍ବଳତା, ତ୍ରୁଟିବିଚ୍ୟୁତି, ଅସଫଳତା ଠିକ୍ ଭାବରେ ଦେଖାଇ ଦିଆଯାଇପାରିଲେ ଏହି ଆନ୍ଦୋଳନ ଏକ ଅନୁକୂଳ ରୂପ ନେଇପାରିବ ।

"ବର୍ତ୍ତମାନ 'ସ୍ୱରାଜ' ଲାଭ ପାଇଁ ଯେଉଁ ଆନ୍ଦୋଳନ ଚାଲିଛି ତାହା ବିଭିନ୍ନ ଚିନ୍ତାଧାରା, ଦାର୍ଶନିକ ଦୃଷ୍ଟିଭଙ୍ଗୀ, ଆଦର୍ଶ ଓ ନୀତି ଦ୍ୱାରା ପ୍ରଭାବିତ । ଏସବୁ ପ୍ରଭାବର ଯୁକ୍ତିଯୁକ୍ତ ସମୀକ୍ଷା ଏକାନ୍ତ ଆବଶ୍ୟକ । ତା' କରାନଗଲେ ବହୁ ପରସ୍ପରବିରୋଧୀ ଶକ୍ତିର ଆକର୍ଷଣ-ବିକର୍ଷଣ, ଆଲୋଡ଼ନ-ବିଲୋଡ଼ନ ଭିତରେ ଆନ୍ଦୋଳନର ଗତିଧାରା ବ୍ୟାହତ ହେବ । ଆଜିର ପରିବର୍ତ୍ତିତ ନୂତନ ପରିସ୍ଥିତିର ମୁକାବିଲା ପାଇଁ ନୂତନ କର୍ମ-କୌଶଳ ଅବଲମ୍ବନ କରାନଗଲେ ପୁରାତନ ପଦ୍ଧତି ଓ ଚିନ୍ତାଧାରା ସଫଳତା ଦେଇପାରିବନାହିଁ । ଏଥିପାଇଁ ଚିନ୍ତା ଓ କାର୍ଯ୍ୟରେ ଆମେ ନୂତନ ଆଭିମୁଖ୍ୟ ଗ୍ରହଣ କରିବାର ଆବଶ୍ୟକତା ରହିଛି ।

"ଭାରତ ସାଧୁ-ସନ୍ଥମାନଙ୍କର ଦେଶ । ଯୁଗେଯୁଗେ ସେମାନେ ସମାଜରେ ସର୍ବୋଚ୍ଚ ସ୍ଥାନ ପାଇଆସିଛନ୍ତି ଓ ପାଇବେ ମଧ୍ୟ; କିନ୍ତୁ ସେମାନଙ୍କ ନେତୃତ୍ୱରେ ନୂତନ ଭାରତ ଗଠନ କରାଯାଇ ପାରିବନାହିଁ । ଏହା ସେମାନଙ୍କ ପ୍ରତି ଅସମ୍ମାନସୂଚକ ମନ୍ତବ୍ୟ ନୁହେଁ । ସେମାନଙ୍କର ଆତ୍ମବାଦ, ମାନବବାଦ, ଈଶ୍ୱରବାଦ, କଠୋର ନୀତିନିଷ୍ଠା, ଏକମୁଖୀ ଆଦର୍ଶ ଓ ପରମ୍ପରା ରାଜନୈତିକ ସମସ୍ୟାକୁ ସମାଧାନ କରିବା ଦିଗରେ ଅସମର୍ଥ । ଆଧୁନିକତାରୁ ଉଦ୍ଭବ ସମସ୍ୟାବଳୀ ଆଧୁନିକତାର ଆଭିମୁଖ୍ୟ ନେଇ ସମାଧାନ କରିବାକୁ ହେବ ।"

ଏ ଭାଷଣ ଥିଲା ଅଗ୍ନିମୟୀ; ଗତାନୁଗତିକତାଠାରୁ ସବୁ ଦିଗରେ ଭିନ୍ନ । ଏହା ମଧ୍ୟରେ ତାଙ୍କର ଅନ୍ତରର ବୈପ୍ଳବିକ ଭାବବୋଧ ପ୍ରକାଶିତ ହୋଇଥିଲା । ଯାହା ସେ ଆନ୍ତରିକତାର ସହିତ ସ୍ୱାଧୀନ ଭାବରେ ଚିନ୍ତା କରୁଥିଲେ, ତାହାହିଁ ସେ ପ୍ରକାଶ କରୁଥିଲେ ।

ଲାହୋରଠାରେ ୧୯୨୯ ମସିହା ଅକ୍ଟୋବର ୧୯ ତାରିଖରେ ସେ ଛାତ୍ର-ସମାବେଶରେ ଯେଉଁ ଭାଷଣ ଦେଇଥିଲେ ତାହା ମଧ୍ୟ ଅନୁଧ୍ୟାନଯୋଗ୍ୟ । ପରାଧୀନ ଭାରତର ଛାତ୍ରଗଣ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ସେ ଉତ୍ସାହିତ କରିଥିଲେ । ତାଙ୍କର ଧାରଣା—ସ୍ୱାଧୀନତା ସର୍ବୋପରି ଓ ସର୍ବୋତ୍ତମ ।

ସେ ଭାଷଣ ପ୍ରସଙ୍ଗରେ କହିଥିଲେ, "ଆମେ ଆସ୍ତେ ସ୍ୱାଧୀନତାର ପୂର୍ଣ୍ଣ ପ୍ରକୃତି ଆଡ଼କୁ ଅଗ୍ରସର ହେଉଛୁ । ନବପ୍ରଭାତର ନବୀନ ଆଲୋକ ଆମଠାରୁ ବହୁ ଦୂର ନୁହେଁ । ଆମର ଅସରନ୍ତି ଦୁଃଖ-ଯନ୍ତ୍ରଣା ନିକଟରେ ନିଶ୍ଚୟ ଅବସାନ ହେବ । ଆମର ଦୁଃଖ-ପାତ୍ର ପୂର୍ଣ୍ଣ ହୋଇଆସିଲାଣି । ଆମର ବିଦେଶୀ ଶାସକବୃନ୍ଦ ବର୍ତ୍ତମାନ ଅନୁଭବ କଲେଣି ଯେ ସେମାନଙ୍କ ହାତରୁ କ୍ଷମତାର ଲଗାମ ଆସ୍ତେ ଖସି ଖସି ଯାଉଛି । ସେମାନେ ଏ ନୂତନ ପରିସ୍ଥିତିରେ ଅଧିକ ପ୍ରତିକ୍ରିୟାଶୀଳ ହୋଇଉଠିବା ସ୍ୱାଭାବିକ ।

"ବର୍ତ୍ତମାନ ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ବଙ୍ଗ ଓ ପଞ୍ଜାବ ଅଧିକ ଦୁର୍ଦ୍ଦଶାଗ୍ରସ୍ତ । ଏଠାରେ ଅଧିକ ଭାବରେ ଦମନମୂଳକ କାର୍ଯ୍ୟ ଚାଲିଛି । ଏହା ନିଶ୍ଚୟ ଅଭିନନ୍ଦନୀୟ । ଆମେ ଯେ ସ୍ୱାଧୀନତା ହାସଲ କରିବା ପାଇଁ ଯୋଗ୍ୟତା ବୃଦ୍ଧି କରୁଛୁ, ତାହା ଅସ୍ୱୀକାର କରାଯାଇପାରିବ ନାହିଁ । ଭଗତ ସିଂ ଏବଂ ବଟୁକେଶ୍ୱର ଦତ୍ତଙ୍କ ପରି ବୀରମାନଙ୍କର ବୀରତ୍ୱକୁ ଦମନ କରାଯାଇ ନପାରେ । ମୋର ମନେହୁଏ—ଦମନ, ଯନ୍ତ୍ରଣା, ଦୁଃଖ ଓ ନିର୍ଯ୍ୟାତନା ହିଁ ବୀର ସୃଷ୍ଟି କରିବାର ଏକମାତ୍ର ଉପାୟ; ସତେ ଯେପରି ଏହା ବୀରତ୍ୱର ଜନ୍ମଦାତ୍ରୀ । ସାଧନାପଥରେ ଯାତନା ଆସିବହିଁ ଆସିବ; ଆମେ ତା'ର ପୂର୍ଣ୍ଣ ସ୍ୱାଗତ କରିବା ଉଚିତ । ଯେ ଯେତେ ଯାତନାର ଅଗ୍ନିରେ ଦଗ୍ଧୀଭୂତ, ସେ ସେତେ ଶୁଦ୍ଧ ସୁବର୍ଣ୍ଣତ୍ୱ ଲାଭ କରିବାକୁ ସମର୍ଥ ।

"ଆମ ଦେଶର ବହୁ ଚିନ୍ତାଶୀଳ ବ୍ୟକ୍ତି ତାଙ୍କର ରକ୍ଷଣଶୀଳ ମନୋଭାବ ନେଇ କହନ୍ତି ଯେ, ଶାସିତମାନଙ୍କ କ୍ଷେତ୍ରରେ ରାଜନୀତିର କିଛି ଅର୍ଥ ନାହିଁ; ବିଶେଷତଃ ଛାତ୍ରମାନେ

ରାଜନୀତିରେ ଭାଗ ନେବାର ଆବଶ୍ୟକତା କିଛି ନାହିଁ । କିନ୍ତୁ ମନେ ରଖିବାକୁ ହେବ, ପ୍ରତ୍ୟେକ ପରାଧୀନ ଦେଶରେ ଯେତେ ସମସ୍ୟା ସୃଷ୍ଟି ହୁଏ ପ୍ରାୟ ସବୁର ମୂଳରେ ହିଁ ଥାଏ ରାଜନୈତିକ ପରିସ୍ଥିତି । ରାଜନୀତିକୁ ଜୀବନଠାରୁ ଅଲଗା କରାଯାଇ ପାରିବନାହିଁ କିମ୍ବା ଶିକ୍ଷାଠାରୁ ମଧ୍ୟ ବିଚ୍ଛିନ୍ନ କରାଯାଇ ନପାରେ । ଏହା ଏ ଉଭୟଙ୍କ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ରାଜନୀତିରେ ଭାଗ ନେବାପାଇଁ ଛାତ୍ରମାନଙ୍କୁ ବାରଣ କରିବାର ଆଦୌ ଆବଶ୍ୟକତା ନାହିଁ ।

“ଛାତ୍ରମାନଙ୍କୁ ରାଜନୀତିରେ ଅଂଶ ଗ୍ରହଣ କରିବା ପାଇଁ ଉତ୍ସାହିତ କରାଯାଇପାରେ । ସେମାନେ ସୁଯୋଗ ପାଇଲେ ତାଙ୍କର ଭିତରୁ ରାଜନୀତିଜ୍ଞ ତଥା ରାଜନୈତିକ ଚିନ୍ତାଶୀଳ ବ୍ୟକ୍ତି ମୁଣ୍ଡ ଟେକିବେ । ରାଜନୀତିରେ ଶୂନ୍ୟତା ସୃଷ୍ଟି ହେବନାହିଁ କିମ୍ବା ରାଜନୈତିକ ଜୀବନରେ ଅଭାବବୋଧ ଅନୁଭୂତ ହେବନାହିଁ । ଆଜିଠାରୁ ଯଦି ଛାତ୍ର ତଥା ଯୁବକମାନଙ୍କୁ ତାଲିମ ଦିଆଯିବ ନାହିଁ, ତେବେ ଭାବୀ ନେତୃବୃନ୍ଦ ସୃଷ୍ଟି କରାଯିବ କିପରି ? ଭାରତର ରାଜନୀତି ପାଇଁ ବାହାର ଲୋକଙ୍କୁ ତ ସ୍ୱାଗତ କରାଯାଇ ପାରିବନାହିଁ । ମଣିଷପଣିଆ ତଥା ଚାରିତ୍ରିକ ବିକାଶପାଇଁ ରାଜନୀତିରେ ଅଂଶ ଗ୍ରହଣ କରିବାର ଆବଶ୍ୟକତା ରହିଛି । ସାମାଜିକ, ରାଜନୈତିକ ତଥା କଳାତ୍ମକ କିମ୍ବା ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ଚରିତ୍ରର ବିକାଶ ହୋଇପାରିବ, ଏଥିରେ ସନ୍ଦେହ ନାହିଁ—ତେବେ ଏଥିପାଇଁ ସୁସ୍ଥ ପରିବେଶ ଆବଶ୍ୟକ ।

“ଆଜି ସର୍ବଭାରତୀୟ ସ୍ତରରେ ଏକ ଛାତ୍ର-ଆନ୍ଦୋଳନର ଆବଶ୍ୟକତା ରହିଛି । ଏହା ଭବିଷ୍ୟତରେ ଜାତୀୟ ଯୁବ-ଆନ୍ଦୋଳନର ଭୂମିକା ଗ୍ରହଣ କରିବ । ପୂର୍ବ ଅପେକ୍ଷା ଆଜିର ଯୁବ ଆନ୍ଦୋଳନ ପଛରେ ଯୁବମାନସର ଅସ୍ଥିରତା, ଆବେଗ ଓ ବୈପ୍ଳବିକ ଅନୁଚିନ୍ତନ ଭରିରହିଛି । ସେମାନେ ବୟସ୍କ ବ୍ୟକ୍ତିମାନଙ୍କ ଉପରେ ସବୁ ଦାୟିତ୍ୱ ଲଦି ଦେଇ ନିଜେ ନିରାଳମ୍ବ ହୋଇ ରହିବାକୁ ପସନ୍ଦ କରନ୍ତି ନାହିଁ । ସେମାନଙ୍କର ଦାୟିତ୍ୱବୋଧ ଉପସ୍ଥିତ କ୍ଷେତ୍ରରେ ନୂତନ ଦାୟିତ୍ୱ ବହନ କରିବାକୁ ସୁଯୋଗ ଦେଇଥାଏ । ସେମାନେ ଅନୁଭବ କରନ୍ତି, ଦେଶର ଭାବୀ ଦାୟିତ୍ୱ ଯୁବକମାନଙ୍କ ଉପରେ ଅଧିକ ଭାବରେ ନିର୍ଭର କରେ । ଭବିଷ୍ୟତ ପାଇଁ ଆଜିଠାରୁ ନିଜକୁ ପ୍ରସ୍ତୁତ କରିବାର ସୁଯୋଗ ହରାଇବାକୁ ସେମାନେ ଚାହାନ୍ତି ନାହିଁ । ଛାତ୍ର-ଆନ୍ଦୋଳନ ହେଉଛି ଯୁବ-ଆନ୍ଦୋଳନର ପ୍ରଭାତିକ ପ୍ରକାଶ ।

“ପ୍ରତ୍ୟେକ ଛାତ୍ରର ସୁନ୍ଦର ଓ ସୁଗଠିତ ସ୍ୱାସ୍ଥ୍ୟ, ବଳିଷ୍ଠ ଚରିତ୍ର, ତଥ୍ୟାଶ୍ରୟୀ ମନ ଓ ଉନ୍ନତ ଧାରଣା ରହିବା ଉଚିତ । ନିଜର ଲକ୍ଷ୍ୟପଥରେ ଆଗେଇଯିବା ପାଇଁ ଏହା ସାହାଯ୍ୟ କରିବ । ଅନ୍ୟ କେହି ତମ କାମକୁ ପସନ୍ଦ କରିବ ନକରିବ, ଅନୁମୋଦନ ଦେବ ନଦେବ, ତାହା ସଂପୂର୍ଣ୍ଣ ଭାବରେ ଅଲଗା କଥା; ସେଥିପାଇଁ ବିହ୍ୱଳ କିମ୍ବା ବିବ୍ରତ ହେବାର ପ୍ରାୟ କିଛି ନାହିଁ । ମନେ ରଖିବାକୁ ହେବ ଜୀବନ ତମର; ତାର ସମୃଦ୍ଧି ପାଇଁ

ଦାୟିତ୍ୱ ବହନ କରିବାହିଁ ତମର ବ୍ୟକ୍ତିଗତ ବ୍ୟାପାର—ଅନ୍ୟର ଏଥିରେ କିଛି ହାତ ନାହିଁ ।

"ଭବିଷ୍ୟତ ପାଇଁ ଉପଯୁକ୍ତ ନାଗରିକ ଗଢ଼ିବା ହେଉଛି ଛାତ୍ର-ଆନ୍ଦୋଳନର ପ୍ରଧାନ ଆଭିମୁଖ୍ୟ । ଏଥିପାଇଁ ଶିକ୍ଷାର୍ଥୀମାନଙ୍କୁ ଶାରୀରିକ, ମାନସିକ ତଥା ବୌଦ୍ଧିକ ଦିଗରେ ତାଲିମ କରିବାର ଆବଶ୍ୟକତା ରହିଛି । ଏପରି ଏକ ଆଦର୍ଶ ସମାଜର ଚିତ୍ର ଆମକୁ ଛାତ୍ରମାନଙ୍କ ଅନ୍ତର୍ଦୃଷ୍ଟିରେ ଚିତ୍ରିତ କରିବାକୁ ହେବ; ଯାହାକି ସେମାନେ ନିଜର ଜୀବନ-କାଳ ମଧ୍ୟରେ ଲାଭକରିବାର ସୁଯୋଗ ପାଇବେ । କଳ୍ପନାରେ ବାସ୍ତବତାର ଆଭିମୁଖ୍ୟ ନଥିଲେ, କଳ୍ପନା କଳ୍ପନାରେ ହିଁ ରହିଯାଏ । ଏହା ଅଧିକ ଭାବରେ ବାସ୍ତବଧର୍ମୀ ହେବା ଆବଶ୍ୟକ ।

"ଫୋନେସିଆ ତଥା ବାବିଲୋନିଆ ସଭ୍ୟତା ପରି ପୃଥିବୀରେ ଅନେକ ସଭ୍ୟତା ମୁଣ୍ଡଟେକି, ନିଜର ପ୍ରଭାବରେ ସାରା ବିଶ୍ୱକୁ ଚମକିତ କରି ପୁଣି କାଳଅନ୍ଧାର ଭିତରେ ନିଜର ଅସ୍ତିତ୍ୱ ଲୁଚାଇ ଦେଇଛନ୍ତି । ଅନେକ ସଭ୍ୟତା ପୃଥିବୀବକ୍ଷରେ ନିଜର ପଦାଙ୍କ ଅଙ୍କନ କରି ପୁଣି ପ୍ରତ୍ୟାବର୍ତ୍ତନ କରିଛି । ଭାରତୀୟ ସଭ୍ୟତା କେଉଁ ଅନ୍ଧକାର-ଯୁଗରୁ ଆରମ୍ଭ ହୋଇ ଏପର୍ଯ୍ୟନ୍ତ ବହୁ ବିପର୍ଯ୍ୟୟ ମଧ୍ୟରେ ତିଷ୍ଠି ରହିଛି । ତାକୁ ବଂଚାଇ ରଖିବାକୁ ହେଲେ ଆମ୍ଭମାନଙ୍କୁ ଏକ ନୂତନ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବାକୁ ହେବ; ଚିନ୍ତାଧାରାରେ ବିପ୍ଳବ ସୃଷ୍ଟି କରିବାକୁ ହେବ । ମନେରଖିବାକୁ ହେବ, ସୃଜନଶୀଳତା ହିଁ ଜୀବନର ପ୍ରାଣ; ଧର୍ମ ମଧ୍ୟ ।

"ଆମେ ଯେଉଁ 'ସ୍ୱାଧୀନତା' ପାଇଁ ସଂଗ୍ରାମ ଚଳାଇଛେ, ତାହା ଅନେକାଂଶରେ ରାଜନୈତିକ ବ୍ୟଞ୍ଜନା ଭିତରେ ଅଟକିଯାଇଛି । ଅନେକଙ୍କ ଚିନ୍ତାଧାରା ବୋଧହୁଏ ଖୁବ୍ ସଙ୍କୁଚିତ । ସେମାନେ କେବଳ ରାଜନୈତିକ ସ୍ୱାଧୀନତା କଥା ଭାବୁଛନ୍ତି । 'ସ୍ୱାଧୀନତା'ର ଅର୍ଥ କିନ୍ତୁ ତାହା ନୁହେଁ । ସ୍ୱାଧୀନତାର ଅର୍ଥ ସବୁ ଦିଗରୁ ସ୍ୱାଧୀନତା । ବ୍ୟକ୍ତି-ସ୍ୱାଧୀନତା, ସାମାଜିକ ସ୍ୱାଧୀନତା, ଧନୀ, ଦରିଦ୍ର, ପୁରୁଷ, ସ୍ତ୍ରୀ, ଶ୍ରେଣୀ-ସମ୍ପ୍ରଦାୟ ଏ ପ୍ରତ୍ୟେକର ସ୍ୱାଧୀନତା ସହିତ ରାଜନୈତିକ ସ୍ୱାଧୀନତା ଆମର କାମ୍ୟ । ଆମର ଅଭିଳଷିତ ସ୍ୱାଧୀନତା ଏ ସମସ୍ତ ସ୍ୱାଧୀନତାର ସମବାୟ ପ୍ରକାଶ । ଏଥିରୁ କୌଣସି ଗୋଟିକର ଅଭାବରେ ସ୍ୱାଧୀନତାର ପୂର୍ଣ୍ଣରୂପ ପ୍ରକାଶିତ ହେବ ନାହିଁ । ରାଜନୈତିକ ପରାଧୀନତାରୁ ରକ୍ଷା ଆମର ଏକମାତ୍ର କାମ୍ୟ ନୁହେଁ; ତା ସହିତ ସମ୍ପତ୍ତିର ସମବଣ୍ଟନ, ଜାତିଗତ ପ୍ରଥାର ବିଲୋପ, ସାମାଜିକ ବୈଷମ୍ୟ, ସାଂପ୍ରଦାୟିକତାର ଧ୍ୱଂସ ଓ ପ୍ରତ୍ୟେକ ଧର୍ମ ପ୍ରତି ସମ୍ମାନ ଆମ 'ସ୍ୱାଧୀନତା'ର ପର୍ଯ୍ୟାୟଭୁକ୍ତ ।

"ସ୍ୱାଧୀନତା ପାଇବା ପାଇଁ ମଣିଷ ଚାହିଁଲେ ତାହା ପାଇପାରିବ ନାହିଁ । ଏଥିପାଇଁ ନିଜକୁ ଯୋଗ୍ୟ କରିବାକୁ ହେବ । ଆମେ ଯଦି ସ୍ୱାଧୀନତା ପ୍ରକୃତରେ ଚାହୁଁ ତା'ହେଲେ ଆମେ ଆନ୍ତରିକତାର ସହିତ ସେ ବିଷୟରେ ଚିନ୍ତାକରିବା ଆବଶ୍ୟକ; ନିଜକୁ ଜଣେ

ସ୍ୱାଧୀନ ବ୍ୟକ୍ତି ଭାବରେ ଅନୁଭବ କରିବା ଦରକାର । ଅନ୍ତର୍ନିହିତ ଭାବବୋଧର ବୈପ୍ଳବିକ ବିନ୍ୟାସ ଅପରିହାର୍ଯ୍ୟ । ସ୍ୱାଧୀନତାର ସୁରାପାନରେ ପ୍ରମତ୍ତ ହେଲେ ଆମେ ନଷ୍ଟସ୍ୱ ସ୍ୱାଧୀନତା ଲାଭ କରିପାରିବା ଏବଂ ମାନବସମାଜକୁ ଦାସତ୍ୱ କବଳରୁ ରକ୍ଷାକରିବା ଦିଗରେ ସମର୍ଥ ହେବା ।

"ଯେକୌଣସି ପ୍ରକାରର ବନ୍ଧନ ଓ ଦାସତ୍ୱରୁ ଜୀବନକୁ ମୁକ୍ତ କରିବାହିଁ ଏହାର ଏକମାତ୍ର ଲକ୍ଷ୍ୟ । ସ୍ୱାଧୀନତା ଲାଭ ପାଇଁ ଆମର ବ୍ୟାକୁଳତା ହିଁ ଜୀବନ-ସଙ୍ଗୀତ । ନବଜାତ ଶିଶୁର କ୍ରନ୍ଦନ ହେଉଛି ବନ୍ଧନର ବିପକ୍ଷରେ ଅମୃତ-ସନ୍ତାନର ବିଦ୍ରୋହ । ପରାଧୀନତା ବିରୁଦ୍ଧରେ ବିଦ୍ରୋହ କରିବା ଜୀବନର ସନାତନ ଧର୍ମ । ସ୍ୱାଧୀନତା ଲାଭପାଇଁ ଦେଶବାସୀ ତଥା ନିଜ ଭିତରେ ଏକାନ୍ତ ବ୍ୟାକୁଳତା ସୃଷ୍ଟି କରାଯାଇପାରିଲେ ଭାରତ ଅଚିରେ ସ୍ୱାଧୀନତା ହାସଲ କରିପାରିବ, ଏଥିରେ ଦ୍ୱିମତ ନାହିଁ ।

"ଆମେ ସମଚିନ୍ତକମାନଙ୍କୁ ନେଇ ସ୍ୱାଧୀନତା-ସଂଗ୍ରାମୀ ଗଠନ କରିବା । ଦରକାର ପଡ଼ିଲେ ସେମାନେ ପ୍ରାଣ ବିନିମୟରେ ସ୍ୱାଧୀନତା ସଂଗ୍ରାମରେ ଝାସଦେବେ । ସ୍ୱାଧୀନତାର ପବିତ୍ର ବାର୍ତ୍ତା ପ୍ରତ୍ୟେକଙ୍କ ପାଖରେ ପହଞ୍ଚାଇଦେବା ପାଇଁ ତାଙ୍କର ଭିତରୁ ଦଳେ ଆଗେଇଯିବେ । ଛାତ୍ରସମାଜ ହିଁ ଏ ଗୁରୁଦାୟିତ୍ୱ ତୁଲାଇବ ।

"ଏକ ମହାନ୍ କର୍ତ୍ତବ୍ୟର ସମ୍ପାଦନ ପାଇଁ ମଣିଷକୁ ଏ ବିଶ୍ୱ-ଭୁବନକୁ ଆସିବାକୁ ପଡ଼ିଥାଏ । ଏ ସଂସାରକୁ ଏକ ମହାନ୍ ବାର୍ତ୍ତା ଦେବାପାଇଁ ଆମେ ଅନୁପ୍ରେରିତ । ସୂର୍ଯ୍ୟଙ୍କର ଆଲୋକାସ୍ୱନ, ପ୍ରସ୍ଫୁଟିତ ପୁଷ୍ପର ଅମୃତାସ୍ୱନ, ତଟିନୀର ସମୁଦ୍ର ପାଇଁ ଜଳସମ୍ଭାରର ସମର୍ପଣ ପରି ଆମେ କୌଣସି ଏକ ସତ୍ୟର ପ୍ରଖ୍ୟାପନ ପାଇଁ ଏ ଜୀବନ ତଥା ଯୌବନର ଉଚ୍ଛଳ ସମ୍ଭାର ନେଇ ପୃଥିବୀକୁ ଆସିଛୁ ।

"ଯୌବନ ଚିର-ଆନନ୍ଦର ପ୍ରକାଶ । ଆମେ ଯୁବକ; ପ୍ରତ୍ୟେକଙ୍କ ଭିତରେ ଆନନ୍ଦ-କଣିକା ବିତରଣ କରିବା ଆମର କର୍ତ୍ତବ୍ୟ । ଆମେ ଆନନ୍ଦର ପ୍ରତୀକ; ଆମେ ନିଜେ ହସିବୁ ଓ ବିଶ୍ୱ-ବ୍ରହ୍ମାଣ୍ଡକୁ ହସାଇବୁ । ଆମେ ହେଉଛୁ ଆଲୋକର ଉତ୍ସ । ଯେଉଁଠାରେ ଆମର ଦୃଷ୍ଟିର ଆଲୋକ ପ୍ରତିଫଳିତ ହେବ, ସେଠାରେ ଥିବା ଘନାନ୍ଧକାର ଦୂରେଇଯିବ; ଦୁଃଖ, ଯନ୍ତ୍ରଣା, ଶୋକ, ସନ୍ତାପ ଦୂରୀଭୂତ ହେବ ।

"ଯୁବକ ହେଉଛି ଆଶା, ଆକାଙ୍‌କ୍ଷା, ଆଗ୍ରହ, ସାହସ ତଥା ତ୍ୟାଗର ପ୍ରତିମୂର୍ତ୍ତି । ସେ ସତ୍ୟ, ସୌନ୍ଦର୍ଯ୍ୟ ତଥା ମଙ୍ଗଳ ବିଧାନର ପରିପୂର୍ତ୍ତି ପାଇଁ ଅଭିପ୍ରେତ । ତାର କର୍ତ୍ତବ୍ୟ, ତ୍ୟାଗ ତଥା ସେବାର ସମାପ୍ତି ନାହିଁ । ଜୀବନକୁ ଯେତିକି ଉତ୍ସର୍ଗ କରାଯାଇପାରିବ, ଜୀବନସ୍ରୋତ ସେତିକି ହେବ ଅବାରିତ ଭାବରେ ପ୍ରବହମାନ । ଆମର ବହୁତ କଥା କହିବାକୁ ଅଛି, ବହୁତ କାମ କରିବାକୁ ଅଛି; ଏ ଜୀବନ ସେଥିପାଇଁ ଯଥେଷ୍ଟ । ଆମର ଜୀବନପାତ୍ର ଆଶା ତଥା ଆନନ୍ଦରେ ଭରପୂର । ଆମେ ଯୁବକ । ଆନନ୍ଦର ଜୟଯାତ୍ରାରେ ଆମେ ଅଗ୍ରଗାମୀ, ତାହାକୁ କେହି ପ୍ରତିହତ କରିପାରିବେ ନାହିଁ ।

"ଆମେ ଯୁବକ । ଆମର ଏକ ସ୍ୱତନ୍ତ୍ର ଧର୍ମ ଅଛି । ଆମେ ଅନ୍ୟ କୌଣସି ଧର୍ମଦ୍ୱାରା ପ୍ରଭାବିତ ନୋହୁଁ । ଯାହା ଚିରନୂତନ, ଯାହା ଅଜ୍ଞାତ ଓ ଯାହା ସୌନ୍ଦର୍ଯ୍ୟମୟ, ଆମେ ହେଉଛୁ ତାର ଉପାସକ । ଆମେ ଶାନ୍ତ ଭିତରେ ଅନନ୍ତକୁ ଆବିଷ୍କାର କରୁ, ଯାହା ପୁରାତନ ତା ଭିତରେ ନୂତନତ୍ୱ ଭରିଦେଉ, ଯାହା ଜରାଜୀର୍ଣ୍ଣ ତାକୁ ଜୀବନ୍ୟାସ ଦେଇ ଯାହା ଜୀବନହୀନ ତା ଭିତରେ ଜୀବନ-ସଞ୍ଚାର କରୁ । ଆମେ ଅନିଶ୍ଚିତ ଭବିଷ୍ୟତ ପ୍ରତି ବିମୁଖ କିମ୍ବା ବିତୃଷ୍ଣ ନୋହୁଁ; ଅନିଶ୍ଚିତତାହିଁ ଆମର ନିଶ୍ଚିତତାର ପରିପୋଷକ ।

"ସଙ୍କୀର୍ଣ୍ଣତା ଓ ଅନ୍ଧବିଶ୍ୱାସ ମୁକ୍ତିପଥର ପ୍ରକୃତ ପ୍ରତିବନ୍ଧକ । ମୁକ୍ତିପଥର ସୈନିକଗଣ ଅବାଧରେ ଏ ପଥରେ ଅଭିଯାନ ଚଳାଇବା ପାଇଁ ଆମେ ତାକୁ ପରିଷ୍କାର କରିବାକୁ ଚାହୁଁ । ସମସ୍ତ ବାଧାବନ୍ଧନର ମୂଳୋତ୍ପାଟନ କରିବା ଆମର ଇଚ୍ଛା ।

"ମନୁଷ୍ୟ-ଜୀବନ ହେଉଛି ଏକ ମହାନ୍ ସତ୍ୟ । ମୁକ୍ତି ହିଁ ତାର ମହାମନ୍ତ୍ର । ଯୁବକର ସୁପ୍ତ ପ୍ରାଣ ଥରେ ଜାଗ୍ରତ ହେଲେ ତା ଜୀବନର ପ୍ରତ୍ୟେକ ସ୍ତରରେ ଆଲୋକର ସନ୍ଧାନ ପାଇପାରିବ । ବନ୍ଧୁଗଣ ! ଉତ୍ଥିତ ହୁଅ, ଜାଗ୍ରତ ହୁଅ; ନିରୀକ୍ଷଣ କର—ପୂର୍ବାଶାରେ ନବ ପ୍ରଭାତର ନବୀନ ଦ୍ୟୁତି ପ୍ରତିଭାତ ହେଲାଣି; ନୂତନ ଦିବସ ଆମ୍ଭମାନଙ୍କର ଅତି ନିକଟବର୍ତ୍ତୀ ।"

( ୬ )

ସୁଭାଷ ବୋଷ ସର୍ବଭାରତୀୟ ଶ୍ରମିକ କଂଗ୍ରେସର ସଭାପତି ରୂପେ ୧୯୩୧ ମସିହା ପର୍ଯ୍ୟନ୍ତ ଦାୟିତ୍ୱ ତୁଲାଇଥିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ପୁରୋଭାଗରେ ସେ ଏକ ଅଜେୟ ଶକ୍ତିପୁଞ୍ଜ ଭାବରେ ଅଧିଷ୍ଠିତ ହେଲେ । ଜାତୀୟ ସ୍ତରରେ ଛାତ୍ର, ଶ୍ରମିକ ତଥା ଯୁବକମାନଙ୍କୁ ସଂଗଠିତ କରି ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ଥିଲା ତାଙ୍କର ଅନାହତ ଉଦ୍ୟମ । ସାରା ଦେଶରେ ବାମପନ୍ଥୀ ଭାବଧାରା ଖେଳାଇଦେବା ଥିଲା ତାଙ୍କର ଲକ୍ଷ୍ୟ । ତାଙ୍କର ବୈପ୍ଳବିକ ଚିନ୍ତାଧାରା ଏବଂ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଅଭିଯାନ ପାଇଁ ତାଙ୍କୁ ବହୁବାର କାରାବରଣ କରିବାକୁ ପଡ଼ିଥିଲା ।

ସେଦିନ ଥିଲା ଜୁଲାଇ ଚାରି ତାରିଖ । ୧୯୩୧ ମସିହା କଲିକତାରେ ସର୍ବଭାରତୀୟ ଟ୍ରେଡ ୟୁନିଅନ କଂଗ୍ରେସ ଅଧିବେଶନ ଆରମ୍ଭ ହେଲା । ସୁଭାଷ ବୋଷ ତାର ସଭାପତି । ଅଭିଭାଷଣ ପ୍ରସଙ୍ଗରେ ସେ ଅଗ୍ନିମୟୀ ଭାଷାରେ ଯେଉଁ ଉଦ୍‌ବୋଧନା ଦେଶବାସୀଙ୍କୁ

ଦେଇଥିଲେ, ତାହା ଅନୁଧ୍ୟାନଯୋଗ୍ୟ । ତାଙ୍କର ସେହି ମର୍ମବାଣୀର ମହତ୍ତ୍ୱ ପ୍ରକାଶ ନିମ୍ନରେ ପ୍ରଦତ୍ତ ହେଲା :

"ସାଧାରଣତଃ ଆମ୍ଭମାନଙ୍କର ଧାରଣା ଯେ ଗତ ଦେଢ଼ବର୍ଷ ଭିତରେ ଶ୍ରମିକ-ଆନ୍ଦୋଳନର ଶକ୍ତି ଓ ସାମର୍ଥ୍ୟ ବଢ଼ିଛି । ମୋର କିନ୍ତୁ ମନେହୁଏ, ଏହି ସମୟ ମଧ୍ୟରେ ଆନ୍ଦୋଳନର ଧାରା କିଛି ଅଂଶରେ ବ୍ୟାହତ ହୋଇଛି । ଏଥିପାଇଁ ଅନେକ ପରିସ୍ଥିତି ଦାୟୀ । ତେବେ ଅସହଯୋଗ ଆନ୍ଦୋଳନ ଥିଲା ଅଧିକ ଉନ୍ମାଦନାମୟ ଓ ସେଥିପ୍ରତି ସମସ୍ତଙ୍କର ଆକର୍ଷଣୀ ଥିଲା ଅଧିକ ।

"ଶ୍ରମିକ-ଆନ୍ଦୋଳନକୁ ସକ୍ରିୟ କରିବା ଦିଗରେ ବହୁ ଘାତ-ପ୍ରତିଘାତର ସମ୍ମୁଖୀନ ହେବାକୁ ପଡ଼ୁଛି । ଅନେକ ସମସ୍ୟା ସୃଷ୍ଟି ହେଉଛି; କିନ୍ତୁ ତାର ସମାଧାନ ଦିଗରେ ସର୍ବଦା ଚେଷ୍ଟା ଅବ୍ୟାହତ ରହିଛି । ବିଭିନ୍ନ ଦଳ ମଧ୍ୟରେ ଏକତା ରକ୍ଷା କରିବା ସବୁଠାରୁ ବଡ଼ ଦାୟିତ୍ୱ । ସବୁବେଳେ 'ମତ' ନେଇ 'ପଥ' ସୃଷ୍ଟି ହୋଇଥାଏ । ପଥ ନେଇ ବିଭାଜନର ଆରମ୍ଭ ଓ ବିଭାଜନ ହିଁ ବିଭେଦର ଗ୍ରନ୍ଥିକୁ ନିବିଡ଼ କରେ ।

"ପ୍ରଥମ କଥା, ଆମେ ଦେଶବିଦେଶର ଶ୍ରମିକ-ସଂସ୍ଥା ସହିତ ନିଜକୁ ସାମିଲ କରିବା କି ନାହିଁ ଓ ଅନ୍ତର୍ଜାତିକ ଶ୍ରମିକ ସଂଗଠନ ସହିତ ଆମର କି ପ୍ରକାର ସମ୍ପର୍କ ରହିବ, ତାହା ଚିନ୍ତା କରିବାକୁ ପଡ଼ିବ । ମୋର କିନ୍ତୁ ଦୃଢ଼ ଧାରଣା, ଆମେ କାହାର ମର୍ଜିର କ୍ରୀଡ଼ନକ ହେବାକୁ ବସିଯିବା ଉଚିତ ନୁହେଁ । ସମ୍ପର୍କର ବଳୟ ଯେତିକି ବିସ୍ତୃତ ହେବ, ତାହା ସେତିକି ମଙ୍ଗଳପ୍ରଦ; କିନ୍ତୁ ସମ୍ପର୍କର ଅର୍ଥ ଅନ୍ଧାନୁସରଣ କିମ୍ବା ନିଜତ୍ୱର ଜଳାଞ୍ଜଳି ନୁହେଁ ।

"ସମସ୍ତଙ୍କ ସହିତ ସୁସମ୍ପର୍କ ରଖି ତାଙ୍କର ଅନୁଭୂତିରୁ ଶିକ୍ଷା କରିବାର ଯଥେଷ୍ଟ କିଛି ରହିଛି । ଅନ୍ୟର ସାହାଯ୍ୟ-ସହଯୋଗ ପାଇବା ପାଇଁ ଏବଂ ଅନ୍ୟକୁ ତାହା ଦେବାପାଇଁ ସର୍ବଦା ପ୍ରସ୍ତୁତ ହେବାକୁ ହେବ । ଆମେ କିନ୍ତୁ ପୃଥିବୀର କୌଣସି ଦେଶର କୌଣସି ସଂଗଠନର ଅଙ୍ଗୁଳି ନିର୍ଦ୍ଦେଶ ମାନିନେବାକୁ ପ୍ରସ୍ତୁତ ନୋହୁଁ । କାହାର ଶରଣାପନ୍ନ ହୋଇ କାର୍ଯ୍ୟ କରିବାକୁ ଆମେ ଚାହୁଁ ନାହିଁ । ଭାରତର ନିଜସ୍ୱ ଚିନ୍ତାଧାରା ରହିଛି । ସେ ତା ନିଜ ପଦ୍ଧତିରେ କର୍ତ୍ତବ୍ୟ କରିବ; ତା ନିଜ ଆବଶ୍ୟକତାକୁ ଚାହିଁ ସେ ତାର କର୍ମପନ୍ଥା ନିରୂପଣ କରିବ । ଆମ ଶ୍ରମିକ ସଂଗଠନର ଆଦର୍ଶ ଅନ୍ୟ କୌଣସି ସଂଗଠନର ଅବିକଳ ଅନୁରୂପ ନୁହେଁ ।

"ଆମ ଦେଶର ଶ୍ରମିକ ସଙ୍ଗଠନ ଏକାଧିକ । ସେମାନଙ୍କର ଆତ୍ମିକ ସଂହତି ଉପରେ ଶ୍ରମିକ କଂଗ୍ରେସର ସ୍ଥିତି ନିର୍ଭର କରେ । ଶ୍ରମିକ କଂଗ୍ରେସକୁ ଅନେକ ଦଳର ଏକ ସମ୍ମିଳନୀ ବୋଲି ବିଚାରିବା ଠିକ୍ ହେବନି; ଏହା ବହୁ ଦଳର ସମ୍ମିଳିତ ଗୋଟିଏ ଏକକ ଅନୁଷ୍ଠାନ । ସଂହତି ହିଁ ଏହାର ପ୍ରାଣ । ବିଭିନ୍ନ ମତର ପ୍ରଖ୍ୟାପକ ଭାବରେ ଆମେ ଯଦି ନିଜ

ନିଜ ଭିତରେ ସର୍ବଦା କଳହ କରୁଥିଲୁ, ତେବେ ପ୍ରତିଷ୍ଠା ତ ମିଳିବ ନାହିଁ, ପରାକାଷ୍ଠା ବି ପ୍ରକାଶିତ ହେବ ନାହିଁ; କିନ୍ତୁ ଆତ୍ମ-ପ୍ରତାରଣା ହିଁ ସାର ହେବ । ପ୍ରତାରଣା ଏବଂ ପ୍ରତିଷ୍ଠା ସମତାଳରେ ଚାଲିପାରନ୍ତି ନାହିଁ । ଭିତରେ ଅସୁମାର କଳହ ଓ ମନାନ୍ତରର ବୀଜ ବିକ୍ଷେପ କରି, ବାହାରେ ଲୋକଦେଖାଣିଆ ଏକତାର ଏକତାନ ସୃଷ୍ଟି କରିବାରେ ସଂହତି ରକ୍ଷା କରାଯାଇପାରେନା । ଏଥିପାଇଁ ଆବଶ୍ୟକ ଆତ୍ମାର ମିଳନ । ବାହ୍ୟ ବିଭେଦ ଆତ୍ମାକୁ ସ୍ପର୍ଶ କରେ ନାହିଁ ।

"ଶ୍ରମିକ କଂଗ୍ରେସ ଗତବର୍ଷ ଆଇନ-ଅମାନ୍ୟ ଆନ୍ଦୋଳନକୁ ଗ୍ରହଣ କରିଥିଲେ ମଧ୍ୟ ବିଶେଷ କିଛି ଅବଦାନ ଦେଇପାରିନାହିଁ । ଆଗକୁ ଯେଉଁ ଆନ୍ଦୋଳନ ହେବାପାଇଁ ଆମେ ସ୍ଥିର କରିଛୁ, ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିବାର ସୁଯୋଗ ଆମ ପାଖରେ ଅଛି । ଏଇ ମୁହୂର୍ତ୍ତରୁ ଆମେ ସେ ଦିଗରେ କାମ କରିବା ପାଇଁ ପ୍ରସ୍ତୁତ ହେବା ଆବଶ୍ୟକ ।

"ଆମ ଦେଶର ଲୋକମାନେ ବର୍ତ୍ତମାନ ଗୋଲଟେବୁଲ ବୈଠକର ଫଳାଫଳ ପାଇଁ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି । ବ୍ରିଟିଶ ସରକାରଙ୍କର ସାଂପ୍ରତିକ ମନୋବୃତ୍ତି ଦୃଷ୍ଟିରୁ କିଛି ଯେ ସୁଫଳ ଏ ବୈଠକରୁ ମିଳିବ, ତାହା ଆଶା କରିବା ଏକ ବିଡ଼ମ୍ବନା ମାତ୍ର । ଭାରତୀୟ ଜନମାନସର ପ୍ରତିକ୍ରିୟା ପ୍ରତି ସମ୍ମାନ ପ୍ରଦର୍ଶନ କରିବାର ମନୋଭାବ ବିଦେଶୀ ସରକାରର ନାହିଁ । ଆମର ଲୋକପ୍ରିୟ ଦାବୀ ଓ ଦୃଷ୍ଟିଭଙ୍ଗୀକୁ ସେମାନଙ୍କର ହୃଦ୍‌ବୋଧ କରାଇବା ପାଇଁ ଏ ବୈଠକର ପରିସର ସେତେ ବ୍ୟାପକ ନୁହେଁ । ଫଳାଫଳକୁ ଆମେ ଯେ ଉଦ୍‌ଗ୍ରୀବ ହୋଇ ରହିଛୁ, ଏ ମାନସିକ ମୁହୂର୍ତ୍ତକୁ ଉପେକ୍ଷା କରାଯାଇ ନପାରେ ।

"ନାଗପୁର କଂଗ୍ରେସ ଅଧିବେଶନରେ 'ହ୍ୱାଇଟଲ୍ କମିସନ୍'ଙ୍କ ରିପୋର୍ଟକୁ ଅଗ୍ରାହ୍ୟ କରିବା ପାଇଁ ସ୍ଥିର କରାଯାଇଛି; ମୁଁ ମଧ୍ୟ ଏ ଦିଗରେ ମୋର ଅନୁକୂଳ ମତାମତ ଦେଇଛି । କିନ୍ତୁ ମନେରଖିବାକୁ ହେବ, ଯେକୌଣସି କମିଶନ ରିପୋର୍ଟ ଏକ ଦଲିଲ ଓ ଏହାକୁ ସଂପୂର୍ଣ୍ଣ ଭାବରେ ଉପେକ୍ଷା କରାଯାଇ ନପାରେ । କେତେ ଭଲକଥା ବା ମନ୍ଦକଥା ତା ଭିତରେ ଲିପିବଦ୍ଧ ହୋଇଛି, ତାହାହିଁ ତାର ମାପକାଠି ନୁହେଁ—ଏହା କି ଫଳାଫଳ ଦେଇଛି, ତାହାହିଁ ଦେଖିବାର କଥା । ଅତୀତରେ ଆମେ ବହୁ କମିଶନଙ୍କ ରିପୋର୍ଟର ସୁଫଳକୁ ଅପେକ୍ଷା କରିଛୁ; କିନ୍ତୁ ଏପରି ବି ରିପୋର୍ଟ ବାହାରିଛି ଯାହା ସରକାରୀ କାଗଜ-ପତ୍ରରେ କେବଳ ରହିଯାଇଛି । ସରକାର ତାକୁ ଗ୍ରହଣ କରିନାହାନ୍ତି, ତା'ଭିତରେ ଥିବା ଅନୁକୂଳ ମତାମତଗୁଡ଼ିକ ମଧ୍ୟ ଗ୍ରହଣଯୋଗ୍ୟ ହୋଇନାହିଁ ।

"ନାଗରିକମାନଙ୍କର ଅନ୍ନସଂସ୍ଥାନର ଦାୟିତ୍ୱ ହେଉଛି ରାଷ୍ଟ୍ରର । ସେମାନଙ୍କ ପାଇଁ କର୍ମ-ସଂସ୍ଥାନ କରିବା ରାଷ୍ଟ୍ରର କର୍ତ୍ତବ୍ୟ । ଶ୍ରମିକମାନେ ମାଲିକମାନଙ୍କର ମର୍ଜିର କ୍ରୀଡ଼ନକ ହେବାକୁ ଦିଆଯିବା ଉଚିତ ନୁହେଁ । ସେମାନେ ମନଇଚ୍ଛା ରଖିବେ ଓ ବାହାର କରିବେ ଏବଂ ସେମାନଙ୍କୁ ଶୋଚନୀୟ ଅବସ୍ଥାରେ ଛାଡ଼ିଦେବେ—ଏପ୍ରକାର ପରିସ୍ଥିତିକୁ ପ୍ରଶ୍ରୟ ଦେବା ଆଦୌ ଉଚିତ ନୁହେଁ ।

"ମାଲିକମାନଙ୍କର ବିଭିନ୍ନ ସମସ୍ୟା ପ୍ରତି ମୁଁ ଯେ ଅବହିତ ନୁହେଁ, ତା ନୁହେଁ । ମୁଁ ଭଲଭାବରେ ସେମାନଙ୍କର ସମସ୍ୟା ସବୁ ଅଧ୍ୟୟନ କରିଛି; ଅନୁଧ୍ୟାନ କରିଛି ମଧ୍ୟ । ଏପରି କେତେକ ଅନୁଷ୍ଠାନ ଅଛନ୍ତି ଯେଉଁମାନେ ନିଜର କର୍ମଚାରୀମାନଙ୍କୁ ଚଳାଇବା ପାଇଁ ଅସମର୍ଥ । ଏପରିକି ବହୁ ପୁରାତନ କର୍ମଚାରୀ ଅସମୟରେ ଚାକିରି ହରାଇଥାଆନ୍ତି । ଏପରି ପରିସ୍ଥିତିରେ ସେ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ସରକାର ହସ୍ତକ୍ଷେପ କରିବା ଉଚିତ । ମାଲିକ ଉପରେ ସରକାରୀ ଚାପ ପଡ଼ିବା ଦରକାର ଏବଂ ତାଙ୍କୁ କହିଦିଆଯିବା ଉଚିତ ଯେ ସେହି ଗରିବ ଚାକିରିଆମାନଙ୍କ ଶ୍ରମ ଓ ସାଧନା ଉପରେ ସେ ଅତୀତରେ ବହୁ ଲାଭ ତଥା ପ୍ରତିଷ୍ଠାର ଅଧିକାରୀ ହୋଇଛନ୍ତି । ଅସମୟରେ ସେମାନଙ୍କୁ ଦୁର୍ଯୋଗ ତଥା ଦୁର୍ବିପାକ ଭିତରକୁ ଠେଲିଦିଆଯାଇ ପାରିବ ନାହିଁ । ଯେ ପର୍ଯ୍ୟନ୍ତ ଚାକିରି କ୍ଷେତ୍ରରେ ଛଟେଇ ବ୍ୟବସ୍ଥା ଥିବ ଓ ଏହାର ସନ୍ତୋଷଜନକ ସମାଧାନ ହୋଇପାରିବ ନାହିଁ, ସେ ପର୍ଯ୍ୟନ୍ତ ଆମ ଦେଶର କଳକାରଖାନାରେ ପ୍ରକୃତ ଶାନ୍ତି ସୃଷ୍ଟି କରିବା ସମ୍ଭବ ନୁହେଁ ।

"ପ୍ରତ୍ୟେକ ଶ୍ରମିକର କାମ କରିବା ପାଇଁ ଯେପରି ଅଧିକାର ଅଛି, ଜୀବନଧାରଣ ପାଇଁ ଉପଯୁକ୍ତ ପାରିଶ୍ରମିକ ବା ମଜୁରି ପାଇବାର ସେହିପରି ଅଧିକାର ମଧ୍ୟ ରହିଛି । ଆଜି ଆମ ଦେଶର ଶ୍ରମିକମାନେ ସନ୍ତୋଷଜନକ ମଜୁରି ପାଉଛନ୍ତି କି ? ସେମାନଙ୍କ କାମର ଗୁରୁତ୍ୱ ବିଚାରକୁ ନିଆଯାଇଛି କି ? ଲୁଗାକଳର ଶ୍ରମିକ ଓ ଚା'ବଗିଚାର ଶ୍ରମିକମାନଙ୍କ କଥା ବିଚାରକୁ ନିଅନ୍ତୁ । ସେମାନଙ୍କ ମାଧ୍ୟମରେ କେତେ ଲାଭ କରାଯାଇଛି ଓ ସେମାନେ ସେହି ଅନୁପାତରେ କେତେ ମଜୁରି ପାଉଛନ୍ତି । ମାଲିକମାନେ ତାଙ୍କ ଲାଭାଂଶରୁ କିଛି ଶ୍ରମିକମାନଙ୍କର ଉନ୍ନତି ପାଇଁ ବିନିଯୋଗ କରିପାରିଲେ ସେମାନଙ୍କ ଅବସ୍ଥାର ସନ୍ତୋଷ-ଜନକ ପରିବର୍ତ୍ତନ କରାଯାଇପାରନ୍ତା ।

"ଦୁଃଖର କଥା, ଶ୍ରମିକମାନଙ୍କର ସମସ୍ୟା ଏପର୍ଯ୍ୟନ୍ତ ଠିକ୍ ଭାବରେ ସମାଧାନ ପାଇଁ ବ୍ୟବସ୍ଥା କରାଯାଇପାରିନାହିଁ । ଏହା ସେମାନଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ଓ ଆତ୍ମପୀଡ଼ନ ସୃଷ୍ଟି କରିଛି । ଅଶାନ୍ତିର ଧୂମକୁଣ୍ଡଳୀ ଭିତରେ ସେମାନେ ବୁଡ଼ିରହିଛନ୍ତି । ଉତ୍ପାଦନ ବ୍ୟାହତ ହେଉଛି ।

"ଅତୀତର ବହୁ ପ୍ରତିକୂଳ ପରିସ୍ଥିତି ଭିତରେ ତଥାପି ମଧ୍ୟ ଶ୍ରମିକମାନଙ୍କର ସଂଗଠନ-ଗୁଡ଼ିକ ଶକ୍ତି ଓ ପ୍ରେରଣା ସଞ୍ଚୟ କରି ଆଗେଇଚାଲିଛି । ସେସବୁ ସମସ୍ୟାର ନିଶ୍ଚୟ ସମାଧାନ ହେବ । ଉତ୍ତମ ବୁଝାମଣା ମଧ୍ୟରେ ପରିସ୍ଥିତି ସୁଧୁରିଯିବ ।

"ସମାଜବାଦ ହିଁ ଭାରତ ତଥା ପୃଥିବୀର ମୁକ୍ତି ପାଇଁ ଏକମାତ୍ର ସହାୟକ—ଏହା ମୋର ବ୍ୟକ୍ତିଗତ ଧାରଣା । ବିଶ୍ୱର ଅନ୍ୟାନ୍ୟ ଜାତିମାନଙ୍କର ଅଭିଜ୍ଞତାକୁ ଅନୁଧ୍ୟାନ କରି ଭାରତ ସେଥିରୁ କିଛି ଜ୍ଞାନ ଆହରଣ କରିବା ଉଚିତ । ସେଥିରୁ କିଛି ଲାଭ ବି ଉଠାଇବା

ଆବଶ୍ୟକ । ମୋର ମନେହୁଏ, ଏ କ୍ଷେତ୍ରରେ ଭାରତ ଅନ୍ଧାନୁକରଣ ନକରି ସ୍ୱତନ୍ତ୍ର ଭାବରେ ତାର ଆବଶ୍ୟକତା ଅନୁଭବ କରୁ ଓ ସେହି ଅନୁସାରେ ତାର ପରିପୂରଣ ପନ୍ଥା ଭାରତୀୟ ଧାରାରେ ନିର୍ଣ୍ଣୟ କରୁ ।''

ସୁଭାଷ ଶ୍ରମିକମାନଙ୍କର ଉନ୍ନତିକଳ୍ପେ ଆନ୍ତରିକତାର ସହିତ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଥିଲେ । ସେ ବୁଝିଥିଲେ, ଶ୍ରମ-ସମ୍ପଦ ହିଁ କୌଣସି ଜାତିର ପ୍ରକୃତ ସମ୍ପଦ । ଜନ-ସମ୍ପଦଠାରୁ ବଳି ଆଉ କିଛି ମୂଲ୍ୟବାନ୍ ହୋଇ ନପାରେ । ବିନିଯୋଗର ଦକ୍ଷତା ଉପରେ ଏହାର ମୂଲ୍ୟ ନିର୍ଭର କରେ । ଦେଶର ଅର୍ଥନୈତିକ ପ୍ରଗତି, ସର୍ବସାଧାରଣ ଲୋକମାନଙ୍କର ଉପାର୍ଜନ କ୍ଷମତା ଉପରେ ନିର୍ଭରଶୀଳ । ଲୋକମାନଙ୍କର ଉପାର୍ଜନ କ୍ଷମତା ବୃଦ୍ଧି କରିବା ପାଇଁ ସୁଯୋଗର ବିଳୟ ସୃଷ୍ଟି କରିବାକୁ ହେବ । ଶିଳ୍ପାୟନ ଢାଞ୍ଚା ବଦଳାଇବା ଦରକାର । ମାଲିକ ଓ ଶ୍ରମିକର ସମ୍ପର୍କକୁ ଦୃଢ଼ୀଭୂତ କରିବା ସହିତ ସୁସ୍ଥ ବାତାବରଣ ସୃଷ୍ଟି ଦିଗରେ ଆନ୍ତରିକତା ପ୍ରକାଶ କରିବା ଉଚିତ । ଶିଳ୍ପ ସହିତ ଯାନ୍ତ୍ରିକ ଶ୍ରମ ଯେତେ ସମ୍ପର୍କିତ ହେଲେ ମଧ୍ୟ ମାନବିକ ଶ୍ରମର ସଦୁପଯୋଗ ବ୍ୟତୀତ ଏହାର ବିକାଶ କରାଯାଇନପାରେ । ଶିଳ୍ପର ମାନବିକ ଦିଗକୁ ଦୁର୍ବଳ କରିଦେଇ ଯାନ୍ତ୍ରିକ ଦିଗକୁ କେବଳ ସବଳ କଲେ ତାହା ତିଷ୍ଠି ପାରିବ ନାହିଁ । ଯନ୍ତ୍ରର ମାନବିକ ଆବେଗ ନାହିଁ, ଉଦ୍‌ବେଗ ନାହିଁ, ଆଶା ନାହିଁ କିମ୍ବା ଆନ୍ତରିକତା ନାହିଁ । ପଢ଼ିଲି ଗୁଳାରେ ପଢ଼ି, ପୁନରାବୃତ୍ତିର ସ୍ୱର-ସଙ୍ଗୀତ ସୃଷ୍ଟି କରିବା ବ୍ୟତୀତ ସେ ଅଧିକ କିଛି କରି ପାରିବ ନାହିଁ । ମଣିଷ—ମଣିଷ, ତାର ନିଜସ୍ୱ ପରିପ୍ରକାଶ ଅଛି; ଏହାହିଁ ତାର ବିଶେଷତ୍ୱ ।

ସୁଭାଷଙ୍କର ଚିନ୍ତାଧାରା ଥିଲା ମୌଳିକ ଓ ସମସ୍ୟାର କେନ୍ଦ୍ରବିନ୍ଦୁରେ ତାଙ୍କର ଦୃଷ୍ଟି ହଠାତ୍ ପଡ଼ିପାରୁଥିଲା; ଫଳରେ ସମାଧାନର ପନ୍ଥା ଥିଲା ତାଙ୍କ ପାଇଁ ସହଜ ।

'କର ନହେଲେ ମର ।'—ଏହା ଥିଲା ସୁଭାଷଙ୍କର ଦେଶବାସୀଙ୍କ ପାଇଁ ଚରମ ଧ୍ୱନି; ଭାରତୀୟ ସ୍ୱାଧୀନତା ପର୍ବର ପରମବାର୍ତ୍ତା । ସେ କହୁଥିଲେ, "ମଣିଷ ଜୀବନରେ ଯେପରି ବିଭିନ୍ନ ଅବସ୍ଥା ଅଛି ଯଥା—ଶୈଶବ, କୈଶୋର, ଯୌବନ ଏବଂ ବାର୍ଦ୍ଧକ୍ୟ, ସେହିପରି ପ୍ରତ୍ୟେକ ଜାତିର ମଧ୍ୟ ସେହି କ୍ରମିକ ଅବସ୍ଥା ବିଦ୍ୟମାନ । ତା'ରି ଭିତରେ ସମସ୍ତେ ଗତିକରନ୍ତି । ମନୁଷ୍ୟ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ତାର ଜୀବନଯାତ୍ରା ନିର୍ବାହ କରେ; ମୃତ୍ୟୁ ଭିତରେ ପୁଣି ନବଜନ୍ମର ଅଧିକାରୀ ହୁଏ । ପ୍ରତ୍ୟେକ ଜାତି କ୍ଷେତ୍ରରେ ଏହା ହିଁ ସମ୍ଭବ । ବିଭିନ୍ନ ଜାତି, ସଂସ୍କୃତି ଓ ସଭ୍ୟତା ମୃତ୍ୟୁ ଭିତରେ ପୁଣି ନବଜନ୍ମର ଅଧିକାରୀ ହୁଅନ୍ତି ଠିକ୍ ମଣିଷ ପରି; କିନ୍ତୁ ମଣିଷ ଓ ତାର ସଭ୍ୟତା ଭିତରେ ଏତିକି ପ୍ରଭେଦ ଯେ ଅନେକ ଜାତି ଧ୍ୱଂସ ପାଇଯିବା ପରେ ପୁଣି ଥରେ ବିଶ୍ୱ-ବୁକୁରେ ନବଜନ୍ମର ଜୟ-ପତାକା ଉଡ଼ାଇ ପାରନ୍ତି ନାହିଁ । ଯଦିବା ଆସନ୍ତି, ତାଙ୍କ ଅସ୍ତିତ୍ୱର ଆଧାର ଏତେ କ୍ଷୀଣ ଯେ ସେମାନଙ୍କର ଖବର ଇତିହାସ ରଖେନାହିଁ ।

"ଆମ ଭାରତୀୟ ସଭ୍ୟତାର ମୃତ୍ୟୁ ଯେ ହୋଇନାହିଁ ତାହା ବୁଝାଯାଇନପାରେ । ସେ ବହୁବାର ମୃତ୍ୟୁବରଣ କରିଥିଲେ ବି ନୂତନ ଶକ୍ତିସମ୍ଭାର ନେଇ ତା ଶୀତଳ ଶଯ୍ୟାରୁ ପୁଣି ଉଠିଛି; ପୁଣି ବିକାଶର ସ୍ତର ଭିତରେ ଗତି କରିଛି । ଭାରତୀୟ ସଂସ୍କୃତି ଓ ସଭ୍ୟତାର ଜୀବନଯାତ୍ରା ଯେ ଉତ୍‌ଥାନ-ପତନ ଭିତରେ ଅବ୍ୟାହତ ରହିଛି, ତା'ର କାରଣ, ସେ ବିଶ୍ୱକୁ ଏକ ବାର୍ତ୍ତା ଦେଉଛି । ଭାରତୀୟ ସଂସ୍କୃତିରେ ଏପରି ମହନୀୟ ମାନବିକ ଉପାଦାନ ଭରିରହିଛି, ଯାହାକି ମାନବ-ସଭ୍ୟତାର ପରିପୂର୍ତ୍ତିର ସହାୟକ । କଳା, ସାହିତ୍ୟ, ବିଜ୍ଞାନ, କାରିଗରୀ କୌଶଳ, ବାଣିଜ୍ୟ, ଧର୍ମ, ଦର୍ଶନ ତଥା ରାଜନୀତି—ଏ ପ୍ରତ୍ୟେକ କ୍ଷେତ୍ରରେ ବିଶ୍ୱପାଇଁ ଭାରତର ଅବଦାନ ଅତୁଳନୀୟ । ବିଶ୍ୱର ଘନାନ୍ଧକାର ମଧ୍ୟରେ ଭାରତୀୟ ମୁନିଋଷିମାନେ ଯୁଗ-ଯୁଗଧରି ଜ୍ଞାନାଲୋକର ବର୍ତ୍ତିକା ଧରିଛନ୍ତି । ବିଶ୍ୱ-ଜୀବନକୁ ଆଲୋକିତ କରିବା ସେମାନଙ୍କର କର୍ତ୍ତବ୍ୟ । ଏ ଜାତି ଯେଉଁ ମହାନ୍ କର୍ତ୍ତବ୍ୟର ଦାୟିତ୍ୱ ବହନ କରିଛି ତାହା ତୁଲାଇ ନ ସାରିବା ପର୍ଯ୍ୟନ୍ତ ତାର ମୃତ୍ୟୁ ହେବନାହିଁ । ଯେଉଁଦିନ ସେ ତା' ମହତ୍ତର କର୍ତ୍ତବ୍ୟରୁ ଓହରିଯିବ, ସେଇଦିନ ବିଶ୍ୱପାଇଁ ତାର କିଛି ଅବଦାନ ରହିବ ନାହିଁ ଏବଂ ସେ ମୃତ୍ୟୁବରଣ କରିବ । ଆମେ କଣ ଆମର କର୍ତ୍ତବ୍ୟକୁ ଭୁଲିଯିବା ?

"ଖାଇବା, ପିଇବା, ଶୋଇବା ଓ ନିଜ ସ୍ୱାର୍ଥ ପାଇଁ ଦିନରାତି ପାଗଳ ହେବାଦ୍ୱାରା ମଣିଷ ଦାବୀ କରିପାରିବ ନାହିଁ ଯେ ସେ ଜୀବିତ । ଜୀବନର ଏହା ନିର୍ଯାସ ନୁହେଁ । ଏ ଯୁକ୍ତିରେ ଆମେ ବିଚାର କଲେ ଭାରତର ଅଧିକାଂଶ ଲୋକଙ୍କୁ ଜୀବିତ ଅବସ୍ଥାରେ ମଧ୍ୟ ଜୀବନର ଅଧିକାରୀ ବୋଲି କହିପାରିବା ନାହିଁ । ଯେଉଁ ସୁଯୋଗ୍ୟ ସନ୍ତାନମାନଙ୍କର ଭାରତୀୟ ଜୀବନାଦର୍ଶ ନିଜର ପ୍ରାଣବାୟୁ ରୂପେ ପ୍ରବାହିତ, କେବଳ ସେହିମାନେହିଁ ପ୍ରକୃତ ଜୀବନର ଅଧିକାରୀ । ଭାରତୀୟ ଯୁବବର୍ଗ ଦେଶ ଓ ଜାତିର ମହାନ୍ ଆଦର୍ଶରେ ଉଦ୍‌ବୁଦ୍ଧ ଓ ସେମାନଙ୍କର ଏହା ଉପରେ ଅଟଳ ବିଶ୍ୱାସ ରହିଛି । ଏହି ଦୃଷ୍ଟିରୁ ସେମାନେ ପ୍ରକୃତ ଜୀବନର ଅଧିକାରୀ ।"

କାରାଗାର ଜୀବନ ଯାପନ କରୁଥିବା ସମୟରେ ସୁଭାଷ ଭାଙ୍ଗିପଡ଼ନ୍ତି ନାହିଁ; ବରଂ ନିଜର ଆତ୍ମ-ସମୀକ୍ଷା କରନ୍ତି । ଏହାହିଁ ତାଙ୍କୁ ଅଦମ୍ୟ ସାହସ ଓ ଆତ୍ମବଳ ଦିଏ । ସେ ଏହା ମଧ୍ୟରୁ ଆତ୍ମପ୍ରେରଣା ପାଆନ୍ତି । "ଭାରତର ଏକ ନିଜସ୍ୱ ଧର୍ମ ଅଛି ଏବଂ ତାର ଭବିଷ୍ୟତ ଉଜ୍ଜ୍ୱଳମୟ । ଆମେ ହିଁ ତାର ଦାୟାଦ । ନୂତନ ସ୍ୱାଧୀନ ଭାରତ ହିଁ ହେବ ଆମର ସୃଷ୍ଟି । ଏହି ବିଶ୍ୱାସ ସବୁ ପ୍ରକାର ଦୁଃଖ-ନିର୍ଯାତନାକୁ ସହ୍ୟ କରିବା ଦିଗରେ ସାହାଯ୍ୟ କରିବ । ଆମ ଆଦର୍ଶର ତେଜପୁଞ୍ଜ ସମସ୍ତ ଦୁର୍ବିପାକର ହିମଖଣ୍ଡକୁ ତରଳାଇ ଦେଇପାରିବ ।"
—ଏହାହିଁ ଥିଲା ସୁଭାଷଙ୍କର ବିଶ୍ୱାସର ବାଣୀ ।

"ଏ ପୃଥିବୀରେ ମଣିଷ ଯାହାକିଛି ଲକ୍ଷ୍ୟ ହାସଲ କରିଛି, ତାହା କେବଳ ସମ୍ଭବ ହୋଇଛି ତା' ନିଜ ଉପରେ ତଥା ନିଜର ସୃଜନୀ-ଶକ୍ତି ଉପରେ ଆସ୍ଥା ସ୍ଥାପନ କରି ।

ଆତ୍ମବିଶ୍ୱାସହିଁ ସଫଳତାର ଜନନୀ । ଯେଉଁ ଲୋକର ତା' ନିଜ ଉପରେ ଆସ୍ଥା ସ୍ଥାପନ କରିବା ତା' ଜନ୍ମଭୂମି ଉପରେ ବିଶ୍ୱାସ ନାହିଁ, ସେ କିଛି ସୃଷ୍ଟି କରିପାରିବ ନାହିଁ ।

"ଭାରତୀୟମାନଙ୍କର ଦୋଷ-ଦୁର୍ବଳତା ଯେ ନାହିଁ, ଏହା କୁହାଯାଇନପାରେ; ତା'ସତ୍ତ୍ୱେ ସେମାନଙ୍କ ପାଖରେ ଏପରି ଏକ ମହତ୍ତ୍ୱର ପ୍ରବୃତ୍ତି ଅଛି, ଯାହା କି ସମସ୍ତ ପ୍ରତିକୂଳତାକୁ ପ୍ରତିହତ କରି ସେମାନଙ୍କୁ ଊର୍ଦ୍ଧ୍ୱକୁ ନେଇପାରିଛି । ପୃଥିବୀର ଅନ୍ୟାନ୍ୟ ଜାତି ଭିତରେ ସେମାନଙ୍କର ସ୍ଥାନ ସେମାନେ ବାଛିନେଇପାରିଛନ୍ତି । ଏହାହିଁ ଭାରତୀୟ-ମାନଙ୍କର ବିଶେଷତ୍ୱ । ନାନା ଘାତ-ପ୍ରତିଘାତ, ବାଦ-ବିସମ୍ବାଦ, ବିଫଳତା ତଥା ନୈରାଶ୍ୟ ଭିତରେ ଭାରତୀୟମାନେ ସେମାନଙ୍କର ଆଦର୍ଶକୁ ଉଜ୍ଜୀବିତ କରି ରଖିଛନ୍ତି । ଭାରତରେ ଯେଉଁ ମହାନ୍ ସନ୍ତାନମାନେ ଜନ୍ମଗ୍ରହଣ କରିଛନ୍ତି ଓ ଯେଉଁମାନେ ଭବିଷ୍ୟତରେ ଜନ୍ମ-ଗ୍ରହଣ କରିବେ, ଏହି ଭାରତୀୟ ଆଦର୍ଶ ତଥା ପରମ୍ପରା ହିଁ ହେବ ସେମାନଙ୍କର ଜୀବନର ଆଧାର ।

ଦୁଃଖ-ଯନ୍ତ୍ରଣା ଭାରତୀୟ ଆତ୍ମ-ଶକ୍ତିକୁ ଦୁର୍ବଳ କରିପାରେ ନାହିଁ; ବରଂ ଆନନ୍ଦର ଅଭିବ୍ୟକ୍ତିରେ ସହାୟକ ହୋଇଥାଏ । ଦୁଃଖର ଶିଳାଶଯ୍ୟାରେ ଆନନ୍ଦର ନିର୍ଝରିଣୀ ପ୍ରବାହିତ ହୁଏ । ଯାତ୍ରାପଥରେ କର୍ତ୍ତବ୍ୟର ସଙ୍ଗୀତ ଗାନ କରି କରି ତାର ହୁଏ ସମୁଦ୍ର-ସଙ୍ଗମ : ସେ ସମୁଦ୍ର ହେଉଛି ସତ୍ୟର ସମୁଦ୍ର ।"

ସୁଭାଷଙ୍କ ଜୀବନଦର୍ଶନ ବାସ୍ତବତାର ଖୁବ୍ ନିକଟବର୍ତ୍ତୀ । ଭାବାବେଗ ଭିତରେ ସେ ନିଜକୁ ବୁଡ଼ାଇରଖି ଅଳୀକ ସ୍ୱପ୍ନ ଦେଖୁନଥିଲେ । ତାଙ୍କର ଚିନ୍ତା ଓ ଚେତନା ଭିତରେ ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ସେ ଯେଉଁ ଜୀବନାଦର୍ଶ କଥା କହୁଥିଲେ, ତାହା ମେଘମଣ୍ଡିତ ନୀଳ ଆକାଶର ଚିରପରିବର୍ତ୍ତନଶୀଳ ମେଘାଲୋକର ମାୟା-ମଞ୍ଚ ନୁହେଁ—ସତ୍ୟର ସୀମାହୀନ ଦିଗନ୍ତ । ସାଧନା ଓ ନିଷ୍ଠା ଉପରେ ଲକ୍ଷ୍ୟ ହାସଲ କରିବାର ସଫଳତା ନିର୍ଭର କରେ । ମାତୃଭୂମି ପ୍ରତି ତାଙ୍କର ମମତା ଥିଲା ଅପରିମିତ । ସେ କହୁଥିଲେ :

"ଯେଉଁମାନେ ନୂତନ ଭାରତ ଗଠନ ଦିଗରେ ସଂକଳ୍ପବଦ୍ଧ, କେବଳ ସେମାନଙ୍କର ବାଚନିକ ଆନ୍ତରିକତାରେ ତାହା ସମ୍ଭବ ହୋଇ ପାରିବ ନାହିଁ । ଏଥିପାଇଁ ଆବଶ୍ୟକ ସ୍ୱତଃସ୍ଫୂର୍ତ୍ତି ଉତ୍ସର୍ଗ । ଜୀବନକୁ ଉତ୍ସର୍ଗର ଏକ ନମପରିଣତିରେ ପରିଣତ କରାଯାଇପାରିଲେ ତାହା ସମ୍ଭବ ହେବ । ତ୍ୟାଗ ହିଁ ସେମାନଙ୍କର ମୂଳମନ୍ତ୍ର ହେବା ଅବଶ୍ୟକ । ଏହା ପଛରେ ପ୍ରତିଦାନର ମନୋଭାବ ଆଦୌ ରହିବନାହିଁ । ସେମାନେ ହେବେ ତ୍ୟାଗର ପ୍ରତିମୂର୍ତ୍ତି ଏବଂ ନବଭାରତର ସ୍ରଷ୍ଟା ।

ଆମର ଅନେକ ଶତ୍ରୁ ଅଛନ୍ତି । ସେମାନଙ୍କ ମଧ୍ୟରେ ପ୍ରଧାନ ଶତ୍ରୁ ହେଉଛି ଆମର ଆତ୍ମ-ଅବିଶ୍ୱାସ । ଯେ ପର୍ଯ୍ୟନ୍ତ ସେ ପ୍ରକାର ଶତ୍ରୁକୁ ଆମେ ଜୟ କରିପାରିନାହୁଁ, ସେପର୍ଯ୍ୟନ୍ତ ବାହ୍ୟ ଶତ୍ରୁଙ୍କୁ ଜୟ କରିହେବ ନ ପାରେ । ଆତ୍ମ-ବିଶ୍ୱାସ ହିଁ ଆମ ଲକ୍ଷ୍ୟପଥର ସିଦ୍ଧି-

କରିବ । ଆଜିର ଯୁବସମାଜକୁ ଏ ଦିଗରେ ଉଦ୍‌ବୁଦ୍ଧ କରାଯାଇପାରିଲେ ସ୍ୱାଧୀନତା ସଂଗ୍ରାମର ସୈନିକ ଭାବରେ ସେମାନେ ନିଜନିଜର ପ୍ରକୃତ କର୍ତ୍ତବ୍ୟ ସମ୍ପାଦନ କରିପାରିବେ ।”

ସୁଭାଷ ଥିଲେ ଚରମ ଆଶାବାଦୀ ଓ ଆଶାର ପରିପୂରଣ ପାଇଁ ଜନ୍ମଭୂମିର ସଂକୀର୍ଣ୍ଣ ବଳୟକୁ ପାରିହୋଇ ବିଶ୍ୱ-ବଳୟକୁ ଲମ୍ଫ ଦେବାକୁ ସେ କୁଣ୍ଠା ପ୍ରକାଶ କରୁନଥିଲେ । ମନ ତାଙ୍କର ଥିଲା ବିଶ୍ୱମୁଖୀ । ଜନ୍ମଭୂମିର ଉନ୍ନତି ପାଇଁ ସେ ବିଶ୍ୱଜୀବନ ସହିତ ଏକୀଭୂତ ହେବାକୁ ପସନ୍ଦ କରୁଥିଲେ । ସେ ଥିଲେ ଚରମ ମାନବବାଦୀ । ମନୁଷ୍ୟର ମୁକ୍ତିପାଇଁ ତାଙ୍କ ପ୍ରାଣ ସର୍ବଦା ବ୍ୟାକୁଳ ହେଉଥିଲା । ତାଙ୍କ ମତରେ ମଣିଷ କେବଳ ନିଜ ମାତୃଭୂମିର ପରିସୀମା ମଧ୍ୟରେ ଆବଦ୍ଧ ରହି ବିଶ୍ୱଜୀବନର ସୌନ୍ଦର୍ଯ୍ୟ ଓ ମହିମାସ୍ୱାଦରୁ ବଞ୍ଚିତ ହେବା ଉଚିତ ନୁହେଁ । ‘ଏହି ଜନ୍ମଭୂମି ମୋର, ମୁଁ ଏଠାରେ ଜନ୍ମ ହୋଇଛି, ଏଠାରେ ପ୍ରତିପାଳିତ ହୋଇଛି; ଏ ମାଟି ମୋର ସ୍ୱର୍ଗ; ବଞ୍ଚିଲେ ଏଠାରେ ବଞ୍ଚିବି, ମଲେ ଏଠାରେ ମରିବି ।’—ଏପ୍ରକାର ଅଭିବ୍ୟକ୍ତି ସୁଭାଷ ଆଦୌ ପସନ୍ଦ କରନ୍ତିନାହିଁ । ତାଙ୍କ ମତରେ ଏପ୍ରକାର ମନୋଭାବ ଅତ୍ୟନ୍ତ ବିପଜ୍ଜନକ । ମାନସିକ ସଂକୀର୍ଣ୍ଣତାର ଏହା ଚିହ୍ନ । ମନକୁ ବ୍ୟାପକ କଲେ ବ୍ୟାପକତାର ବିପୁଳ ,ସମ୍ଭାର ମଣିଷକୁ ନିଶ୍ଚୟ ମିଳିବ । ଗୃହପାଗଳ ବ୍ୟକ୍ତି ଏ ସୁଯୋଗରୁ ସର୍ବଦା ବଞ୍ଚିତ ହୁଏ ।

ସୁଭାଷଙ୍କ ମତରେ ପ୍ରତ୍ୟେକ ବ୍ୟକ୍ତି ମାତୃଭୂମିର ମୁକ୍ତି ପାଇଁ ପାଗଳହେବା ଉଚିତ । ମାତୃଭୂମି ବିଷୟରେ ପ୍ରତ୍ୟେକଙ୍କର ପୁଙ୍ଖାନୁପୁଙ୍ଖ ଧାରଣା ହେବା ଦରକାର । ଏପ୍ରକାର ଆତ୍ମପରିଚୟ ପରେ ଆମକୁ ଦେଶରୁ ଦେଶାନ୍ତରକୁ ଗତି କରିବାକୁ ପଡ଼ିବ; ନୂତନ ପଥ, ନୂତନ ଭୂମି, ନୂତନ ଦିଗନ୍ତ, ଅଜ୍ଞାତ ପରିସର ଉନ୍ମୋଚିତ କରିବାକୁ ହେବ । ଦେଶ-ଦେଶ, ଜାତି-ଜାତି, ମଣିଷ-ମଣିଷ ଭିତରର ପ୍ରୀତିବନ୍ଧନକୁ ଦୃଢ଼ୀଭୂତ ନକଲେ କୌଣସି ଦେଶ ବା ସଭ୍ୟତା ତିଷ୍ଠି ପାରିବ ନାହିଁ; ଅନ୍ୟର ଅନୁଭୂତି-ଅର୍ଜିତ ଜ୍ଞାନ, ଶକ୍ତି ତଥା ସାମର୍ଥ୍ୟ ମିଳିବ ନାହିଁ । ଏହା ଯେକୌଣସି ଜାତି ପାଇଁ ଅମୂଲ୍ୟ ସମ୍ପଦ ।

ସମସ୍ତେ କହୁଛନ୍ତି ଯୁବକମାନେ ଅଶାନ୍ତ, ସମାଜ ଅଶାନ୍ତ; ପରିବେଶ ଅଶାନ୍ତ । ଏଥିରେ ବିଚଳିତ ହେବାର କିଛି ନାହିଁ । ଅଶାନ୍ତତା ହିଁ ଜୀବନ । ଶାନ୍ତିଲାଭ କରିବାର ଉଦ୍‌ବେଳନ ତା’ ଭିତରେ ରହିଛି । ପ୍ରକୃତ ନେତୃତ୍ୱ ବଳରେ ଏହାକୁ ଲକ୍ଷ୍ୟମାର୍ଗରେ ପରିଚାଳିତ କରାଯାଇପାରେ । ଯୁବକମାନଙ୍କ ମଧ୍ୟରେ କାର୍ଯ୍ୟ ପ୍ରତି ଅନୁରାଗ ଅଛି; ହୁଏତ ତାହାକୁ ସମ୍ପାଦନ କରିବାର ଧାରାରେ ବ୍ୟତିକ୍ରମ ସୃଷ୍ଟି ହୋଇପାରେ । ତାହା ସୁଧୁରି-ଯିବାକୁ ବେଶି ସମୟ ଲାଗିବ ନାହିଁ । ନେତାର ନେତୃତ୍ୱ ପାଇଁ ଅପେକ୍ଷା କରିବାର ଆବଶ୍ୟକତା ନାହିଁ । ନିଜ ଭିତରୁ ନେତା ସୃଷ୍ଟି କରିବାକୁ ହେବ । ଆଦର୍ଶର ଅନୁପ୍ରାଣିତ ଜୀବନରେ ନୂତନ ଦିଗନ୍ତର ସନ୍ଧାନ ମିଳେ । ସେ କହନ୍ତି, “ହେ ଯୁବକ ବନ୍ଧୁଗଣ ! ଉତ୍ଥିତ ହୁଅ, ଜାଗ୍ରତ ହୁଅ; ତମ ଭିତରେ ଯେ ଅନନ୍ତ ଆତ୍ମଶକ୍ତି ପ୍ରଜ୍ୱଳିତ ହେଉଛି, ତାକୁ ଉଦ୍ଭାସିତ

କରିଅ । ତୁମ ଭିତରେ ଅଛୁ ଆନନ୍ଦର ଉଦ୍‌ବେଳିତ ସିନ୍ଧୁ । ଦୁଃଖ-ଯନ୍ତ୍ରଣାକୁ ଅସ୍ୱୀକାର କରି ଆତ୍ମାର ବିମଳାନନ୍ଦ ଉପଭୋଗ କର ।”

ଭାରତର ଅତୀତ ଅତ୍ୟନ୍ତ ସମୃଦ୍ଧ । କଳା, ବିଜ୍ଞାନ, ରାଜନୀତି, ସାହିତ୍ୟ, ଦର୍ଶନ—ଏ ସବୁ କ୍ଷେତ୍ରରେ ସେ ଉଲ୍ଲେଖନୀୟ ସଫଳତା ଅର୍ଜନ କରିଛି । ଅତୀତରେ ଏପରି ମହନୀୟ ବ୍ୟକ୍ତିତ୍ୱ ଭାରତୀୟ ଜୀବନଧାରାକୁ ପ୍ରଭାବିତ କରିଥିଲା; ଯାହାର ସ୍ଥାନ ଏପର୍ଯ୍ୟନ୍ତ ଅପୂରଣ ହୋଇ ରହିଛି । ସେପରି ବ୍ୟକ୍ତିଙ୍କର ସ୍ଥାନ ଦୀର୍ଘଦିନ ଧରି ଅପୂରଣ ରହିବା ଜାତୀୟ ଜୀବନ ପାଇଁ ଅନୁକୂଳ ନୁହେଁ । ଆମ ଭିତରେ ଯେ ସେପ୍ରକାର ନେତୃତ୍ୱ ବିରଳ, ତା' ନୁହେଁ । ଉପଯୁକ୍ତ ପରିବେଶ ଓ ସୁଯୋଗ ମିଳିଲେ ସାଧକର ସାଧନା ଦୀପ୍ତିମନ୍ତ ହେବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ସେପ୍ରକାର ବିରଳ ବ୍ୟକ୍ତି ଓ ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ହେବ ।

୧୯୩୨ ମସିହା କଥା ।

ଆକାଶରେ ଭାସମାନ କଳାମେଘର ଜୁଆର । ଯେତେବେଳେ ସେ ଏକ ବିରାଟ ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ ପାଗଳ, ଠିକ୍ ସେହି ମୁହୂର୍ତ୍ତରେ ଶାରୀରିକ ଅସୁସ୍ଥତାହିଁ ତାଙ୍କର ସମସ୍ତ କଳ୍ପନାକୁ ଧୂଳିସାତ୍ କରିଦେଇଥିଲା । ଏହା ଥିଲା ଏକ ଆକସ୍ମିକ ଆଘାତ । ମନ ତଥା ଶରୀର ଉପରେ ଅତିମାତ୍ରାରେ ଚାପ ପଡ଼ିବା ଫଳରେ ସେ ସାଂଘାତିକ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇଥିବାର ସନ୍ଦେହ କରାଗଲା । ସେ ଚିକିତ୍ସା ପାଇଁ ଭିଏନା ଗଲେ ।

ଅନେକ ସମୟରେ ବିପଦ ଭିତରେ ଈଶ୍ୱରଙ୍କର କିଛି ପ୍ରଚ୍ଛନ୍ନ ଆଶୀର୍ବାଦ ମଧ୍ୟ ଲୁଚି-ରହିଥାଏ । ସେଠାରେ ବିଠଲଭାଇ ପଟେଲଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ବିଠଲଭାଇ ଥିଲେ ଜଣେ ନିଷ୍ଠାପର ଦେଶପ୍ରେମୀ ଓ ବହୁ-ପ୍ରଶଂସିତ ବ୍ୟକ୍ତି । ଉଭୟଙ୍କ ମଧ୍ୟରେ ଘନିଷ୍ଠତା ଦିନକୁ ଦିନ ବଢ଼ିଲା । ବିଠଲଭାଇ ବିଦେଶ-ରହଣିକାଳ ମଧ୍ୟରେ ଜଣେ ଉଚ୍ଚକୋଟୀର ସମ୍ଭାବାପନ୍ନ ବ୍ୟକ୍ତିଙ୍କର ସାନ୍ନିଧ୍ୟଲାଭର ସୁଯୋଗ ପାଇ ଆନନ୍ଦିତ ହୋଇଥିଲେ । ଉଭୟଙ୍କ ମଧ୍ୟରେ ଭାରତର ତଦାନୀନ୍ତନ ପରିସ୍ଥିତି ଉପରେ ବହୁ ଆଲୋଚନା ଓ ପରାମର୍ଶ ଚାଲିଥିଲା । ଭାରତ କିପରି ସ୍ୱାଧୀନତା ଲାଭ କରିବ, ତାହା ଥିଲା ଉଭୟଙ୍କର ଚିନ୍ତାର ବିଷୟ । ଉଭୟେ ଏକମତ ହୋଇଥିଲେ ଯେ, ବିଦେଶୀ ଶକ୍ତିର ବିନା ସାହାଯ୍ୟ ଓ ସହଯୋଗରେ ଭାରତ ତାର ସ୍ୱାଧୀନତା ହାସଲ କରିପାରିବ ନାହିଁ । ଏଥିପାଇଁ ଆବଶ୍ୟକ ଆନ୍ତର୍ଜାତିକ ସହଯୋଗ । ଭାରତୀୟ ଜାତୀୟ ଆନ୍ଦୋଳନକୁ ଆନ୍ତର୍ଜାତିକ ରୂପ ନଦେଲେ ତାର ସମାଧାନ ପାଇଁ ଇଂରେଜମାନେ ବିଶେଷ ବ୍ୟସ୍ତ ହେବେନି । ଏହାକୁ ଆନ୍ତର୍ଜାତିକ ସମସ୍ୟାରେ ପରିଣତ କରିବାକୁ ହେବ । ଫଳରେ ବ୍ରିଟେନ ତାର ବୈଦେଶିକ ନୀତିର ପରିବର୍ତ୍ତନ ପାଇଁ ବାଧ୍ୟ ହେବ ଓ ଭାରତ ସ୍ୱାଧୀନତା ଲାଭକରିବା ସହଜ ହେବ ।

ସୁଭାଷ ବୋଷ ଓ ବିଠଲଭାଇ ପଟେଲଙ୍କର ଏହି ରାଜନୈତିକ ଭୂମିକା ଥିଲା ଏକ ପ୍ରତ୍ୟକ୍ଷ ଘୋଷଣା । ଏଥିରୁ ଏହି ଉଭୟ ନେତାଙ୍କର ମନୋଭାବ ସ୍ପଷ୍ଟରୂପେ ବୁଝି-ହେଉଥିଲା; ତାଙ୍କର ଭବିଷ୍ୟତ ଚିନ୍ତାଧାରା ବିଷୟରେ ସମ୍ୟକ୍ ସୂଚନା ମଧ୍ୟ ମିଳୁଥିଲା ।

ବିଠଲଭାଇ ପଟେଲ ନୂତନ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଥିଲେ । ସେ ଏତେ ଅନୁପ୍ରାଣିତ ହୋଇଥିଲେ ଯେ ନିଜର ଅଜସ୍ର ସମ୍ପତ୍ତିକୁ ସୁଭାଷଙ୍କ ନାମରେ ଉଇଲ୍‌ନାମା କରିଦେଲେ । ଆନ୍ତର୍ଜାତିକ କ୍ଷେତ୍ରରେ, ବ୍ରିଟିଶ-ବିରୋଧୀ ଆନ୍ଦୋଳନ ସୃଷ୍ଟି କରିବା ଦିଗରେ ଏହା ବ୍ୟୟିତ ହେବ, ଏହାହିଁ ଥିଲା ବିଠଲଭାଇଙ୍କର ପ୍ରଚ୍ଛନ୍ନ ଲକ୍ଷ୍ୟ । ଉତ୍କଟ ରୋଗରେ ପୀଡ଼ିତ ହୋଇ ସେ ଯେତେବେଳେ ଅତ୍ୟନ୍ତ ଯନ୍ତ୍ରଣାକ୍ଷୁବ୍ଧ ଥିଲେ, ସେତେବେଳେ ମଧ୍ୟ ଦେଶ ପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲା ।

ଏ ଉଇଲ୍ ସମ୍ବନ୍ଧରେ ଅନେକ ଆଇନଗତ ସମସ୍ୟା ସୃଷ୍ଟି ହୋଇଥିଲେ ମଧ୍ୟ 'ସୁଭାଷ-ପଟେଲ ଘୋଷଣା'କୁ ବହୁ ତରୁଣ କଂଗ୍ରେସନେତା ନୀତିଦୃଷ୍ଟିରୁ ଗ୍ରହଣ କରିଥିଲେ । ସେମାନେ ମଧ୍ୟ ଏକମତ ହେଲେ ଯେ, ଆନ୍ତର୍ଜାତିକ ଲୋକମତ ସୃଷ୍ଟି କରିନଗଲେ, ଭାରତ ସ୍ୱାଧୀନତା ଆନ୍ଦୋଳନର ଲକ୍ଷ୍ୟ ପୂରଣ କରି ପାରିବ ନାହିଁ । ବ୍ରିଟିଶ ଶାସକ ଯେ ପର୍ଯ୍ୟନ୍ତ ଜଟିଳ ପରିସ୍ଥିତିର ସମ୍ମୁଖୀନ ନହୋଇଛି, ଭାରତକୁ ପରାଧୀନ କରିରଖିବାର ସ୍ୱାର୍ଥ ଅପେକ୍ଷା, ଆନ୍ତର୍ଜାତିକ ସମ୍ମାନ, ସହଯୋଗ ଓ ସ୍ୱାର୍ଥକୁ ବଡ଼ ବୋଲି ନ ଭାବିଛି, ସେପର୍ଯ୍ୟନ୍ତ ସେ ଭାରତ ଛାଡ଼ିବ ନାହିଁ । ବ୍ରିଟିଶ-ବିରୋଧୀ ପ୍ରଚାର ସେମାନଙ୍କ ଭିତରେ ରାଜନୈତିକ ସଚେତନତା ସୃଷ୍ଟି କରିବା ସହିତ ଭାରତୀୟମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ସାହାଯ୍ୟ କରିବ; ଏଥିରେ ସନ୍ଦେହ ନାହିଁ ।

ଭାରତର ସ୍ୱାଧୀନତା-ଆନ୍ଦୋଳନରେ ବୋଷ ଓ ପଟେଲଙ୍କ ମିଳିତ ଘୋଷଣା ଏକ ଐତିହାସିକ ସଂଘଟନ । ସେ ପର୍ଯ୍ୟନ୍ତ କୌଣସି ସର୍ବଭାରତୀୟ ସ୍ତରର ନେତା ଆନ୍ଦୋଳନକୁ ଏକ ଆନ୍ତର୍ଜାତିକ ରୂପ ଦେବାକୁ କଳ୍ପନା ମଧ୍ୟ କରିନଥିଲେ । ପୃଥିବୀର ଜନମତକୁ ଭାରତ ସପକ୍ଷରେ ପ୍ରଭାବିତ କରିବାର ପ୍ରୟାସ ଏହିଠାରୁ ଆରମ୍ଭ ହେଲା । ଏହା ପୂର୍ବରୁ ଲଣ୍ଡନଠାରେ ଗୋଟିଏ ଛୋଟ ଅଫିସ ଭାରତ ତରଫରୁ ଖୋଲାଯାଇଥିଲା । ସେଠାରେ ଭାରତୀୟ କଂଗ୍ରେସ ସ୍ୱାଧୀନତା-ଆନ୍ଦୋଳନର ରୂପରେଖ ଓ ଲକ୍ଷ୍ୟ ବିଷୟରେ ଲେଖା ଛପାଇ ବ୍ରିଟିଶ ଲୋକମାନଙ୍କୁ ଅବହିତ କରୁଥିଲେ । ଭାରତର ଲୋକମାନେ ସେମାନଙ୍କ ଶାସନାଧୀନ ହୋଇ କି ଦୁଃଖ-ଯାତନା ଭୋଗ କରୁଛନ୍ତି ଓ ଏହାର କୁପ୍ରଭାବ ଭାରତୀୟ-ମାନଙ୍କର ସାମାଜିକ ତଥା ଅର୍ଥନୈତିକ ଜୀବନକୁ କିପରି ବିପର୍ଯ୍ୟସ୍ତ କରୁଛି, ତାର ଚିତ୍ର ସେମାନଙ୍କ ସମକ୍ଷରେ ପ୍ରକାଶ କରୁଥିଲେ । ଲୋକମତ ସୃଷ୍ଟି କରିବାର ଏହି କ୍ଷୀଣ ପ୍ରୟାସ ବେଶି ଦିନ ରହିଲା ନାହିଁ । ଅସହଯୋଗ ଆନ୍ଦୋଳନ ପରେ ପରେ ଏ ଅଫିସ ବନ୍ଦ ହୋଇ ଯାଇଥିଲା । ଭାରତ ବାହାରେ ଭାରତୀୟମାନଙ୍କର ଦୁଃଖ-ଦୁର୍ଦ୍ଦଶାକୁ ପ୍ରକାଶ କରିବାର

ବାଟ ବନ୍ଦ ହୋଇଗଲା । ଭାରତୀୟମାନଙ୍କର ସମସ୍ୟାକୁ ବିଶ୍ୱ-ଦରବାରରେ ମୁକ୍ତମୁକ୍ତ ଭାବରେ ଉପସ୍ଥାପନ କରିବାର ସୁଯୋଗ ହରାଇବାକୁ ପଡ଼ିଲା ।

ସୁଭାଷଙ୍କର ନୂତନ ଚିନ୍ତାଧାରା ଓ ପଟେଲଙ୍କ ସହିତ ତାଙ୍କର ବୁଝାମଣା ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲା । ବ୍ରିଟିଶ ଲୋକମାନେ ଭାରତ-ମାଟିରେ ଭାରତୀୟମାନଙ୍କ ଉପର ନିର୍ଯାତନ କରୁଛନ୍ତି, ତାହା ବିଶ୍ୱ-ଜନମାନସକୁ ଉଦ୍‌ବେଳିତ କଲା । ବ୍ରିଟିଶ ଲୋକମାନେ ଏ ପ୍ରଚାରକୁ ଚପାଇ ଦେଇ ଆତ୍ମପକ୍ଷ ସମର୍ଥନ କରି ପ୍ରଚାର ଆରମ୍ଭ କରିଦେଲେ । ଏ ପ୍ରଚାର ଥିଲା ସବୁ ଦିଗରୁ ଏକଦିଗଦର୍ଶୀ; ଅଥଚ ଅଭିନବ କୌଶଳର ଏକ ସୁଚତୁର ଅଭିବ୍ୟକ୍ତି । ଭାରତୀୟ ପ୍ରଚାରକୌଶଳକୁ ଏହା ଅନେକ ଦିଗରେ ଟପି-ଯାଇଥିଲା । ଭାରତୀୟ ନେତା ଓ ସ୍ୱାଧୀନତା-ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ଏହା ଯେ ଉଦ୍ଦିଷ୍ଟ ଥିଲା, ଏହାକୁ ଅସ୍ୱୀକାର କରାଯାଇ ନପାରେ । ଭାରତୀୟମାନଙ୍କର ସୁସଂହତ, ସୁସଂଗଠିତ ଓ ସୁଶୃଙ୍ଖଳିତ ଅନୁଷ୍ଠାନ ପ୍ରଚାରକାର୍ଯ୍ୟକୁ ହାତକୁ ନନେଲେ ବ୍ରିଟିଶ ଲୋକମାନଙ୍କର ପ୍ରଚାରକୁ ପ୍ରତିହତ କରାଯାଇ ପାରିବ ନାହିଁ ବୋଲି ଭାରତୀୟ ନେତୃବୃନ୍ଦ ଅନୁଭବ କଲେ ।

ଜାତୀୟବାଦୀ ବିଠଲଭାଇ ଏବଂ ସୁଭାଷ ବୋଷଙ୍କ ଦୂରଦର୍ଶନ ଫଳରେ ଭାରତୀୟ ନେତୃବୃନ୍ଦଙ୍କ ଚିନ୍ତାଧାରାରେ ନୂତନ ଚମକ ସୃଷ୍ଟି ହେଲା । ସ୍ୱାଧୀନତା ସଂଗ୍ରାମର ଯେଉଁମାନେ ପ୍ରକୃତ ସୂତ୍ରଧର ସେମାନେ ପୂର୍ବ-ଆଭିମୁଖ୍ୟର ପରିବର୍ତ୍ତନ କଲେ । ମହାତ୍ମା ଗାନ୍ଧୀଙ୍କ ଅନୁସୃତ ନୀତି ଉପରେ ପୁନର୍ବିଚାରର ପ୍ରସ୍ତାବ ପଡ଼ିଲା । ସମସ୍ତେ ଅନୁଭବ କଲେ, ଆନ୍ଦୋଳନରେ ମନ୍ଥରତାର ମାତ୍ରାବାଣୀ ଲକ୍ଷ୍ୟସାଧନ ଦିଗରେ ସାହାଯ୍ୟ କରିପାରିବ ନାହିଁ । ଉତ୍ତାପ ବେଶି ଦିନ ରହେନା । ତାହା ଯେତିକ ସମୟ ପାଇଁ ଲାଭ କରିବାର ସୁଯୋଗ ମିଳିଛି, ସେତିକ ସମୟ ମଧ୍ୟରେ ଲକ୍ଷ୍ୟ ହାସଲ ପାଇଁ ଗତିବେଗ ତୀବ୍ରତର ହେବା ଉଚିତ । ବ୍ୟତିକ୍ରମ ସୃଷ୍ଟି ହେବାର ଅର୍ଥ : ଏକ ନିଶ୍ଚିତ ସଫଳତାକୁ ଜାଣି ଜାଣି ଦୂରେଇଦେବା ବ୍ୟତୀତ ଆଉ କିଛି ଫଳ ମିଳିବ ନାହିଁ; ଏହାହିଁ ଥିଲା ତାଙ୍କର ଲକ୍ଷ୍ୟ ।

ସୁଭାଷ ବୋଷ ଓ ବିଠଲଭାଇଙ୍କ ମଧ୍ୟରେ ହୋଇଥିବା ଚୁକ୍ତିର ପ୍ରତିଲିପି ନିମ୍ନରେ ଦିଆଗଲା :

"The events of the last thirteen years have demonstrated that a palitical warfare based on the principle of maximum suffering for ourselves and minimum suffering for our opponents can not possibly lead to success. It is futile to expect that we can over bring about a change of heart in our rulers marely

through our own suffering or by trying to love them. And the latest action of Mahatma Gandhi is suspending the Civil Disobedience Movement is a confession of failure as far as the present method of the Congress is concerned. We are clearly of openion that as a political leader Mahatma Gandhi has failed. The time has therefore come for radical reorganisation of the Congress on a new principle and with a new method. For bringing about this reorganisation a change of leadership is necessary, for it would be unfair to Mahatma Gandhi to expect him evolve or work a programme and method not consistent with his life-long principles. If the Congress as a whole can under go this tansformations, it would be the best course. Failing that a new party will have to be formed within the Congress, composed of all radical elements. Non-co-operation can not be given up but the form of Non-co-operation will have to be changed in to a militant one and the fight far freedom to be waged on all fronts.

Sd/ V. J. Patel
Sd/ Subhas Chandra Bose.
9.5.1933

ଏହାର ଅର୍ଥ ହେଉଛି "ଭାରତୀୟମାନେ ଦୁର୍ବିସହ ଦୁଃଖଯନ୍ତ୍ରଣା ଭୋଗକରିବାବେଳେ ତାଙ୍କର ପ୍ରତିପକ୍ଷ ସାମାନ୍ୟ ଦୁଃଖଭୋଗ କରିବାର ନୀତି ଉପରେ ସଂପ୍ରତି ଯେଉଁ ରାଜନୈତିକ ସଗ୍ରାମ ଗତ ତେର ବର୍ଷ ଧରି ଚାଲିଆସିଛି, ତାହା ବିଶେଷ ଫଳପ୍ରଦ ହୋଇପାରି ନାହିଁ । ଆମ୍ଭମାନଙ୍କର ମର୍ମନ୍ତୁଦ ଦୁଃଖଯନ୍ତ୍ରଣା କିମ୍ବା ତାଙ୍କ ପ୍ରତି ଆମର ଶ୍ରଦ୍ଧା ଯେ ଶାସକମାନଙ୍କର ହୃଦୟ ପରିବର୍ତ୍ତନ କରିପାରିବ, ଏହା ଭାବିବା ବୃଥା । ଅସହଯୋଗ ଆନ୍ଦୋଳନକୁ ମହାତ୍ମା ଗାନ୍ଧୀ ପ୍ରତ୍ୟାହାର କରିନେବା ଅର୍ଥ ପରୋକ୍ଷରେ ସାଂପ୍ରତିକ ପରିସ୍ଥିତିରେ କଂଗ୍ରେସର ଅନୁସୃତ ନୀତିର ବିଫଳତାକୁ ସେ ସ୍ୱୀକାର

କରନେଇଛନ୍ତି । ଆମେ ସ୍ପଷ୍ଟ ଭାବରେ ସୂଚାଇଦେବାକୁ ଚାହୁଁ ଯେ ମହାତ୍ମା ଗାନ୍ଧୀ ଜଣେ ରାଜନୈତିକ ନେତା ହିସାବରେ ବିଫଳ ହୋଇଛନ୍ତି । ବର୍ତ୍ତମାନ ପରିପ୍ରେକ୍ଷୀରେ ଏକ ବୈପ୍ଳବିକ ନୀତି ଏବଂ ନୂତନ ପଦ୍ଧତି ଉପରେ କଂଗ୍ରେସର ପୁନର୍ବିନ୍ୟାସ ଆବଶ୍ୟକ । ଏଥିପାଇଁ ନେତୃତ୍ୱର ପରିବର୍ତ୍ତନ ମଧ୍ୟ ଲୋଡ଼ା; କାରଣ ମହାତ୍ମା ଗାନ୍ଧୀ ଆଜୀବନ ଗ୍ରହଣ କରିଥିବା ନୀତି-ବିରୁଦ୍ଧ କୌଣସି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ପାଇଁ ଆଶା କରିବା ସମୀଚୀନ ହେବ ନାହିଁ । ଯଦି କଂଗ୍ରେସର ଆମୂଳଚୂଳ ରୂପାନ୍ତର ସମ୍ଭବ ହେବ, ତା'ହେଲେ ଏହା ହିଁ ହେବ ଯଥାର୍ଥ ପଦକ୍ଷେପ । ଯଦି ଏହା ସମ୍ଭବ ହେବ ନାହିଁ, ତା'ହେଲେ କଂଗ୍ରେସ ଭିତରେ ଆଶୁ ପରିବର୍ତ୍ତନବାଦୀମାନଙ୍କୁ ନେଇ ଆଉ ଏକ ନୂତନ ଦଳ ଗଠନ କରିବାକୁ ପଡ଼ିବ । ଅସହଯୋଗ ଆନ୍ଦୋଳନକୁ ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରାଯାଇ ନପାରେ; କିନ୍ତୁ ଅସହଯୋଗର ବର୍ତ୍ତମାନ ରୂପକୁ ପରିବର୍ତ୍ତନ କରାଯାଇ ଅଧିକ ଭାବରେ ସଂଘର୍ଷମୂଳକ କରାଯିବ ଏବଂ ସ୍ୱାଧୀନତା ପାଇଁ ସବୁଦିଗରୁ ସଂଗ୍ରାମ ଚାଲୁରଖିବାକୁ ହେବ ।

ସ୍ୱାଃ ବିଠଲଭାଇ ପଟେଲ

ସ୍ୱାଃ ସୁଭାଷଚନ୍ଦ୍ର ବୋଷ"

୧୯୩୪ ମସିହା । ସୁଭାଷ ବୋଷଙ୍କ ପିତା ଜାନକୀନାଥ ସେତେବେଳକୁ ମୃତ୍ୟୁ-ଶଯ୍ୟାରେ ଥାଆନ୍ତି । ସେ ବିଦେଶରେ ଏ ସମ୍ବାଦ ପାଇଲାକ୍ଷଣି ଅଧୀର ହୋଇଉଠିଲେ ଏବଂ ପିତାଙ୍କୁ ଶେଷ-ଶଯ୍ୟାରେ ଦର୍ଶନ କରିବା ପାଇଁ ବ୍ୟସ୍ତ ହେଲେ । ସରକାରଙ୍କ ବିନା ଅନୁମତିରେ ସେ ଭାରତକୁ ଚାଲିଆସିଥିଲେ । ସରକାରୀ ନିୟମର ବିରୁଦ୍ଧାଚରଣ କରିଥିବାରୁ ତାଙ୍କୁ ଦଣ୍ଡଭୋଗ କରିବାକୁ ପଡ଼ିଥିଲା । ନିଜ ଘରେ ତାଙ୍କୁ ନଜରବନ୍ଦୀ ଭାବରେ ରହିବାକୁ ହେଲା ।

୧୯୩୪ ମସିହାରେ ସେ ଇଉରୋପ ପ୍ରତ୍ୟାବର୍ତ୍ତନ କଲେ । ସେ ସେଠାରେ ୧୯୩୬ ମସିହା ପର୍ଯ୍ୟନ୍ତ ରହିଥିଲେ । ଏହି ସମସ୍ତ ମଧ୍ୟରେ ତାଙ୍କର ରାଜନୈତିକ କାର୍ଯ୍ୟକଳାପର ତତ୍ପରତା କମିନଥିଲା । ଅସୁସ୍ଥତା ଭିତରେ ମଧ୍ୟ ସେ ବ୍ୟସ୍ତ ରହୁଥିଲେ । ଭିଏନାରେ ଭାରତୀୟ ଛାତ୍ର-କଂଗ୍ରେସର ଅଧିବେଶନରେ ସେ ଯୋଗ ଦେଇ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । କେବଳ ସେତିକି ନୁହେଁ, ମୁସୋଲିନିଙ୍କ ଦ୍ୱାରା ପରିଚାଳିତ ଏସିଆଟିକ୍ ଛାତ୍ର-ଅଧିବେଶନରେ ସେ ତାଙ୍କର ବହୁଚର୍ଚ୍ଚିତ ଅଭିଭାଷଣ ଦେଇଥିଲେ । ସେତେବେଳକୁ ତାଙ୍କର ଆନ୍ତର୍ଜାତିକ ଖ୍ୟାତି ଯଥେଷ୍ଟ ଭାବରେ ବଢ଼ିଗଲାଣି । ତାଙ୍କ ନୂତନ ନେତୃତ୍ୱ ଆନ୍ତର୍ଜାତିକ ସ୍ତରରେ ସମ୍ମାନିତ ହେଲାଣି । ଭାରତର ସ୍ୱାଧୀନତା-ଆନ୍ଦୋଳନର ସେ ଜଣେ ସୁଯୋଗ୍ୟ ନେତା ହିସାବରେ ସ୍ୱୀକୃତ ହେଲେଣି । ତାଙ୍କର ଅଗ୍ନିମୟୀ ଭାଷା ସମସ୍ତଙ୍କୁ ଆକର୍ଷଣ କରୁଥିଲା । ସୁଭାଷ ବିଶ୍ୱ-ମାନସରେ ଏକ ଆଲୋଡ଼ନ ସୃଷ୍ଟି କରିବା ଦିଗରେ ସମର୍ଥ ହୋଇଥିଲେ । ଭାରତର ସମସ୍ୟାକୁ ବିଶ୍ୱଦରବାରରେ ଉପସ୍ଥାପନ କରିବାର ପ୍ରୟାସ ତାଙ୍କର ଫଳବତୀ ହୋଇଥିଲା ।

ଇଉରୋପର ବହୁ ରାଜନୈତିକ ନେତାମାନଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ସ୍ଥାପିତ ହେଲ ଓ ତାହାହିଁ ଥିଲ ଏକ ଅନୁକୂଳ ପରିବେଶର ଆଶୀର୍ବାଦ । ବିଶ୍ୱଜନମତ ଭାରତ ସପକ୍ଷରେ ପ୍ରଭାବିତ ହେବାର ସୁଯୋଗ ଏହାଦ୍ୱାରା ସୃଷ୍ଟି ହେଲ । ୧୯୩୭ ମସିହାରେ ସେ ପୁଣି ଇଉରୋପ ଯାତ୍ରାକରିଥିଲେ ଏବଂ ବିଦେଶରେ ଥିବା ସମୟରେ ଭାରତୀୟ ଜାତୀୟ କଂଗ୍ରେସର ୫୧ତମ ଅଧିବେଶନର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଗୁଜୁରାଟର ହରିପୁରାଠାରେ ଏହି ଅଧିବେଶନରେ ଯୋଗଦେବାକୁ ସେ ୧୯୩୮ ମସିହାରେ ଭାରତ ପ୍ରତ୍ୟାବର୍ତ୍ତନ କଲେ ।

## ( ୭ )

୧୯୩୮ ମସିହା ଫେବୃଆରୀ ୧୯ ତାରିଖ । ଆଜି ଏକ ଉନ୍ମାଦନାର ଦିନ । ଭାରତୀୟ ମୁକ୍ତି-ସଂଗ୍ରାମର ଇତିହାସ ପାଇଁ ଆଜି ଦିନର ଐତିହାସିକ ଘଟଣା ଏକ ଉଜ୍ଜ୍ୱଳ ଅଧ୍ୟାୟ । ବିଦେଶୀ ସରକାରର ଦାମ୍ଭିକତା ବିରୁଦ୍ଧରେ ଏକ ପ୍ରତ୍ୟକ୍ଷ ଅଭିଯାନ-ମଞ୍ଚରୂପେ ଆଜିର ଏ ସଭାମଞ୍ଚର ଅବଦାନ ରହିଛି । ଶାସକୀୟ ଗର୍ବର ବିରାଟ ଅଚଳ ହିମଖଣ୍ଡକୁ ଟଳାଇବାକୁ ହେବ । ଭାରତୀୟ ଜନତାର ପ୍ରଖର ଉଷ୍ଣ ନିଶ୍ୱାସର ଉତ୍ତାପରେ ତାକୁ ତରଳାଇଦେବାକୁ ହେବ । ସୁଭାଷ ତାଙ୍କର ସଭାପତି ଆସନରେ ଉପବିଷ୍ଟ ହୋଇ ଉତ୍ତେଜନାମୟ ଆତ୍ମୀୟ ଅଭିଭାଷଣ ଆରମ୍ଭ କଲେ ହରିପୁରା କଂଗ୍ରେସ ଅଧିବେଶନରେ :

"ବନ୍ଧୁଗଣ ! ଆପଣମାନେ ମୋତେ ଯେଉଁ ହାର୍ଦ୍ଦିକ ସମ୍ମାନର ସୁଯୋଗଦେବା ପାଇଁ ଏହି ପବିତ୍ର ଅଧିବେଶନର ସଭାପତି ରୂପେ ନିର୍ବାଚନ କରିଛନ୍ତି, ସେଥିପାଇଁ ମୋର ବିନୀତ କୃତଜ୍ଞତା ଜ୍ଞାପନ କରୁଛି । ଭାରତୀୟ ଜାତୀୟ କଂଗ୍ରେସ ପରି ଏକ ମହାନ୍ ମର୍ଯ୍ୟାଦାବନ୍ତ ଅନୁଷ୍ଠାନର ସର୍ବୋଚ୍ଚ ସମ୍ମାନ ଲଭ କରିବା ପାଇଁ ମୁଁ ନିଜକୁ ଯୋଗ୍ୟ ବିବେଚନା କରିପାରୁନାହିଁ । ମୋର ଦେଶବାସୀ ମୋତେ ଏପ୍ରକାର ସମ୍ମାନାସୀନ କରିବା ଭିତରେ ମୁଁ ଅନୁଭବ କରୁଛି ଯେ ଦେଶର ଯୁବଶକ୍ତି ପ୍ରତି ସମ୍ମାନ ଦିଆଯାଇଛି । ଜନ୍ମଭୂମିର ବହୁ ସୁଯୋଗ୍ୟ ଆଲୋକ-ସନ୍ତାନମାନଙ୍କର ଏଇ ଯେଉଁ ଆତ୍ମମୟ ସମ୍ମେଳନ, ମୁଁ ତାର ସଭାପତି ରୂପେ ସମ୍ମାନିତ ଧାରାରେ ଏହାକୁ ପରିଚାଳନା କରିବାପାଇଁ ସଶଙ୍କଚିତ୍ତରେ ସଭାମଞ୍ଚକୁ ଆସିଛି । ଏଥିପାଇଁ ମୁଁ କେତେଦୂର ଯୋଗ୍ୟ, ସେ ପ୍ରଶ୍ନ ମୋ ଭିତରେ ଭୀତି ସଞ୍ଚାର କରିଛି । ମୁଁ ଯେ ବହୁ ଦୋଷ-ଦୁର୍ବଳତାର ସମାହାର, ଏ ଦିଗରେ ମୋର ଆତ୍ମ-

ସଚେତନ ରହନ୍ତୁ । ଆପଣମାନେ ଯେଉଁ ଗୁରୁ ଦାୟିତ୍ୱ ସମ୍ପାଦନ କରିବାପାଇଁ ମୋତେ ସୁଯୋଗ ଦେଇଛନ୍ତି, ତାହା କେବଳ ଆପଣମାନଙ୍କର ଆନ୍ତରିକ ଶ୍ରଦ୍ଧା, ସହଯୋଗ ତଥା ସହାନୁଭୂତି ଦ୍ୱାରା ସମ୍ଭବ ହୋଇପାରିବ ବୋଲି ମୋର ବିଶ୍ୱାସ ଓ ଏକମାତ୍ର ପ୍ରାର୍ଥନା ।

"ସଭାର ପ୍ରାରମ୍ଭରେ ଶ୍ରୀମତୀ ସ୍ୱରୂପରାଣୀ ନେହରୁ, ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ବୋଷ ଏବଂ ଡକ୍ଟର ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ମହାପ୍ରୟାଣରେ ଆମେ ଆମର ଗଭୀର ଶୋକ ପ୍ରକାଶ କରିବା ସହିତ ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରିବା । ଶ୍ରୀମତୀ ସ୍ୱରୂପରାଣୀ ପଣ୍ଡିତ ଜବାହରଲାଲ ନେହରୁଙ୍କର ମା' । ଭାରତର ମୁକ୍ତି-ସଂଗ୍ରାମରେ ତାଙ୍କର ତ୍ୟାଗ, ଯନ୍ତ୍ରଣା, ସେବା ଯେକୌଣସି ବ୍ୟକ୍ତିକୁ ଅଭିଭୂତ କରିବ । ତାଙ୍କର ବିୟୋଗ ଆମ୍ଭମାନଙ୍କୁ ଶୋକାକୁଳ କରିବା ସ୍ୱାଭାବିକ ।

"ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ବୋଷଙ୍କର ସ୍ଥାନ ଆମମାନଙ୍କ ଗହଣରେ ସ୍ୱତନ୍ତ୍ର । ସେ ଥିଲେ ଭାରତମାତାର ଯୋଗ୍ୟତମ ସନ୍ତାନ । ତାଙ୍କରି ପାଇଁ ଭାରତ ଆଜିର ବିଜ୍ଞାନ-ଜଗତ୍‌ରେ ଏକ ସମ୍ମାନନୀୟ ସ୍ଥାନ ଅଧିକାର କରିଅଛି । ସେ ଜଣେ ଉଗ୍ର ଜାତୀୟତାବାଦୀ, ଭାରତର ଜାତୀୟତା ଆନ୍ଦୋଳନର ପ୍ରଧାନ ପୃଷ୍ଠ-ପୋଷକ । ତାଙ୍କର ମହାନ୍ ସେବାରୁ ଆମେ ବର୍ତ୍ତମାନ ବଞ୍ଚିତ ହେଲୁ । ଆମେ ଆଜିର ଶୋକାର୍ତ୍ତ ପରିବେଶରେ ଶ୍ରୀମତୀ ବୋଷଙ୍କୁ ଆମର ହାର୍ଦ୍ଦିକ ସମବେଦନା ଜ୍ଞାପନ କରୁଛୁ ।

"ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର ମୃତ୍ୟୁ ଅକାଳ ଓ ଆକସ୍ମିକ । ତାଙ୍କର ବିଦାୟରେ ଭାରତର ସାହିତ୍ୟାକାଶରୁ ଏକ ଉଜ୍ଜ୍ୱଳତମ ନକ୍ଷତ୍ର ଅପସରିଗଲା । ବଙ୍ଗଳାର ପ୍ରତି ଘରେ ଘରେ ସେ ଥିଲେ ସୁପରିଚିତ । ସେ ଜଣେ ସାହିତ୍ୟିକ ହିସାବରେ ଏ ଦେଶରେ ଯେପରି ଅତି ଉଚ୍ଚ ଆସନ ଲାଭ କରିଛନ୍ତି, ଜଣେ ଦେଶପ୍ରେମୀ ହିସାବରେ ତାଙ୍କର ଖ୍ୟାତି ତା'ଠାରୁ ଅଧିକ ଉଚ୍ଚ । ତାଙ୍କର ବେଦନାଦାୟକ ବିଦାୟରେ କଂଗ୍ରେସର ଅପୂରଣୀୟ କ୍ଷତି ହୋଇଛି । ଯେଉଁ ମହାନ୍ ବ୍ୟକ୍ତିତ୍ୱସମୂହର ଅବସାନ ହେଲା, ତାଙ୍କ ପାଇଁ ଆମେ ଆମ ହୃଦୟର ଗଭୀର ସମ୍ମାନ ଜ୍ଞାପନ କରୁଛୁ ।

"ବନ୍ଦୀ ଅବସ୍ଥାରେ, ଅନଶନ ଅବସ୍ଥାରେ ଓ କାରାଗାରରୁ ମୁକ୍ତିଲାଭ କରିବାର ଅବ୍ୟବହିତ ପୂର୍ବରୁ କିମ୍ବା ପରେ ଅନେକ ଦେଶଭକ୍ତ ଇହଧାମ ତ୍ୟାଗ କରିଛନ୍ତି । ସେମାନଙ୍କର ଆତ୍ମୋତ୍ସର୍ଗ ଏ ଜାତିର ମୁକ୍ତି-ଇତିହାସର ଏକ ଏକ କରୁଣ ଅଧ୍ୟାୟ । ସେହିସବୁ ଅମର ଆତ୍ମାର ସଦ୍‌ଗତି ପାଇଁ ଆମେ କାମନା କରିବା ସହିତ ହୃଦୟର ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

"ମାନବ-ସଭ୍ୟତାର ଇତିହାସପୃଷ୍ଠାରେ, ଆମେ ଯଦି ଦୃଷ୍ଟିନିକ୍ଷେପ କରିବା, ଅସୁମାରି ସାମ୍ରାଜ୍ୟ ଓ ରାଜ୍ୟର ଉତ୍‌ଥାନ-ପତନ ପ୍ରଥମେ ଆମର ଦୃଷ୍ଟିରେ ପଡ଼ିବ । ଅତୀତରେ ପ୍ରାଚ୍ୟ କିମ୍ବା ପାଶ୍ଚାତ୍ୟ ସାମ୍ରାଜ୍ୟସମୂହ ଉନ୍ନତିର ଚରମ ପର୍ଯ୍ୟାୟକୁ

ଯାଇ ତାପରେ ଆସ୍ତେ ଆସ୍ତେ ଅବନତିର ସୋପାନରେ କ୍ରମଶଃ ଖସିଆସିଛନ୍ତି; ଏପରିକି କେତେକଙ୍କର ମଧ୍ୟ ଚିରଦିନ ପାଇଁ ବିଲୟ ଘଟିଛି । ଏହି ବିଶ୍ୱ-ନିୟମର ଅଲଙ୍ଘ୍ୟ ଶକ୍ତିକୁ କେହି ଏଡ଼ାଇଦେଇ ପାରିବେ ନାହିଁ । ଅତୀତର ରୋମ-ସଭ୍ୟତା ଏବଂ ଆଧୁନିକ ସମୟର ତୁର୍କି ତଥା ହଙ୍ଗେରୀ ସଭ୍ୟତାର ଦୃଷ୍ଟାନ୍ତକୁ ଅନୁଧ୍ୟାନ କରାଯାଇପାରେ । ଭାରତୀୟ ସାମ୍ରାଜ୍ୟ, ଯଥା ମୋଗଲ, ଗୁପ୍ତ ଏବଂ ମୌର୍ଯ୍ୟ, ଏ ନିୟମର ପୁନରାବୃତ୍ତି କରିଛନ୍ତି । କୌଣସି ଦିଗରୁ ଏହାକୁ ବ୍ୟତିକ୍ରମ ବୋଲି କୁହାଯାଇ ନପାରେ । ଅଭ୍ୟୁଦୟ, ବିକାଶ, ଏବଂ ବିଲୟ ଭିତରେ ସେ ସବୁ ଲୀନ ହୋଇଯାଇଛି । ଇତିହାସର ଏ କାଳଜୟୀ ରାୟକୁ କେହି ଅବମାନନା କରିନପାରେ । ଏ ମହାନ୍ ସତ୍ୟ ନିଶ୍ଚୟ ଦିନେନାଦିନେ ପ୍ରକଟିତ ହେବ ଏବଂ ବ୍ରିଟିଶ ରାଜୁତିର ନିଶ୍ଚୟ ବିଲୟ ହେବ, ଏଥିରେ ସନ୍ଦେହ ନାହିଁ । ଆଜି ଭାରତ-ଭୂମିରେ ବ୍ରିଟିଶ ସାମ୍ରାଜ୍ୟ ଇତିହାସର ଚତୁର୍ମୁଖୀ ରାସ୍ତା ଉପରେ ଛିଡ଼ାହୋଇଛି । ଏହା ନିଶ୍ଚୟ ଦିନେନାଦିନେ ଭୂଶୁଡ଼ିପଡ଼ିବ । ରୁଷିଆର ଜାର୍ ଶାସନ ଦିନେ ଏଇପରି ଭୁଶୁଡ଼ିପଡ଼ିଥିଲା । କିନ୍ତୁ ତା'ର ଧ୍ୱଂସାବଶେଷରୁ ଜନ୍ମନେଲା ସୋଭିଏତ୍ ସମାଜବାଦୀ ଗଣତନ୍ତ୍ର (Soviet Socialist Republics) । ଇଂରେଜ ସରକାର ଇତିହାସର ଏ ଅଧ୍ୟାୟରୁ କିଛି ଶିକ୍ଷା କରିବା ଉଚିତ । ତେବେ ମୋର ମନେହୁଏ, ବ୍ରିଟେନ ଏକ ସାମ୍ୟବାଦୀ ଦେଶରେ ପରିଣତ ନହେବା ପର୍ଯ୍ୟନ୍ତ ଅନ୍ୟର ସ୍ୱାଧୀନତାକୁ ସମ୍ମାନ ଦେବାର ମହତ୍ତ୍ୱ ଉପଲବ୍ଧି କରିପାରିବନାହିଁ ।

"ବିଶ୍ୱର ପ୍ରତ୍ୟେକ ଶାସନର ମୂଳମନ୍ତ୍ର ହେଉଛି ବିଭାଜନ ଓ ଶାସନ । ବ୍ରିଟିଶ ସରକାର ଏ ନୀତିକୁ ଯେପରି ଦକ୍ଷତାର ସହିତ ପରିଚାଳନା କରୁଛନ୍ତି, ବୋଧହୁଏ ଅନ୍ୟ କୌଣସି ଦେଶ ସେପରି ଢଙ୍ଗରେ ଶାସନ କରିବାକୁ ସମର୍ଥ ହୋଇପାରୁନାହାନ୍ତି । ସବୁବେଳେ, ସବୁକ୍ଷେତ୍ରରେ ବିଭାଜନ ଓ ଶାସନ ଭିତରୁ ଦ୍ୱୈତ-ଶାସନ (Dualism) ମୁଣ୍ଡଟେକିଥାଏ । ଏହା ସବଦା ଆଭ୍ୟନ୍ତରୀଣ ଏକତା ଉପରେ ବାଧା ପକାଇଥାଏ । ଭାରତଶାସନରେ ସେ ବିଭାଜନ ନିତି ବର୍ତ୍ତମାନ ଚାଲିଛି । ଭାରତର ନୂତନ ସଂବିଧାନରେ ସେହି ବିଭାଜନ ଏକ ଅନ୍ୟ ରୂପ ନେଇ ଦେଖାଦେଇଛି । ଭାରତର ବିଭିନ୍ନ ସଂପ୍ରଦାୟର ଲୋକମାନଙ୍କୁ ସ୍ୱତନ୍ତ୍ର କରି ରଖିବାର ପ୍ରୟାସ କରାଯାଇଛି । ଭାରତ ପାଇଁ ଯେଉଁ ସଂବିଧାନ ଭବିଷ୍ୟତରେ ପ୍ରସ୍ତୁତ ହେବ, ତାହା ଯଥେଷ୍ଟ ସାବଧାନତାର ସହିତ ପରୀକ୍ଷିତ ହେବା ଉଚିତ । 'ବିଭାଜନ ଓ ଶାସନ' ନୀତି ଯେକୌଣସି ଶାସକ ପାଇଁ ଏକ ପ୍ରଚ୍ଛନ୍ନ ଆଶୀର୍ବାଦ ହେଲେବି ଏହାର ଅନେକ କୁପରିଣାମ ରହିଛି । ଏହାକୁ ଏଡ଼ାଇଦେବା ସହଜ କଥା ନୁହେଁ । ଏହା ଏପ୍ରକାର ସମସ୍ୟା ସୃଷ୍ଟି କରେ ଓ ଶାସକକୁ ଏପରି ଅସ୍ୱସ୍ତିକର ପରିସ୍ଥିତିରେ ପକାଏ ଯେ ସେ ସେଥିରୁ ମୁକୁଳିବା ସହଜ ନୁହେଁ ।

"ଦୋମୁହାଁ ନୀତିରେ କୌଣସି ଗୋଟିଏ ପକ୍ଷକୁ ସନ୍ତୁଷ୍ଟ କରି ହୁଏନାହିଁ । ଦୁଇ ଭିତରୁ କୌଣସି ଗୋଟିଏକୁ ସମର୍ଥନ ଦେବାକୁ ହୁଏ; କିନ୍ତୁ ଉଭୟର ସ୍ୱାର୍ଥକୁ ଦୃଷ୍ଟି ଦିଆଯାଇ-

ଥିବାର ଅଭିନୟ ଆରମ୍ଭ ହୁଏ । ଆଜି ଭାରତରେ ଯେଉଁ ବିଭେଦ ତଥା ବିଭ୍ରାନ୍ତିର ଫାଟ ସୃଷ୍ଟି କରାଯାଉଛି, ସେଥିରେ ବ୍ରିଟେନ ହିନ୍ଦୁ-ଭାରତକୁ ସମର୍ଥନ କରିବ କି ମୁସଲମାନ-ଭାରତକୁ ସମର୍ଥନ କରିବ, ତାହାହିଁ ତାକୁ ସ୍ଥିର କରିବାକୁ ହେବ ।

"ବ୍ରିଟେନ୍ ତାର ସାଂପ୍ରତିକ ଦୋମୁହାଁ ନୀତିକୁ ପରିହାର କରିବା ଉଚିତ । ଆଜି ବିଶ୍ୱରେ ଯେଉଁ ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ହୁଏନାହିଁ, ସେହି ବିଶାଳ ସାମ୍ରାଜ୍ୟକୁ ଏହି ଦୁର୍ବଳ ନୀତି ରକ୍ଷାକରି ପାରିବ ନାହିଁ । ଏଥିପାଇଁ ତାକୁ ମୂଲ୍ୟ ଦେବାକୁହେବ । ବ୍ରିଟେନ ଅତୀତରେ ତାନେ ନୌଶକ୍ତିରେ ବିଶ୍ୱର ଅଜେୟ ଥିଲା । ଆଜିର ବିଂଶ ଶତାବ୍ଦୀରେ ସେ ପରିସ୍ଥିତି ସଂପୂର୍ଣ୍ଣ ଭାବରେ ବଦଳିଯାଇଛି । ପୃଥିବୀରେ ବର୍ତ୍ତମାନ ଏକ ନୂତନ ଶକ୍ତିର ଅଭ୍ୟୁଦୟ ହୋଇଛି । ବ୍ୟୋମମଣ୍ଡଳରେ ଶକ୍ତିସଞ୍ଚୟର ପାଇଁ ଯେଉଁ ଅଭିଯାନ ଆରମ୍ଭ ହୋଇଛି, ତାହା ବ୍ରିଟେନ ପାଇଁ ଏକ ଉଦ୍‌ବେଗର କାରଣ । ଆଧୁନିକ ସମର-କୌଶଳରେ ଏହା ଯେ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ କରିଛି, ଏହାକୁ ଅସ୍ୱୀକାର କରାଯାଇନପାରେ ।

"ଆଜି ଭାରତ ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ । ଆମେ ଏକ ବୃହତ୍ତମ ରାଷ୍ଟ୍ର ଏବଂ ଆମର ଲୋକସଂଖ୍ୟା ପ୍ରାୟ ୩୫ କୋଟି; ଯାହାକି ସଂଖ୍ୟାରେ ନିଶ୍ଚୟ ବିପୁଳ । ଅତୀତରେ ଆମର ଏହି ବିଶାଳତା ତଥା ବିପୁଳତା ଦୁର୍ବଳତାର ଏକ କାରଣ ଥିଲା; କିନ୍ତୁ ବର୍ତ୍ତମାନ ଏହାହିଁ ଆମ ଆତ୍ମଶକ୍ତିର ନାଭିକେନ୍ଦ୍ରରେ ପରିଣତ ହୋଇଛି । ଆମେ କେବଳ ଏକତା ରକ୍ଷାକରି ଦୁର୍ଜୟ ଶାସକର ସମ୍ମୁଖୀନ ହୋଇପାରିଲେ, ତାହା ଆମ ପାଇଁ ଆଶୀର୍ବାଦର କାରଣ ହେବ । ଭାରତ ଏକ ଏବଂ ଅଭିନ୍ନ । ତା'ର ପ୍ରତ୍ୟେକ ସନ୍ତାନର ଲକ୍ଷ୍ୟ, ଆଶା ଏବଂ ଆକାଙ୍‌କ୍ଷା ଏକ । ଆମେ ଭାରତର ସ୍ୱାଧୀନତା ଚାହୁଁ ଏବଂ ତାହା ସାର୍ବଭୌମ ଗଣତାନ୍ତ୍ରିକ ହେବା ଉଚିତ । ଏଥିରେ ଭାରତର ଦେଶୀୟ ରାଜାମାନେ ସ୍ୱଇଚ୍ଛାରେ ସାମିଲ ହୋଇଯିବା ଉଚିତ । ଆମେ ଏକ 'ଭାରତୀୟ ଭାରତ' ଚାହୁଁ; ଯେଉଁଠାରେ ଭାରତୀୟମାନେହିଁ କେବଳ ଭାରତର ଭାଗ୍ୟ ସହିତ ଜଡ଼ିତ ହେବେ—ଅନ୍ୟର ହସ୍ତକ୍ଷେପ ଆଦୌ ରହିବନାହିଁ ।

"ଭାରତୀୟମାନଙ୍କର ଏକତା ପ୍ରଶ୍ନ ଉଠିଲାବେଳେ ସଂଖ୍ୟାନ୍ୟୂନମାନଙ୍କ ସମସ୍ୟା କଥା ଉଠୁଛି । ଜାତୀୟ କଂଗ୍ରେସ୍ ସେ ଦିଗରେ ବିଶେଷଭାବରେ ଅବହିତ । ଏ ସନ୍ଦର୍ଭରେ ସେ ତା'ର ନୀତି ସ୍ପଷ୍ଟ କରିଦେଇଛି । ଗତବର୍ଷ ୧୯୩୭ ମସିହାରେ ସର୍ବଭାରତୀୟ କଂଗ୍ରେସ କମିଟି ତାର କଲିକତା ଅଧିବେଶନରେ ଏ ସନ୍ଦର୍ଭରେ ଏକ ଐତିହାସିକ ଘୋଷଣା ପ୍ରକାଶ କରିଛି । ସେ ପ୍ରତିଜ୍ଞାବଦ୍ଧ ଯେ ସଂଖ୍ୟାନ୍ୟୂନ ସଂପ୍ରଦାୟର ଉନ୍ନତିକଳ୍ପେ କଂଗ୍ରେସ ଏକାନ୍ତଭାବରେ କାମ କରିବ । ସେମାନଙ୍କର ମୌଳିକ ଅଧିକାର ଅନ୍ୟମାନଙ୍କ ପରି ବଜାୟ ରହିବ ଏବଂ ଜାତୀୟ ଜୀବନର ରାଜନୀତି, ଅର୍ଥନୀତି ଏବଂ ସାଂସ୍କୃତିକ ତଥା ସାମାଜିକ କ୍ରିୟାକଳାପରେ ଅଂଶ ଗ୍ରହଣ ପାଇଁ ଅବାଧ ସ୍ୱାଧୀନତା ରହିବ । କଂଗ୍ରେସ

ଏପରି ଏକ ସ୍ୱାଧୀନ ଏକତାସମ୍ପନ୍ନ ଭାରତ ଗଢ଼ିବୁ; ଯେଉଁଠାରେ କୌଣସି ଜାତି, ଦଳ, ଶ୍ରେଣୀ, ଗୋଷ୍ଠୀ, ସଂପ୍ରଦାୟ, ସଂଖ୍ୟାଗରିଷ୍ଠ କିମ୍ବା ସଂଖ୍ୟାନ୍ୟୁନ ଅନ୍ୟକୁ ଶୋଷଣ କରିବାର ସୁଯୋଗ ପାଇବନାହିଁ । ପ୍ରତ୍ୟେକେ ଭାରତର ସମୂହ କଲ୍ୟାଣପାଇଁ ଏବଂ ଭାରତୀୟ-ମାନଙ୍କର ଉନ୍ନତିକଳ୍ପେ ସହଯୋଗର ସେତୁ ନିର୍ମାଣ କରିବେ । ଏହି ଏକତା ତଥା ପରସ୍ପର ସହଯୋଗର ଅର୍ଥ ଭାରତୀୟ ଜୀବନର ସମୃଦ୍ଧ ପ୍ରକାରଭେଦ ଏବଂ ସାଂସ୍କୃତିକ ବିଭିନ୍ନତାକୁ କୌଣସିମତେ ଚପାଇଦେବା ନୁହେଁ । ବିଭିନ୍ନତା ହିଁ ଭାରତୀୟ ଜୀବନ-ଧାରାର ବୈଶିଷ୍ଟ୍ୟ ଏବଂ ଏହାକୁ ସବୁଦିଗରୁ ରକ୍ଷାକରିବାକୁ ହେବ । ଅନେକତା ଭିତରେ ଏକତାହିଁ ଆମର ଲକ୍ଷ୍ୟ । ଏହା ବ୍ୟକ୍ତି-ସ୍ୱାତଂତ୍ର୍ୟ ତଥା ଅବାଧ ବିକାଶର ସହାୟକ ହେବ । କଂଗ୍ରେସର ମହାନ୍ ଲକ୍ଷ୍ୟକୁ କେତେକ ଉପରୋକ୍ତ ଆଶଙ୍କା ନେଇ କଦର୍ଥ କରିବାକୁ ଚେଷ୍ଟାକରିଛନ୍ତି, ଯାହାହିଁ ଅମୂଳକ । କଂଗ୍ରେସ କମିଟିର ସିଦ୍ଧାନ୍ତ ଭାରତୀୟ ଜୀବନଧାରା ଓ ସଂସ୍କୃତିର ପରିପୋଷକ; କିନ୍ତୁ ପରିପନ୍ଥୀ ନୁହେଁ ।

"ସଂଖ୍ୟାନ୍ୟୁନ ଗୋଷ୍ଠୀର ଧର୍ମ, ସଂସ୍କୃତିଗତ ନିୟମ ଓ ପରିପାଳନ-ବିଧି ଉପରେ କାହାରି ହସ୍ତକ୍ଷେପ କରିବାର ଅଧିକାର ନାହିଁ । ସେମାନେ ବିନା ଭୟ ଓ ପ୍ରଭାବରେ-ଅବାଧରେ ତାହା ପାଳନ କରି ପାରିବେ । ପ୍ରତି କ୍ଷେତ୍ରରେ ସେମାନଙ୍କର ସାହାଯ୍ୟ ସହଯୋଗ ଗ୍ରହଣ କରାଯିବ । ସେ ଭାରତର ପ୍ରତ୍ୟେକଙ୍କ ସହିତ ଏପରି ଭାବରେ ଏକ ହୋଇଯିବାର ସୁଯୋଗ ପାଇବେ, ଯାହାକି ତାଙ୍କ ମନରୁ ସଂଖ୍ୟାନ୍ୟୁନ-ଭାବ ଦୂର କରିଦେଇ ପାରିବ । ଏହାହିଁ ଆମର ସଂକଳ୍ପ ।

"କଂଗ୍ରେସ ସଂଖ୍ୟାନ୍ୟୁନ ଗୋଷ୍ଠୀର ଲୋକମାନଙ୍କ ସାର୍ବଜନୀନ ବିକାଶ ପାଇଁ ଯେପରି ତତ୍ପର, ସମାଜର ସଂଖ୍ୟାଗରିଷ୍ଠ ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ବହୁମୁଖୀ ବିକାଶ ପାଇଁ ସେହିପରି ବଦ୍ଧପରିକର । କଂଗ୍ରେସ ମୋଟଉପରେ ଭାରତୀୟମାନଙ୍କର ରାଜନୈତିକ ତଥା ଆର୍ଥିକ ଅଧିକାରକୁ ଅକ୍ଷୁଣ୍ଣ ରଖିବା ପାଇଁ ପ୍ରତିଜ୍ଞାବଦ୍ଧ । ଯଦି କଂଗ୍ରେସ ତାର କାର୍ଯ୍ୟକ୍ରମରେ ସଫଳ ହୁଏ, ତା'ହେଲେ ସଂଖ୍ୟାନ୍ୟୁନମାନଙ୍କର ଅନ୍ୟ ତୁଳନାରେ ଅଧିକ ଉପକାର ହେବ । ବଞ୍ଚିତ ଶ୍ରେଣୀର ଲୋକମାନେ ବଳଶାଳୀ ଲୋକମାନଙ୍କ ସ୍ୱାର୍ଥ ବିନିମୟରେ ନିଶ୍ଚୟ ଉପକୃତ ହେବେ ।

"ଆଗାମୀ ଦିନଗୁଡ଼ିକ ଆମ ପାଇଁ ଯଥେଷ୍ଟ ଜଟିଳ । ଏହାର ମୁକାବିଲା ପାଇଁ ଆମକୁ ଆମର କେତେକ ଆଭିମୁଖ୍ୟ ବଦଳାଇବାକୁ ପଡ଼ିବ । ଆଗାମୀ ଦିନଗୁଡ଼ିକୁ ଅଧିକ ଉପଯୋଗ କରିବାପାଇଁ ଆମକୁ ଚେଷ୍ଟା କରିବାକୁ ହେବ । ଭାରତର ସ୍ୱାଧୀନତା ହାସଲ ପାଇଁ ଭାରତ ଯେଉଁ ସତ୍ୟାଗ୍ରହ, ଅହିଂସା ଓ ଅସହଯୋଗ ପନ୍ଥା ଅବଲମ୍ବନ କରିଛି, ତାହାକୁ ଅଧିକ ସକ୍ରିୟ କରିବାକୁ ହେବ । ଅଧିକ ଫଳପ୍ରସୂ ହେବା ପାଇଁ ପ୍ରତିରୋଧ-ଶକ୍ତିକୁ ବଢ଼ାଇବାକୁ ପଡ଼ିବ ।

"ଅବଶ୍ୟ ଭୁଲ ହୋଇପାରେ; ମୋର କିନ୍ତୁ ମନେହୁଏ, ଅନେକ କଂଗ୍ରେସ ଲୋକ ଆଜିର ଜାତୀୟ ସଂଗ୍ରାମରେ କଂଗ୍ରେସର ଭୂମିକା ବିଷୟରେ ସେତେ ଅବହିତ ନୁହନ୍ତି । କଂଗ୍ରେସ ନିଶ୍ଚୟ ଶାସନକ୍ଷମତା ହାତକୁ ଆଣିବ, ଭାରତୀୟମାନଙ୍କ ଶାସନ କରିବାର ଗୁରୁଦାୟିତ୍ୱ ବହନ କରିବ ଏବଂ ଜାତୀୟ ସ୍ତରରେ ପୁନର୍ଗଠନକୁ କାର୍ଯ୍ୟକାରୀ କରିବ— ଏହା ହିଁ ତାର ସର୍ବୋତ୍ତମ ଅଭିଳାଷ ତଥା ଲକ୍ଷ୍ୟ ।

"କଂଗ୍ରେସ ଏକଦଳୀୟ ଶାସନପଦ୍ଧତିକୁ ପସନ୍ଦ କରେନାହିଁ । ଗଣତନ୍ତ୍ର ହିଁ ଭାରତର ଶକ୍ତି କେନ୍ଦ୍ର । ଏଠାରେ ବହୁ ଦଳ ରହିବାରେ କୌଣସି ଅସୁବିଧା ନାହିଁ । ଏକ ଦଳର ଏକମୁଖୀ ଶାସନ ଆମେ ଚାହୁଁନାହୁଁ । ଏଠାରେ କୌଣସି ନେତାଙ୍କୁ ବାହାରୁ ଆଣି ଲୋକମାନଙ୍କ ଉପରେ ଲଦି ଦିଆଯିବାର ପ୍ରଶ୍ନ ନାହିଁ । ଜନସାଧାରଣଙ୍କ ମଧ୍ୟରୁ ନେତା ନିର୍ବାଚିତ ହେବେ । ସେମାନେ ଲୋକମାନଙ୍କୁ ନେତୃତ୍ୱ ଦେବେ ।

"ସମାଜବାଦୀ ଢାଞ୍ଚାରେ ଆମେ ଆମର ଉତ୍କଟ ଦାରିଦ୍ର୍ୟ ଓ ନିରକ୍ଷରତା ଦୂର କରିବାକୁ ଚେଷ୍ଟା କରିବୁ ଏବଂ ସୁଷମ ବଣ୍ଟନ ନୀତିକୁ ଅଗ୍ରାଧିକାର ଦେବୁ । ଜାତୀୟ ଏକତା ରକ୍ଷା- କରିବା ପାଇଁ ଆମେ ଭାଷାନୀତିରେ ଏକ ପରିବର୍ତ୍ତନ ଆଣିବୁ । ସବୁଭାଷା ପାଇଁ ଗୋଟିଏ ଲିପି ଗୃହୀତ ହେଲେ ଏକତା ନିଶ୍ଚୟ ଦୃଢ଼ୀଭୂତ ହେବ । ବିଶାଳ ଭାରତ-ଭୂଖଣ୍ଡକୁ ଲୋକମାନଙ୍କର ନିକଟବର୍ତ୍ତୀ କରିବାପାଇଁ ଆମକୁ ଆଧୁନିକ ବିଜ୍ଞାନର ଅବଦାନକୁ ଗ୍ରହଣ କରିବାକୁ ହେବ । ଟେଲିଫୋନ, ରେଡିଓ, ଫିଲ୍ମ୍, ଟେଲିଭିଜନ ମାଧ୍ୟମରେ ଆମେ ସମସ୍ତଙ୍କର ସାମୀପ୍ୟ ପାଇପାରିବା । ଏହାର ପ୍ରସାର ପାଇଁ ବ୍ୟବସ୍ଥା କରାଯିବ । ସାରା ଦେଶରେ ଏକପ୍ରକାର ଶିକ୍ଷାନୀତି ପ୍ରଚଳିତ ହେବ; ଫଳରେ ଭାରତର ଲୋକମାନଙ୍କ ମଧ୍ୟରେ ଏକତ୍ୱବୋଧର ପ୍ରସାର ଘଟିବ । ବିଭିନ୍ନ ରାଜ୍ୟରେ ଆଜି ଭିନ୍ନ ଭିନ୍ନ ଲିପି ପ୍ରଚଳିତ ହେଉଛି; ଦେବନାଗରୀ ଲିପି ଆଜି ଅନେକ ପ୍ରଦେଶରେ ଚଳୁଛି, ତେବେ ବିଜ୍ଞାନସମ୍ମତ ଓ ଲୋକଙ୍କଦ୍ୱାରା ଗୃହୀତ ଏକପ୍ରକାର ଲିପି ପ୍ରଚଳନ ପାଇଁ ଆମକୁ ଚିନ୍ତା କରିବାକୁ ହେବ ।

"ସ୍ୱାଧୀନ ଭାରତର ପୁନର୍ଗଠନ ପାଇଁ ଆମକୁ ଦୁଇଟି ସ୍ତରରେ କାମ କରିବାକୁ ହେବ । ପ୍ରଥମଟି ହେଉଛି ତତ୍କ୍ଷଣାତ୍ ଦୃଷ୍ଟି ଦେବା ସମସ୍ୟାସମୂହ; ଯାହା କି କାଳ-ବିଳମ୍ବ ନକରି କରିବାକୁ ହେବ ଏବଂ ଦ୍ୱିତୀୟ ସୋପାନରେ ଦୀର୍ଘ ସମୟ ଭିତରେ କରାଯିବା କାର୍ଯ୍ୟସୂଚୀ । ଏଥିପାଇଁ ଏକ ଅନୁଧ୍ୟାନ କମିଟି ବସି ପୁନର୍ଗଠନମୂଳକ ବିଷୟଗୁଡ଼ିକୁ ସ୍ଥିର କରିବେ । ତାପରେ ତା'ର ସମାଧାନ ପାଇଁ ନୀତି ଓ ପଦ୍ଧତି ସ୍ଥିର କରାଯିବ ।

"ଜନସଂଖ୍ୟା-ବୃଦ୍ଧି ହିଁ ଭାରତର ଏକ ଉତ୍କଟ ସମସ୍ୟା । ସ୍ୱାଧୀନ ଭାରତର ବିକାଶ- ପଥରେ ଜନସଂଖ୍ୟା ବିସ୍ଫୋରଣ ହିଁ ସ୍ଥାୟୀ ପ୍ରତିବନ୍ଧକ ରୂପେ ମୁଣ୍ଡ ଟେକିବ । ଏହାର ସମାଧାନ ଦିନକରେ, ମାସକରେ କିମ୍ବା ବର୍ଷକ ମଧ୍ୟରେ ସମ୍ଭବ ନୁହେଁ । ଏଥିପାଇଁ ଦୀର୍ଘ ସମୟ ଆବଶ୍ୟକ । ଯେଉଁ ଭାରତ ଦାରିଦ୍ର୍ୟ, କ୍ଷୁଧା, ରୋଗ ଓ ଶୋକର ଚିରଭୂମି

ସେଠାରେ ଲୋକସଂଖ୍ୟା ବୃଦ୍ଧି ଅର୍ଥ ଏହି ଦୁଃସ୍ଥିତିର ବୃଦ୍ଧି । ଆମେ ଜାଣି ଜାଣି ଏ ଦୁର୍ଯୋଗକୁ ଆମନ୍ତ୍ରଣ ଜଣାଇପାରିବୁନାହିଁ । ଆମର ସମସ୍ତ ବିକାଶମୂଳକ ଯୋଜନା ପ୍ରତି ଜନସଂଖ୍ୟା-ବୃଦ୍ଧି ଏକ ଆହ୍ୱାନ । ଏହାର ନିରାକରଣ ପାଇଁ କି ଉପାୟ ଅବଲମ୍ବନ କରାଯିବ, ତାହା ସ୍ଥିର କରିବା ବଡ଼ କଥା ନୁହେଁ; କିନ୍ତୁ ଲୋକମାନଙ୍କୁ ଏହାର କୁପରିଣତି ବିଷୟରେ ଅବହିତ କରିବା ସବୁଠାରୁ ବଳି ବଡ଼ କାମ । ଜନ-ସଚେତନତା ବିନା ଏ ସମସ୍ୟାର ସମାଧାନ ସମ୍ଭବ ନୁହେଁ ।

"ଦେଶରୁ ଦାରିଦ୍ର୍ୟ ଦୂର କରିବା ଆମର ଏକ ବିରାଟ ସମସ୍ୟା । ଏଥିପାଇଁ ଆମର ପ୍ରଚଳିତ ଜମିଜମା ପଦ୍ଧତିକୁ ପରିବର୍ତ୍ତିତ କରିବାର ଆବଶ୍ୟକତା ରହିଛି । ଜମିଦାରୀ ପ୍ରଥାକୁ ଉଚ୍ଛେଦ କରାଯିବା ଉଚିତ । ଶ୍ରମିକଶ୍ରେଣୀର ଲୋକମାନଙ୍କ ପାଇଁ ଅଳ୍ପ ସୁଧରେ କୃଷି-ଋଣ ବ୍ୟବସ୍ଥା କରାଯିବ । ମହାଜନମାନଙ୍କ କବଳରୁ ସେମାନେ ରକ୍ଷାପାଇବେ । ଏକ ଶୋଷଣମୁକ୍ତ କୃଷି-ବ୍ୟବସ୍ଥା ହିଁ ଗାଁ-ଲୋକମାନଙ୍କର ଦାରିଦ୍ର୍ୟମୋଚନ ଦିଗରେ ସହାୟକ ହେବ ।

"ଦେଶର ଆର୍ଥିନୀତିକ ସମସ୍ୟା କେବଳ କୃଷିର ଉନ୍ନତିଦ୍ୱାରା ସମାଧାନ ହୋଇପାରିବ ନାହିଁ । ଏଥିପାଇଁ ଏକ ବିଧିବଦ୍ଧ ସୁପରିକଳ୍ପିତ ଶିଳ୍ପ-ଯୋଜନାର ଆବଶ୍ୟକତା ରହିଛି । କୃଷି ଓ ଶିଳ୍ପାୟନ ଉଭୟେ ପ୍ରଗତି-ପକ୍ଷୀର ଏପାଖ ସେପାଖ ଦୁଇଟି ଡେଣା । ଗୋଟିକୁ ଛାଡ଼ି କେବଳ ଅନ୍ୟଟି ଦ୍ୱାରା ଆମେ ଗନ୍ତବ୍ୟପଥରେ ଅଗ୍ରେଇପାରିବା ନାହିଁ । ଭାରତ ଗୋଟିଏ ଗ୍ରାମବହୁଳ ଦେଶ । ଅନ୍ୟ ସଭ୍ୟ ଦେଶପରି ଏଠାରେ ଆଧୁନିକ ଭାରୀ-ଶିଳ୍ପର ପ୍ରତିଯୋଗିତା ଆରମ୍ଭ ହେବା ଉଚିତ ନୁହେଁ । ଗ୍ରାମ୍ୟଶିଳ୍ପ ଓ କୁଟୀରଶିଳ୍ପର ଆଧୁନିକୀକରଣ କରାଗଲେ ବରଂ ତାହା ଆମର ଗ୍ରାମ୍ୟ ଅର୍ଥନୀତିରେ ଏକ ଅଭ୍ୟୁଦୟ ଯୁଗ ଆରମ୍ଭ କରିବ । ଆମେ କିନ୍ତୁ ଅତୀତରେ ଶିଳ୍ପଯୁଗକୁ ଫେରିଯାଇ ପାରିବୁନାହିଁ । ଆଧୁନିକ ଯୁଗର ସୁଯୋଗ ଓ ବିଜ୍ଞାନର ଅବଦାନକୁ ଆଜିର ଶିଳ୍ପକ୍ଷେତ୍ରରେ ଗ୍ରହଣ କରିବାକୁ ହେବ ।

"ଭାରତର ସ୍ୱାଧୀନତା-ସଂଗ୍ରାମକୁ ସଫଳ ଓ ରଚନାତ୍ମକ କରିବାକୁ ହେଲେ ଆଭ୍ୟନ୍ତରୀଣ ସଂଗଠନ ଶୃଙ୍ଖଳା ପ୍ରତି ଅଧିକ ଦୃଷ୍ଟି ଦେବାକୁ ହେବ । କଂଗ୍ରେସଦଳର ଏକ ସେବାଦଳ ସ୍ଥାୟୀଭାବରେ ରହିବାର ଆବଶ୍ୟକତା ଅଛି । ତରୁଣମାନଙ୍କ ଭିତରୁ ନୂତନ ନେତୃତ୍ୱ ପାଇଁ ତାଲିମ ବ୍ୟବସ୍ଥା କରିବାକୁ ହେବ । ରାଜନୈତିକ କର୍ମୀମାନଙ୍କ ପାଇଁ ମଧ୍ୟ ତାଲିମ ବ୍ୟବସ୍ଥାର ଆବଶ୍ୟକତା ମଧ୍ୟ ଅପରିହାର୍ଯ୍ୟ । କଂଗ୍ରେସ ଭିତରକୁ ନୂତନ ପ୍ରତିଭା ସ୍ୱାଗତ କରାଯିବା ଉଚିତ । ତାଲିମପ୍ରାପ୍ତ କର୍ମୀ ଓ ନୂତନ ପ୍ରତିଭାର ସମବାୟରେ ଭବିଷ୍ୟତ ଭାରତର ନେତୃତ୍ୱ ଗଢ଼ିଉଠିବ ।

"ଭାରତରେ ଜାତୀୟ କଂଗ୍ରେସଦଳ ବ୍ୟତୀତ ଆଉ କେତେକ ଦଳ ଯଥା ଶ୍ରମିକ-ସଂଗଠନ କଂଗ୍ରେସ, କିଷାନସଭା ପ୍ରଭୃତି ଅନୁଷ୍ଠାନ ମଧ୍ୟ ଅଛି । ପ୍ରତ୍ୟେକର କାର୍ଯ୍ୟ-ପଦ୍ଧତି ଭିନ୍ନ ହେଲେ ମଧ୍ୟ ସେମାନଙ୍କ ସହିତ ଜାତୀୟ କଂଗ୍ରେସର ସୁସ୍ଥ ସମ୍ପର୍କ ରହିବା ଉଚିତ ।

"କଂଗ୍ରେସର କର୍ମୀମାନେ ଏହିସବୁ ଅନୁଷ୍ଠାନ ସହିତ ସମ୍ପର୍କ ସ୍ଥାପନ କରିପାରିଲେ ଓ ସେମାନଙ୍କର କାର୍ଯ୍ୟ କଂଗ୍ରେସ ମାଧ୍ୟମରେ କରାଗଲେ, ବିରୋଧ ତଥା ତିକ୍ତତା ହ୍ରାସ ପାଇବ; ଅନୁଷ୍ଠାନ-ଅନୁଷ୍ଠାନ ମଧ୍ୟରେ ସମ୍ପର୍କ ନିବିଡ଼ ହେବ। ସେମାନେ ଅନୁଭବ କରିବେ ଯେ ତାଙ୍କ ଆଦର୍ଶ ମଧ୍ୟ କଂଗ୍ରେସ ଗ୍ରହଣ କରିଛି ଓ ଫଳରେ କଂଗ୍ରେସର ନୀତି ଓ ଆଦର୍ଶ ମଧ୍ୟ ସେମାନଙ୍କ ମଧ୍ୟରେ ପ୍ରତିଫଳିତ ହେବ। ରାଜନୈତିକ ମୁକ୍ତିପାଇଁ ଯେଉଁ ଦଳ, ଅନୁଷ୍ଠାନ ଓ ସଂସ୍ଥା କାମ କରୁଛନ୍ତି, ସେମାନେ ଅନୁଭବ କରିବେ ଯେ କଂଗ୍ରେସ ହେଉଛି ଏକ ସର୍ବଦଳୀୟ ସଂଗଠନ, ଯେଉଁଠାରେ ସର୍ବସାଧାରଣଙ୍କ ଲକ୍ଷ୍ୟ ପୂରଣ ହୋଇପାରିବ।

"ସ୍ୱାଧୀନ ଭାରତ ପାଇଁ ଏକ ନୂତନ ବୈଦେଶିକ ନୀତିର ଆବଶ୍ୟକତା ରହିଛି। ଏଥିପାଇଁ ଆମ୍ଭମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ବିଷୟପ୍ରତି ଦୃଷ୍ଟି ଦେବାକୁ ହେବ। ପ୍ରଥମ କଥା ହେଲା, କୌଣସି ଦେଶର ଆଭ୍ୟନ୍ତରୀଣ ରାଜନୀତିରେ ଆମେ ପ୍ରଭାବିତ ହେବା ଉଚିତ ନୁହେଁ। ପ୍ରତ୍ୟେକ ଦେଶରେ ଯେଉଁ ଲୋକମାନେ ଭାରତର ମୁକ୍ତିସଂଗ୍ରାମକୁ ସମର୍ଥନ କରନ୍ତି, ସେମାନେ, ଯେଉଁ ଦଳର ହୁଅନ୍ତୁ ନା କାହିଁକି, ସେମାନଙ୍କର ନୀତି ତଥା ଆଦର୍ଶ ଯାହା ହେଉନା କାହିଁକି, ସେମାନେ ଆମର ପ୍ରିୟ। ବିଦେଶରେ ଭାରତକୁ ପୂର୍ଣ୍ଣରୂପେ ପରିଚିତ କରିବାପାଇଁ ଆମ୍ଭମାନଙ୍କୁ ବୈଦେଶିକ ପ୍ରଚାରମାଧ୍ୟମ, ଭାରତରେ ପ୍ରସ୍ତୁତ ଫିଲ୍ମ୍ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ସାହାଯ୍ୟ ନେବାକୁ ହେବ। ଚୀନ ଅତୀତରେ କେବଳ ତାର କଳା ପ୍ରଦର୍ଶନୀମାଧ୍ୟମରେ ଇଉରୋପରେ ଅତ୍ୟନ୍ତ ପରିଚିତ ହୋଇପାରିଥିଲା। ଆମେ ସେ ଅନୁଭୂତିରୁ କିଛି ଶିକ୍ଷା କରିବା ଉଚିତ।

"ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ଏକ ଶକ୍ତିଶାଳୀ ମାଧ୍ୟମ। ବାହ୍ୟ-ଜଗତ୍ ସହିତ ଭାରତକୁ ପରିଚିତ କରାଇବାକୁ ହେଲେ ଆମ୍ଭମାନଙ୍କୁ ସେମାନଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ କରିବାକୁ ହେବ। ବିଦେଶରେ ଥିବା ଛାତ୍ରମାନେ ଆମ ତରଫରୁ ଏହି କାମ କରିପାରନ୍ତି। ବିଦେଶରେ ଥିବା ଆମର ଛାତ୍ରମାନଙ୍କ ସହିତ ଭାରତୀୟ ଜାତୀୟ କଂଗ୍ରେସର ସଂପର୍କ ନିବିଡ଼ ଭାବରେ ରହିବା ଉଚିତ। ଭାରତୀୟ ସାଂସ୍କୃତିକ ଜୀବନ ବିଷୟରେ ବିଶ୍ୱବାସୀ ସଚେତନ ହେବା ଦରକାର।

"ଯେଉଁମାନେ ଦେଶପ୍ରେମମୂଳକ ଅପରାଧ ପାଇଁ ବ୍ରିଟିଶ ସରକାରଙ୍କ ଦ୍ୱାରା କାରାଗାର-ଜୀବନ ଯାପନ କରୁଛନ୍ତି, ଯେଉଁମାନଙ୍କ ଜୀବନ କାରୁଣ୍ୟଭରା ଓ କ୍ଷତାକ୍ତ, ସେମାନଙ୍କ ପ୍ରତି ଆମର କଣ କିଛି କର୍ତ୍ତବ୍ୟ ନାହିଁ ? କାରାଗାରରୁ ମୁକ୍ତିଲାଭ କରି ଯେଉଁମାନେ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ରୋଗାକ୍ରାନ୍ତ ହୋଇ ଫେରିଛନ୍ତି, ଯେଉଁମାନଙ୍କ ମୁଖରେ ଅଳ୍ପ ବି କ୍ଷୁଧାର ଚିହ୍ନ ଫୁଟିଉଠୁଛି, ସେମାନଙ୍କ ସେବାପାଇଁ ଆମ୍ଭମାନଙ୍କୁ ସାହାଯ୍ୟ କରିବାକୁ ହେବ। ଏହା ବୋଧହୁଏ ଆମର ସର୍ବୋତ୍ତମ କର୍ତ୍ତବ୍ୟ।

"ମୋର ବକ୍ତବ୍ୟ ଶେଷ କରିବା ପୂର୍ବରୁ ମୁଁ ସମସ୍ତଙ୍କର ହୃଦୟର କଥା କହିବାକୁ ଚାହେଁ ଯେ ମହାତ୍ମା ଗାନ୍ଧୀ ଏକ ଦୀର୍ଘ ନିରାମୟ ଜୀବନର ଅଧିକାରୀ ହୁଅନ୍ତୁ ଓ ତାଙ୍କର

ନେତୃତ୍ୱ ଆମ୍ଭମାନଙ୍କୁ ପଥପ୍ରଦର୍ଶନ କରୁ । ଭାରତୀୟ ମୁକ୍ତି-ସଂଗ୍ରାମ ସମସ୍ତ ପ୍ରକାର ଅଭ୍ରାନ୍ତିରୁ ମୁକ୍ତ ହୋଇ ଆଗେଇବା ପାଇଁ, ଆମେ ଗାନ୍ଧୀଜୀଙ୍କର ଉପସ୍ଥିତି କାମନା କରୁ । ଭାରତର ଏହି ଐତିହାସିକ ସଂଗ୍ରାମ କେବଳ ଭାରତ ପାଇଁ ନୁହେଁ; ବରଂ ସାରା ବିଶ୍ୱର ମାନବ-ସମାଜ ପାଇଁ ଅଭିପ୍ରେତ । ଭାରତର ମୁକ୍ତି ଅର୍ଥ ସାରା ମାନବ-ସମାଜର ମୁକ୍ତି ।

ବନ୍ଦେ ମାତରଂ ।"

ହରିପୁରା କଂଗ୍ରେସ ଅଧିବେଶନ ତାଙ୍କ ଜୀବନର ଏକ ସ୍ମରଣୀୟ ଘଟଣା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହା ମଧ୍ୟ ଏକ ଉଜ୍ଜ୍ୱଳ ଅଧ୍ୟାୟ । ହରିପୁରା ଅଧିବେଶନରେ ତାଙ୍କର ହୃଦ୍‌ବୋଧ ହେଲା ଯେ ଜାତୀୟ ଯୋଜନା କମିଟି ( National Planning Committee ) ଗଠନ କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି । ସେ ସେହି ଅନୁସାରେ ଏହି କମିଟି ଗଠନ କଲେ ଏବଂ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ତାର ଚେୟାରମ୍ୟାନ ରୂପେ ଅବସ୍ଥାପିତ କଲେ । ସେ ଥିଲେ ଏ କମିଟିର ଆବାହକ ।

ଭାରତୀୟ ଜାତୀୟ କଂଗ୍ରେସର ସଭାପତି ରୂପେ ତାଙ୍କର କାର୍ଯ୍ୟକାଳ ଶେଷ ହୋଇଗଲା ଏବଂ ସେ ଦ୍ୱିତୀୟଥର ପାଇଁ ସଭାପତି ହେବାକୁ ଚେଷ୍ଟାକଲେ । ତାଙ୍କର ଧାରଣା, ସଭାପତି ଭାବରେ ଗୋଟିଏ ବର୍ଷ ଭିତରେ କୌଣସି ପ୍ରକାରର ରଚନାତ୍ମକ କାର୍ଯ୍ୟ କରାଯାଇ-ପାରେନା । କଂଗ୍ରେସ ତଥା ଜନ୍ମଭୂମିର ଅଧିକ କିଛି ସେବା କରିବା ନିମିତ୍ତ ସେ ଦ୍ୱିତୀୟ ବାର ସଭାପତି ପଦପାଇଁ ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ମହାତ୍ମା ଗାନ୍ଧୀ ସୁଭାଷଙ୍କ ଏ ଇଚ୍ଛାକୁ ପୂରଣ କରିବାକୁ ଚାହିଁଲେ ନାହିଁ । ପଟ୍ଟାଭି ସୀତାରାମାୟାଙ୍କୁ ସେ ଏଥିପାଇଁ ସ୍ଥିର କଲେ । ଏହି ସିଦ୍ଧାନ୍ତ ସୁଭାଷଙ୍କ ମନରେ ଗଭୀର ଆଘାତ ଦେଲା ଓ ମହାତ୍ମା ଗାନ୍ଧୀ ତଥା ସୁଭାଷ ଏ ଉଭୟଙ୍କ ମଧ୍ୟରେ ତୀବ୍ର ମତଭେଦ ସୃଷ୍ଟି ହେଲା ।

କଂଗ୍ରେସର ଦୁଇ ତୁଙ୍ଗ ନେତାଙ୍କ ଭିତରେ ଆଦର୍ଶଗତ ଲଢ଼େଇ ।

ଏହି ଅସ୍ୱସ୍ତିକର ପରିସ୍ଥିତି ଅନେକ ଶାନ୍ତିକାମୀ କଂଗ୍ରେସ ବ୍ୟକ୍ତିଙ୍କୁ ଆଦୌ ଭଲ ଲାଗିଲାନାହିଁ । ସେମାନେ କଂଗ୍ରେସର କାର୍ଯ୍ୟକାରୀ କମିଟିରୁ କେହି କେହି ଇସ୍ତଫା ଦେଲେ । ଦ୍ୱିତୀୟଥର ପାଇଁ ସୁଭାଷ ନିର୍ବାଚନ ଲଢ଼ିଲେ ଓ ଜୟଯୁକ୍ତ ମଧ୍ୟ ହେଲେ । ଏହି ପରିସ୍ଥିତି କଂଗ୍ରେସ ସଂଗଠନକୁ ଏକ ନୂତନ ମୋଡ଼ ଦେଇଥିଲା । କଂଗ୍ରେସ ଭିତରେ ଥିବା ଦକ୍ଷିଣପନ୍ଥୀ ତଥା ବାମପନ୍ଥୀ ମଧ୍ୟରେ ଗୋଟାଏ ଫାଟ ସୃଷ୍ଟି ହେଲା । ବର୍ତ୍ତମାନ ପରିସ୍ଥିତିରେ କଂଗ୍ରେସର କାର୍ଯ୍ୟକାରୀ କମିଟିରୁ ପ୍ରାୟ ସମସ୍ତ ସଭ୍ୟ ନିଜନିଜର ଇସ୍ତଫାପତ୍ର ଦେଇଦେଲେ । କଂଗ୍ରେସରେ ବିଭାଜନ ଆରମ୍ଭ ହୋଇଗଲା । ମହାତ୍ମା ଗାନ୍ଧୀ ଓ ଜବାହରଲାଲ ପ୍ରଭୃତି ଦକ୍ଷିଣପନ୍ଥୀମାନେ ସୁଭାଷଙ୍କର ବାମପନ୍ଥୀ ବିଚାରଧାରାକୁ ଗ୍ରହଣ କଲେନାହିଁ । ପ୍ରଥମେ ସୁଭାଷ ଓ ଜବାହରଲାଲ କିନ୍ତୁ ସମଚିନ୍ତକ ଥିଲେ । ମହାତ୍ମା ଗାନ୍ଧୀଙ୍କର ବ୍ୟକ୍ତିତ୍ୱ ପ୍ରତି ଜବାହରଲାଲ ପରେ ଆକର୍ଷିତ ହୋଇଥିଲେ ।

୧୯୩୯ ମସିହା ମାର୍ଚ୍ଚ ମାସ । ଏଥିଭିତରେ କଂଗ୍ରେସର ୫୨ତମ ବାର୍ଷିକ ଅଧିବେଶନ ମଧ୍ୟପ୍ରଦେଶର ତ୍ରିପୁରୀଠାରେ ଅନୁଷ୍ଠିତ ହେଲା । ସଭାପତି ରୂପେ ଏହି ଅଧିବେଶନ ପରିଚାଳନା କରିବା ସୁଭାଷଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ସେ ସେତେବେଳକୁ ଶାରୀରିକ ଅସୁସ୍ଥତା ଭିତରେ ଗତିକରୁଥିଲେ । ବ୍ରିଟିଶ ସରକାର ଛଅ ମାସ ମଧ୍ୟରେ ଭାରତର ଶାସନକ୍ଷମତା ହସ୍ତାନ୍ତର କରିବା ପାଇଁ କଂଗ୍ରେସ ଏକ ଚରମପତ୍ର ଦେବାକୁ ସୁଭାଷ ସୁପାରିଶ କଲେ ମଧ୍ୟ ମହାତ୍ମା ଗାନ୍ଧୀ ଓ ଜବାହରଲାଲ ନେହେରୁ ତ୍ରଭୃତ ଏ ଯୁକ୍ତିକୁ ଗ୍ରହଣ କଲେ ନାହିଁ । କଂଗ୍ରେସ ସଂଗଠନ ମଧ୍ୟ ଏହାକୁ ଗ୍ରହଣ କରିପାରିଲା ନାହିଁ ।

ସୁଭାଷ ଏପ୍ରକାର ଚରମ ପନ୍ଥାର ଆଶ୍ରୟ ନେବା ଭିତରେ ତାଙ୍କର ଅନ୍ୟ ଏକ ତୀବ୍ର ମନୋଭାବ ଲୁଚିରହିଥିଲା । ସେ ଭାବୁଥିଲେ, ଛ'ମାସ ମଧ୍ୟରେ ପୂର୍ଣ୍ଣ-ସ୍ୱରାଜ ନମିଳିଲେ ଭାରତ ତୁନିତାନି ହୋଇ ବସିରହିବ ନାହିଁ । ସ୍ୱାଧୀନତା ସଂଗ୍ରାମକୁ କ୍ଷିପ୍ରତର କରିଯିବା ଦରକାର ହେଲେ ଯୁଦ୍ଧର ଆଶ୍ରୟ ନେବାକୁ ହେବ । ଭାରତ ପ୍ରତି ଯେଉଁ ରାଷ୍ଟ୍ରର ସହାନୁଭୂତି ଅଛି ଏବଂ ଯେଉଁମାନେ ବ୍ରିଟିଶ-ବିରୋଧୀ, ସେମାନଙ୍କଠାରୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ନେଇ ଭାରତ ତାର ଲକ୍ଷ୍ୟ ପୂରଣ କରିବ ।

ସୁଭାଷ ତ୍ରିପୁରୀଠାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ସକ୍ରିୟ ଅଂଶ ଗ୍ରହଣ କରିପାରିନଥିଲେ ମଧ୍ୟ ସଭାପତି ଅଭିଭାଷଣ ପ୍ରସଙ୍ଗରେ କହିଥିଲେ :

"ସ୍ୱରାଜ-ଲାଭ ପାଇଁ ଆମର ଯେଉଁ ଅଭିଯାନ ଆରମ୍ଭ ହୋଇଛି, ତାହା ବର୍ତ୍ତମାନ ଏପରି ଅନୁକୂଳ ମୁହୂର୍ତ୍ତର ସମ୍ମୁଖୀନ ହୋଇପାରିଛି; ଯାହାକି ଭାରତର ଜାତୀୟ ଇତିହାସରେ ଅଭୂତପୂର୍ବ । ବର୍ତ୍ତମାନ ଆମ୍ଭମାନଙ୍କ ପାଇଁ ଆନ୍ତର୍ଜାତିକ ପରିସ୍ଥିତି ଅତ୍ୟନ୍ତ ଉତ୍ସାହପ୍ରଦ । ଆଜିର ବିଶ୍ୱ ପରିସ୍ଥିତି ଆମ ପାଇଁ ଯେଉଁ ସୁଯୋଗର ବଳୟ ରଚନା କରିଛି, ଆମେ ତାର ସଦୁପଯୋଗ କରିବା ଉଚିତ । ଏ ଦିଗରେ ଆମେ ଚରମ ଆଶାବାଦୀ ।

"ବିଶ୍ୱ-ରାଜନୀତିରେ ବ୍ରିଟିଶ୍‌ମାନଙ୍କର ତଥାକଥିତ ଭୂମିକା ସେତେ ଅନୁକୂଳ ନୁହେଁ । ସେମାନେ ନିଜକୁ ସବୁଦିଗରୁ ନିରାପଦ ଭାବୁନାହାନ୍ତି । ଏହି ଦୁର୍ବଳ ମାନସିକ ମୁହୂର୍ତ୍ତରୁ ଆମେ କିଛି ଫାଇଦା ଉଠାଇବା ଉଚିତ । ଆମର ଜାତୀୟ ଦାବୀକୁ କଠୋର ଭାବରେ ତାଙ୍କ ଉପରେ ଲଦିଦେଲେ, ସେମାନେ ନିଶ୍ଚୟ ପରିସ୍ଥିତିର ତାଡ଼ନାରେ ସବୁ ମାନିଯିବେ । ଭାରତ ମୁକ୍ତିଲାଭ କରିବାର ପଥ ସହଜ ଓ ସୁଗମ ହେବ ।

"ଆଜି ଲକ୍ଷ୍ୟ ହାସଲ ପାଇଁ ଭାରତବ୍ୟାପୀ ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହର ଆବଶ୍ୟକତା ରହିଛି । ଇଂରେଜମାନଙ୍କ ବିରୁଦ୍ଧରେ ଏହି ଗଣ-ଆନ୍ଦୋଳନକୁ ତୀବ୍ରତର କରିଯିବା ଉଚିତ । ବ୍ରିଟିଶ ସରକାର ଏପ୍ରକାର ଏକ ଦେଶବ୍ୟାପୀ ଆନ୍ଦୋଳନର ସମ୍ମୁଖୀନ ହେବାପାଇଁ ବର୍ତ୍ତମାନ ପରିସ୍ଥିତିରେ ପ୍ରସ୍ତୁତ ନୁହେଁ ।

"କଂଗ୍ରେସ ଭିତରେ କେତେକ ବନ୍ଧୁ ଏହି ମତକୁ ଗ୍ରହଣ କରିପାରୁନାହାନ୍ତି । ସେମାନେ ଅତ୍ୟନ୍ତ ନୈରାଶ୍ୟବାଦୀ ! ତାଙ୍କର ଧାରଣା, ବ୍ରିଟିଶ ସରକାରକୁ ଏପ୍ରକାର ଏକ ଅସୁବିଧାର ସମ୍ମୁଖୀନ କରାଇବାର ସମୟ ଏପର୍ଯ୍ୟନ୍ତ ଆସିନାହିଁ । ଏ ପ୍ରକାର ଚରମ ବ୍ୟବସ୍ଥା କରିବା ନିଶ୍ଚିତ ଭାବରେ ବୋକାମି ହେବ । ପରିସ୍ଥିତିକୁ ପ୍ରତ୍ୟେକ ଦିଗରୁ ଅନୁଧ୍ୟାନ କରିଥିଲେ ସେମାନେ ଏପରି କହନ୍ତେନାହିଁ । ସେମାନେ ବାସ୍ତବ ଦୃଷ୍ଟିକୋଣରୁ ଏହା ବିଚାର କରି-ନାହାନ୍ତି । ମୋ ମତରେ ନୈରାଶ୍ୟର ଟିକିଏମାତ୍ର କାରଣ ନାହିଁ । ବର୍ତ୍ତମାନ ଆଠଟି ପ୍ରଦେଶରେ କଂଗ୍ରେସ କ୍ଷମତାରେ ଅଛି । ଆମ ଜାତୀୟ ଅନୁଷ୍ଠାନର ସାମର୍ଥ୍ୟ ତଥା ମହତ୍ତ୍ୱ ଯଥେଷ୍ଟ ଉଚ୍ଚରେ । ବ୍ରିଟିଶ୍-ଭାରତରେ ଜନ-ଆନ୍ଦୋଳନ ଯଥେଷ୍ଟ ଅଗ୍ରଗତି କରିଛି । ଆଶ୍ଚର୍ଯ୍ୟର କଥା, ଆଜି ମଧ୍ୟ ଭାରତର ଦେଶୀୟ ରାଜ୍ୟଗୁଡ଼ିକରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଛି । ଏ ପ୍ରକାର ସୁଯୋଗ ଓ ପରିବେଶ ତଥା ଅନୁକୂଳତାର ଆଶୀର୍ବାଦ ଜାତୀୟ ଇତିହାସରେ ବିରଳ । ଚରମ ପଦକ୍ଷେପ ନେବାର ଏହି ମାହେନ୍ଦ୍ର ମୁହୂର୍ତ୍ତିକୁ ଛାଡ଼ିଦେବା ଆଦୌ ସଙ୍ଗତ ହେବନି । ଏ ମୁହୂର୍ତ୍ତି ସବୁବେଳେ ଆସେନା । ସମସ୍ତ ବିଭିନ୍ନତା ଭୁଲି, ଏକତାସୂତ୍ରରେ ଆବଦ୍ଧ ହୋଇ ଆମେ ଯଦି ବର୍ତ୍ତମାନ ପରିସ୍ଥିତିର ମୁକାବିଲା କରିପାରିବା, ତା'ହେଲେ ସ୍ୱରାଜଲାଭର ନିକଟବର୍ତ୍ତୀ ହୋଇପାରିବା । ଆଜି କଂଗ୍ରେସ ଆକାଶରେ ଯେଉଁ କଳାମେଘ ଦେଖାଦେଇଛି, ତାହା ଏକ ଚଳମେଘ; ବେଶି ସମୟ ତାହା ରହିବନାହିଁ ।"

ସୁଭାଷ ଯେ ବ୍ରିଟେନରେ ସୃଷ୍ଟି ହୋଇଥିବା ଦୁଃସ୍ଥିତିର ସୁଯୋଗ ନେଇ ଭାରତର ସ୍ୱାଧୀନତା ପାଇଁ ଏକ ସଶସ୍ତ୍ର ବିଦ୍ରୋହର ସୁଯୋଗ ନେବେ, ଏହା ତାଙ୍କର ଭାଷଣରୁ ପ୍ରାୟ ଜଣାପଡ଼ୁଥିଲା । ମହାତ୍ମା ଗାନ୍ଧି ଏ ପ୍ରକାର ମନୋଭାବକୁ ପସନ୍ଦ କରୁନଥିଲେ । ଯେକୌଣସି ଉପାୟରେ ଲକ୍ଷ୍ୟ ହାସଲକୁ ସେ ଖୋଜୁନଥିଲେ । ସମ୍ମାନଜନକ ଢଙ୍ଗରେ ଏହାର ସମାଧାନ ତାଙ୍କର ଇଚ୍ଛା । ଏଥିପାଇଁ ଧୈର୍ଯ୍ୟ ଓ ସମୟର ଆଶୀର୍ବାଦକୁ ସେ ଅପେକ୍ଷା କରିଥିଲେ । ହୃଦୟ ପରିବର୍ତ୍ତନ ଦ୍ୱାରା ସ୍ୱାଧୀନତା ନିଶ୍ଚୟ ମିଳିବ, ଏହା ଥିଲା ତାଙ୍କର ଲକ୍ଷ୍ୟ । ଦୁର୍ଯୋଗର ସୁଯୋଗ ନେବା ମହାତ୍ମା ଗାନ୍ଧୀଙ୍କର ନୀତିବିରୁଦ୍ଧ ଥିଲା ।

୧୯୩୯ରେ କଂଗ୍ରେସ ଅଧିବେଶନ କଲିକତାରେ ବସିବାବେଳେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଭିତରେ ମିଳାମିଶାପାଇଁ ହୋଇଥିବା ସମସ୍ତ ଚେଷ୍ଟା ବିଫଳ ହେଲା ।

୧୯୩୯ ମସିହା । ଜାତୀୟ କଂଗ୍ରେସର ଇତିହାସରେ ଗୋଟିଏ ନୂତନ ଅଧ୍ୟାୟ ସୃଷ୍ଟି ହେବାକୁ ଯାଉଛି । କଂଗ୍ରେସରୁ ଆସ୍ତେ ବାମପନ୍ଥୀମାନଙ୍କର କର୍ତ୍ତୃତ୍ୱ କମି କମି ଯାଉଥାଏ; ଦକ୍ଷିଣପନ୍ଥୀମାନଙ୍କର ଆଧିପତ୍ୟ ବଢ଼ିବାକୁ ଲାଗିଥାଏ । ସମସ୍ତେ ଭାବୁଥାନ୍ତି, ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱ ତଥା ଆଦର୍ଶ ଅନୁସାରେ କଂଗ୍ରେସର ନୀତି ନିର୍ଦ୍ଧାରିତ ହେଉ । ଚତୁର୍ଦ୍ଦିଗରୁ ସୁଭାଷଙ୍କ ମନ ଉପରେ ତୀବ୍ର ମାନସିକ ଚାପ ପଡ଼ୁଥାଏ । ସେ ଦେଖିଲେ ଅନ୍ତର୍ଦ୍ୱନ୍ଦ୍ୱ ପ୍ରବଳ ହେଲେ କଂଗ୍ରେସ ସଂଗଠନ ଦୁର୍ବଳ ହେବ ଓ ତାହାହିଁ ହେବ ସ୍ୱାଧୀନତା-ଲାଭ ପଥରେ ଚରମ ଅନ୍ତରାୟ । ଇଂରେଜମାନେ ଭାରତୀୟମାନଙ୍କର ଦୁର୍ବଳ ମୁହୂର୍ତ୍ତର ନିଶ୍ଚୟ ସୁଯୋଗ ନେବେ । ସୁଭାଷ କଂଗ୍ରେସ ସଭାପତି ପଦରୁ ଶେଷରେ ଇସ୍ତଫା ଦେଲେ ।

୧୯୩୯ ମସିହା ମେ ମାସରେ ସେ କଂଗ୍ରେସ ମଧ୍ୟରେ ଫରୱାର୍ଡ ବ୍ଲକ ପ୍ରତିଷ୍ଠା କଲେ । ଦେଶର ଯୁବଗୋଷ୍ଠୀ, ଛାତ୍ରସମାଜ, ଶ୍ରମିକ ସଂଗଠନ ତଥା ବାମପନ୍ଥୀ ବନ୍ଧୁମାନେ ତାଙ୍କୁ ଏ ଦିଗରେ ସମର୍ଥନ ଜଣାଇବେ ବୋଲି ସେ ଆଶା କରିଥିଲେ । ଏହି ନୂତନ ସାଂଗଠନିକ ବିନ୍ୟାସ କଂଗ୍ରେସ ଭିତରେ ଦକ୍ଷିଣପନ୍ଥୀ ପ୍ରଭାବକୁ କ୍ଷୁଣ୍ଣ କରିବା ଦିଗରେ ସହାୟକ ହେବ ଓ ସେ ଶେଷରେ ଅବିଭକ୍ତ କଂଗ୍ରେସର ସମର୍ଥନ ଲାଭକରି ପାରିବେ, ଏହାହିଁ ଥିଲା ତାଙ୍କର ଦୃଢ଼ ଧାରଣା । ଯଦି କଂଗ୍ରେସର ପୂର୍ଣ୍ଣ ସମର୍ଥନ ମିଳିବା ଦିଗରେ ଅସୁବିଧା ସୃଷ୍ଟି ହେବ, ତା ହେଲେ ସେ ସମଭାବାପନ୍ନ ବନ୍ଧୁମାନଙ୍କୁ ନେଇ ନିଜର ଲକ୍ଷ୍ୟପୂରଣ ଦିଗରେ ସମର୍ଥ ହେବେ । ଶ୍ରୀ ମାଧବ ଶ୍ରୀହରିଆନ୍ନେ, ଡାକ୍ତର ସତ୍ୟ ପାଲ, ଶ୍ରୀନିବାସ ଆୟାଙ୍ଗାର, ସର୍ଦ୍ଦାର ଶାର୍ଦ୍ଦୁଳ ସିଂ ଓ ଶ୍ରୀ କେ. ଏଫ୍. ନରିମ୍ୟାନ୍ ପ୍ରଭୃତିଙ୍କୁ ନେଇ 'ନିଖିଳ ଭାରତ ଫରୱାର୍ଡ ବ୍ଲକ' ଗଠିତ ହେଲା ।

ଫରୱାର୍ଡ ବ୍ଲକ ଗଠନର ଦୁଇଟି ପ୍ରଧାନ ଲକ୍ଷ୍ୟ ଥିଲା । ପ୍ରଥମଟି ହେଉଛି, କଂଗ୍ରେସର ସମସ୍ତ କାର୍ଯ୍ୟକ୍ରମ ବୈପ୍ଳବିକ ପନ୍ଥାରେ ସୁଚାରୁ ରୂପେ ସମ୍ପାଦନ କରିବା ଓ ଦ୍ୱିତୀୟଟି ହେଉଛି, ଭାରତର ଆଶୁ ମୁକ୍ତିପାଇଁ ସମସ୍ତ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା । ଫରୱାର୍ଡ ବ୍ଲକ ଏପରି ଏକ ରାଜନୈତିକ ମଞ୍ଚ ହେବ, ଯେଉଁଠାରେ ପ୍ରତ୍ୟେକ ପ୍ରଗତିଦଳ ଓ କଂଗ୍ରେସର ବାମପନ୍ଥୀ ବନ୍ଧୁମାନେ ଭାରତର ମୁକ୍ତିପାଇଁ ସୁସଂହତ ଢଙ୍ଗରେ କାର୍ଯ୍ୟ କରି ପାରିବେ । ଯେଉଁମାନଙ୍କର ଏହାର ଚିନ୍ତାଧାରା ଉପରେ ବିଶ୍ୱାସ ଅଛି, ସେମାନେ ଏହି ଦଳଭୁକ୍ତ ହେବାକୁ ଚାହିଁଲେ ସେମାନଙ୍କ ପାଇଁ ଦ୍ୱାର ଉନ୍ମୁକ୍ତ ରହିବ ।

କଂଗ୍ରେସର ଗତାନୁଗତିକ କାର୍ଯ୍ୟକ୍ରମ ସ୍ୱାଧୀନତା ଲାଭପାଇଁ ବିଶେଷ ଅନୁକୂଳ ନୁହେଁ । ଏହାକୁ ବିପ୍ଳବାତ୍ମକ ରୂପ ନ ଦେବା ପର୍ଯ୍ୟନ୍ତ ଏହା ଫଳପ୍ରସୂ ହୋଇପାରିବନାହିଁ । ସାରା ଦେଶରେ ଏକ ଅନାହୂତ ଆନ୍ଦୋଳନ ବ୍ୟାପକ କରିବାପାଇଁ ଫରୱାର୍ଡ ବ୍ଲକ କାମ କରିବ । ସର୍ବଭାରତୀୟ ସ୍ତରରେ ଏକ କଂଗ୍ରେସ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରିବା ଏହାର ଲକ୍ଷ୍ୟ । ଫରୱାର୍ଡ ବ୍ଲକ ସାମ୍ରାଜ୍ୟବାଦ-ବିରୋଧୀ ସମସ୍ତ ଅନୁଷ୍ଠାନ ସହିତ ଘନିଷ୍ଠ ସହଯୋଗ ସ୍ଥାପନ କରିବାପାଇଁ ଆଗେଇଯିବ । କଂଗ୍ରେସ ସହିତ ଏହି ଅନୁଷ୍ଠାନଗୁଡ଼ିକ ସହଯୋଗ ସ୍ଥାପନ କରି ଭାରତର ସ୍ୱାଧୀନତାପ୍ରାପ୍ତି ଦିଗରେ ସମ୍ମିଳିତ ଉଦ୍ୟମ କରିବା ଏହାର ଲକ୍ଷ୍ୟ । ଭାରତର ଦେଶୀୟ ରାଜ୍ୟଗୁଡ଼ିକରେ ରାଜତନ୍ତ୍ର ବିରୁଦ୍ଧରେ ଚାଲିଥିବା ଜନ-ଆନ୍ଦୋଳନ ସହିତ ଏହି ଅନୁଷ୍ଠାନର ସମ୍ପର୍କ ନିବିଡ଼ତର ହେବା ଫଳରେ ଜନ-ଆନ୍ଦୋଳନର ଏହା ହେବ ପ୍ରଧାନ ସହାୟକ ଏବଂ ଭାରତର ସ୍ୱାଧୀନତା ଆନ୍ଦୋଳନର ଜାତୀୟ ମହାସ୍ରୋତରେ ଏମାନେ ସାମିଲ ହୋଇପାରିବେ ।

ବିଭିନ୍ନ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବ ସ୍ଥାପନ କରିବା ଓ ସଂଖ୍ୟାନ୍ୟୂନ ଗୋଷ୍ଠୀର ସ୍ୱାର୍ଥରକ୍ଷା କରିବା ପାଇଁ ଏହି ନୂତନ ଅନୁଷ୍ଠାନ ଦୃଷ୍ଟି ଦେବ । ୧୯୩୯ ମସିହା ଜୁନ ଶେଷ ସପ୍ତାହରେ ଫରୱାର୍ଡ ବ୍ଲକର ସର୍ବଭାରତୀୟ ସମ୍ମିଳନୀ ବମ୍ବେ ନଗରୀରେ ବସିଥିଲା । ନେତାଜୀ ଭାଷଣ ପ୍ରସଙ୍ଗରେ କହିଥିଲେ :

"ଆଜି ଆମ୍ଭେମାନେ ଇତିହାସର ଏକ ଘୋର ସଙ୍କଟମୟ ସମୟରେ ଏକତ୍ରିତ ହୋଇଛେ । ଯେଉଁ ବିପଦ ଆମ୍ଭମାନଙ୍କର ଅନ୍ତର୍ବିନ୍ୟାସକୁ ପ୍ରତି ମୁହୂର୍ତ୍ତରେ ଛିନ୍ନଭିନ୍ନ କରୁଛି, ଆମେ ତାର ମୁକାବିଲା ପାଇଁ ଏଠାରେ ପନ୍ଥା ନିର୍ଣ୍ଣୟ କରିବା । ଦେଶର ସେବା କରିବା ପାଇଁ ଆମେ ଯେଉଁ ନୀତି ନିର୍ଦ୍ଧାରଣ କରିଛେ, ତାହା କେତେ ଦୂର ଫଳପ୍ରସୂ, ଚିନ୍ତା କରିବାର କଥା । ଆମେ ପରିବର୍ତ୍ତିତ ଧାରାରେ ନିଷ୍ଠାର ସହ କାର୍ଯ୍ୟ କରିପାରି-ନାହୁଁ । ମହାତ୍ମା ଗାନ୍ଧୀ ଓ ଦକ୍ଷିଣପନ୍ଥୀ ବନ୍ଧୁମାନେ ଆମ ସହିତ ନୀତିଦୃଷ୍ଟିରୁ ସହମତ ନୁହନ୍ତି । ବର୍ତ୍ତମାନ ସମୟରେ ଏକ ଜାତୀୟ ଆନ୍ଦୋଳନ ଆରମ୍ଭ କରିବାକୁ ସେମାନେ ଚାହାନ୍ତି ନାହିଁ । ଏଥିପାଇଁ ପ୍ରକୃଷ୍ଟ ସମୟ ଆସିନାହିଁ ବୋଲି ସେମାନଙ୍କର ଧାରଣା । ଫରୱାର୍ଡ ବ୍ଲକ ତାର ଲକ୍ଷ୍ୟପଥରେ ଆଗେଇ ଯାଇ ନପାରିଲେ ବିପ୍ଳବାତ୍ମକ ବାମପନ୍ଥୀ କାର୍ଯ୍ୟଧାରା ବାଧା ପ୍ରାପ୍ତ ହେବ । କଂଗ୍ରେସ ଅନୁଷ୍ଠାନ ମଧ୍ୟରେ ଥିବା ବହୁ ନେତା ବୈପ୍ଳବିକ କାର୍ଯ୍ୟକ୍ରମକୁ ଆଗେଇନେବାପାଇଁ ସମର୍ଥ ନୁହନ୍ତି । ଆମେ ଯେଉଁମାନେ ଏହାକୁ ଧ୍ୟେୟ ରୂପେ ଗ୍ରହଣ କରିଛେ, ସେମାନେ ଲକ୍ଷ୍ୟପଥରେ ଆଗେଇଯିବା ଉଚିତ ।

"ଏଥିଭିତରେ ଆମେ ଯେଉଁ ସଫଳତା ହାସଲ କରିଛୁ, ତାହା ବିଚାରକୁ ନେଲେ ହତାଶ ହେବାର କିଛି ନାହିଁ । ଆମର ବିରୋଧ ଫଳରେ କଂଗ୍ରେସ ମନ୍ତ୍ରୀମାନେ ଇଂରେଜ ଶାସନକଳରୁ ଓହରିଆସିଛନ୍ତି । ଇଂରେଜମାନେ ଭାରତୀୟମାନଙ୍କଠାରୁ କିସତି ସାହାଯ୍ୟ ଯୁଦ୍ଧ ପାଇଁ ଚାହିଁଥିଲେ । ଆମର ବିରୋଧ ଫଳରେ କଂଗ୍ରେସ ମଧ୍ୟ ତାର ବିରୋଧ କରିଛି ।

"ଏବେ ଲକ୍ଷ୍ୟ କରାଯାଇଛି ଯେ ଦକ୍ଷିଣପନ୍ଥୀ ବନ୍ଧୁମାନେ ଆମ ସହିତ ସ୍ୱର ମିଶାଇ ସଂଘର୍ଷ ତଥା ସଂଗ୍ରାମର ସ୍ୱର ଉତ୍ତୋଳନ କରୁଛନ୍ତି । ବିନା ସଂଗ୍ରାମରେ ଭାରତର ମୁକ୍ତି ସହଜ ନୁହେଁ ବୋଲି ସେମାନଙ୍କର ମଧ୍ୟ ହୃଦ୍‌ବୋଧ ହେଲାଣି । ବୋଧ ହୁଏ ଏପ୍ରକାର ମନୋଭାବ, ଆମେ ତାଙ୍କ ମଧ୍ୟରେ ସୃଷ୍ଟି କରିବା ଦିଗରେ ସଫଳ ହୋଇଛେ ।

"ଆମ ସଂଗ୍ରାମରେ ଆମେ କେତେଦୂର ସଫଳତା ହାସଲ କରିବା, ତାର ଉତ୍ତର ସମୟ ଦେବ । ବିଫଳତା ଅନେକ ସମୟରେ ସଫଳତାର ସୋପାନ । ବିଫଳତାକୁ ଭୟକରି ସଂଗ୍ରାମରୁ ଓହରିଯିବାର ପ୍ରଶ୍ନ ନାହିଁ । ବର୍ତ୍ତମାନର ପ୍ରତ୍ୟେକ ମୁହୂର୍ତ୍ତକୁ ଆମେ ଯଥାର୍ଥ ବିନିଯୋଗ କରିବା ଉଚିତ । ଅବହେଳା କଲେ ଇତିହାସ ଆମକୁ କ୍ଷମା ଦେବ ନାହିଁ । ସାରା ବିଶ୍ୱ ଆମର କାର୍ଯ୍ୟକଳାପକୁ ଉଦ୍‌ଗ୍ରୀବ ହୋଇ ଚାହିଁଛି । ଚେଷ୍ଟା ନକରିବା ଅପେକ୍ଷା, ଚେଷ୍ଟାକରି ବିଫଳ ହେବା ବରଂ ଶ୍ରେୟସ୍କର । ଆତ୍ମବିଶ୍ୱାସ ଆମ ଜୀବନର ଲକ୍ଷ୍ୟ । ମୁଁ ଆବଶ୍ୟ ରକ୍ତାକ୍ତ ସଂଘର୍ଷକୁ ପସନ୍ଦ କରେନାହିଁ; କିନ୍ତୁ ଆବଶ୍ୟକ ହେଲେ ପ୍ରସ୍ତୁତ ହେବାକୁ ହେବ ।

"ଫରଓ୍ୱାର୍ଡ ବ୍ଲକ ଐତିହାସିକ ଆବଶ୍ୟକତାକୁ ନେଇ ଜନ୍ମଲାଭ କରିଛି । କୌଣସି ଏକ ବ୍ୟକ୍ତି କିମ୍ବା ଦଳର ମରଜିକୁ ନେଇ ଏହାର ସୃଷ୍ଟି ନୁହେଁ । ଯେ ପର୍ଯ୍ୟନ୍ତ ଏହା ଐତିହାସିକ ଲକ୍ଷ୍ୟ ପୂରଣ ଦିଗରେ ସମର୍ଥ ହେବ, ସେ ପର୍ଯ୍ୟନ୍ତ ଏହା ବହୁ ବାଧାବନ୍ଧନ ମଧ୍ୟରେ ନିଶ୍ଚିତ ଭାବରେ ବଞ୍ଚିବ ।

"ସ୍ୱାଧୀନତା ଇତିହାସର ସଗ୍ରାମୋତ୍ତର ପରିସ୍ଥିତିରେ ମଧ୍ୟ ଫରଓ୍ୱାର୍ଡ ବ୍ଲକର କିଛି ଭୂମିକା ରହିଛି । ସ୍ୱାଧୀନତା ଲାଭପରେ ଏହାକୁ ରକ୍ଷାକରିବାର ଦାୟିତ୍ୱ ଆମ୍ଭମାନଙ୍କର । ଏକ ନୂତନ ସମୃଦ୍ଧ ଭାରତ ଗଠନ ଦିଗରେ ଆମ୍ଭମାନଙ୍କର ଅବଦାନ ଅପରିହାର୍ଯ୍ୟ । ଯେଉଁମାନଙ୍କ ଚେଷ୍ଟାରେ ସ୍ୱାଧୀନତା ମିଳିବ ସେହିମାନଙ୍କୁ ସ୍ୱାଧୀନୋତ୍ତର ପୁନର୍ଗଠନର ଦାୟିତ୍ୱ ବହନ କରିବାକୁ ପଡ଼ିବ । ଜୟ ହିନ୍ଦ୍ ।"

ଫରଓ୍ୱାର୍ଡ ବ୍ଲକର ବୈପ୍ଳବିକ ପଦକ୍ଷେପକୁ ପ୍ରତ୍ୟେକ ସ୍ତରରୁ ସ୍ୱାଗତ କରାଯାଉଥିଲା । ଏହାର ଏକମାତ୍ର ଦୁର୍ବଳ ଦିଗ ହେଲା କଂଗ୍ରେସ ଭିତରେ ଏକ ବଡ଼ ଧରଣର ବିଭାଜନ ସୃଷ୍ଟି କରିବା । ଦକ୍ଷିଣପନ୍ଥୀ ତଥା ବାମପନ୍ଥୀ ମଧ୍ୟରେ ଅନ୍ତର୍ନିହିତ ବିଭେଦ ପ୍ରକାଶ୍ୟ ରୂପ ଗ୍ରହଣ କଲା । ସୁଭାଷ ଏ ସନ୍ଦର୍ଭରେ ମତାମତ ଦେବାକୁ ଯାଇ କହିଲେ ଯେ, "ରାଜନୀତି କ୍ଷେତ୍ରରେ ଏପ୍ରକାର ବ୍ୟବଧାନ ସୃଷ୍ଟି ହେବା ସ୍ୱାଭାବିକ । ଏହା ଲକ୍ଷ୍ୟ ପୂରଣର ଧାରାକୁ କ୍ଷିପ୍ରତର କରେ । ମତ ତଥା ପଥର ବ୍ୟବଧାନ ନେଇ ମନର ଏକତାରେ ଆଞ୍ଚ ଆସିବାର କୌଣସି କାରଣ ନାହିଁ ।"

ସୁଭାଷଙ୍କର ଏହି ଉକ୍ତି ପ୍ରକୃତରେ କାର୍ଯ୍ୟକାରୀ ହୋଇନଥିଲା ଓ ଶେଷରେ ତାହା ଅନୁଷ୍ଠାନର ଅବସ୍ଥିତିକୁ ଗ୍ରାସ କରିବାକୁ ବସିଲା । ଉଭୟ ଗୋଷ୍ଠୀ ଭିତରେ ବିବାଦ ଏପରି

ଚରମ ପର୍ଯ୍ୟାୟକୁ ଆସିଲା ଯେ, କଂଗ୍ରେସର କାର୍ଯ୍ୟକାରୀ କମିଟିରେ ସୁଭାଷଙ୍କୁ କୌଣସି ପ୍ରକାରର ପଦାଧିକାର ପ୍ରାପ୍ତ ତନିବର୍ଷ ପାଇଁ ଦିଆଗଲା ନାହିଁ; କିନ୍ତୁ ତାଙ୍କଦ୍ୱାରା ପ୍ରତିଷ୍ଠିତ ଫରୱାର୍ଡ ବ୍ଲକ ଜନ-ସମର୍ଥନ ଲାଭ କରିଥିଲା । ଏହାର ଜନପ୍ରିୟତା ସୁଭାଷଙ୍କ ମନୋବଳ ବୃଦ୍ଧି କରିବା ଦିଗରେ ସାହାଯ୍ୟ କଲା । ଓଡ଼ିଶାର ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଫରୱାର୍ଡ ଦଳର ସକ୍ରିୟ ସଭ୍ୟ ଥିଲେ ।

ସୁଭାଷଙ୍କର ଆଶଙ୍କା ସତ୍ୟ ହେଲା ।

୧୯୩୯ ମସିହା ସେପ୍ଟେମ୍ବର ମାସରେ ଇଉରୋପରେ ଯୁଦ୍ଧ ଘୋଷଣା ହେଲା । ସାରା ଭାରତରେ ବ୍ରିଟିଶ-ବିରୋଧୀ ମନୋଭାବ ଲୋକମାନଙ୍କ ମଧ୍ୟରେ ତୀବ୍ରତର କରିବା ଦିଗରେ ଫରୱାର୍ଡ ବ୍ଲକ ସମର୍ଥ ହୋଇପାରିଥିଲା । ଇଂରେଜ ସରକାର ନୂତନ ପରିସ୍ଥିତିରେ ପ୍ରମାଦଗଣିଲେ । କିଛି ଗୋଟାଏ ଚରମ ବ୍ୟବସ୍ଥା ନକଲେ ହୁଏତ ସଶସ୍ତ୍ର ବିଦ୍ରୋହର ସୂତ୍ରପାତ ହୋଇପାରେ । ସୁଭାଷଙ୍କୁ ଏଥିରୁ ନିବୃତ୍ତ କରିବାରେ କୌଣସି ପନ୍ଥା ନଦେଖି ସରକାର ବାଧ୍ୟହୋଇ ତାଙ୍କୁ ଏବଂ ତାଙ୍କର ଶହ ଶହ କର୍ମୀଙ୍କୁ ଗିରଫ କଲେ । ସେମାନଙ୍କୁ ଜେଲ ଭିତରେ ଅଟକାଇ ରଖାଗଲା । ବ୍ରିଟିଶ-ବିରୋଧୀ କାର୍ଯ୍ୟର ବ୍ୟାପକତାକୁ ରୋକିବା ପାଇଁ ଏ ଯେଉଁ ପଦକ୍ଷେପ ନିଆଗଲା, ତାହା ହୁଏତ କ୍ଷଣିକ ଆଶ୍ୱସ୍ତିର କାରଣ ହୋଇପାରେ; କିନ୍ତୁ ଅନ୍ତରାଳରେ ଉଗ୍ର ଜାତୀୟତାବାଦର ବିଦ୍ରୋହ-ବାତ୍ୟା ଯେ ଭାରତୀୟ-ମାନଙ୍କର ହୃଦୟରେ ପ୍ରବାହିତ ହେଉଥିଲା ଏବଂ ପ୍ରଳୟରୁ ପ୍ରଳୟତର ରୂପ ନେଉଥିଲା, ତାହା ସେମାନେ ବୁଝିପାରୁନଥିଲେ ।

ସୁଭାଷ ଜେଲଖାନା ଭିତରେ ବିଦ୍ରୋହ କଲେ । ସେ କହିଲେ ଯେ ତାଙ୍କ ଦୋଷ ବିଚାର କରାଯାଉ ଓ ଯାହା ଦଣ୍ଡ ଦିଆଯିବାର କଥା, ଦିଆଯାଉ । ବିନାବିଚାରରେ ଅନିର୍ଦ୍ଦିଷ୍ଟ ସମୟ ପାଇଁ ତାଙ୍କୁ କାରାଗାର ମଧ୍ୟରେ ଅଟକାଇ ରଖିବାର କୌଣସି କାରଣ ନାହିଁ । ସେ ଇଂରେଜ ସରକାରଙ୍କୁ ତାଙ୍କର ଚରମବାଣୀ ଶୁଣାଇଥିଲେ : "ଶୀଘ୍ର ବିଚାର କର କିମ୍ବା ମୁକ୍ତ ଦିଅ—ଏ ଦୁଇଟି ମଧ୍ୟରୁ ଯଦି କୌଣସି ଗୋଟିଏ ଯଥାଶୀଘ୍ର କାର୍ଯ୍ୟକାରୀ ନହୁଏ, ତେବେ ସେ ମୃତ୍ୟୁ ପର୍ଯ୍ୟନ୍ତ ଅନଶନ କରିବେ ।"

ଇଂରେଜ ସରକାର ଏ ଧମକକୁ ପ୍ରଥମେ କର୍ଣ୍ଣପାତ କଲେନାହିଁ । ସେ ଭାବିଲେ, ଏହା ଜଣେ ହତାଶ ବନ୍ଦୀର ବିଳାପ ବ୍ୟତୀତ ଆଉ କିଛି ନୁହେଁ; କିନ୍ତୁ ପରେ ଏହାର ଭୟାବହତା ବିଷୟରେ ସେମାନେ ହୃଦୟଙ୍ଗମ କରିଥିଲେ । ସେମାନେ ଅଧିକ ବିଳମ୍ବ ନକରି ୫ । ୧୨ । ୧୯୪୦ ମସିହାରେ ତାଙ୍କୁ ମୁକ୍ତ କରିଦେଲେ । ଏ ମୁକ୍ତି ଥିଲା ସର୍ତ୍ତମୂଳକ : "ସରକାରଙ୍କ ବିନାନୁମତିରେ ସେ ତାଙ୍କ ଗୃହ-ପରିସର ମଧ୍ୟରୁ ଅନ୍ୟ କୌଣସି ସ୍ଥାନକୁ ଯାଇପାରିବେନାହିଁ କିମ୍ବା କୌଣସି ରାଜନୈତିକ ଦଳ ସହିତ ସମ୍ପର୍କ ରଖିବେ ନାହିଁ ।" ସେ ଏକପ୍ରକାର ଗୃହବନ୍ଦୀ ଭାବରେ ରହିଲେ । ତାଙ୍କ ଗତିବିଧି ଉପରେ ସରକାରଙ୍କର ତୀକ୍ଷ୍ଣ ନଜର ଥିଲା । ସେ ମୁକ୍ତ ହେଲେ ବି ଏକପ୍ରକାର ବନ୍ଦୀ ଥିଲେ ।

ଏଲଗିନ୍ ରୋଡ଼ ।

ମହାତ୍ମା ଗାନ୍ଧୀଙ୍କ ସହିତ ସୁଭାଷଙ୍କର ରାଜନୈତିକ ଚିନ୍ତାଧାରାରେ ବିରୋଧତା ପ୍ରକାଶ ପାଉଥିଲେ ମଧ୍ୟ ମତାନ୍ତର-ମନାନ୍ତରକୁ ସ୍ପର୍ଶ କରିନଥିଲା । ସେ ଗାନ୍ଧିଜୀଙ୍କୁ ବିଶ୍ୱର ଏକ ମହାନ୍ ବ୍ୟକ୍ତି ହିସାବରେ ଗ୍ରହଣ କରିଥିଲେ । ତାଙ୍କ ବ୍ୟକ୍ତିତ୍ୱର ଚମକରେ ସେତେବେଳେ ସାରା ବିଶ୍ୱ ଚମକିତ ହେଉଥିଲା । ସେ ଥିଲେ ବିଶ୍ୱବନ୍ଦନୀୟ; ସୁଭାଷଙ୍କର ପ୍ରେରଣାର ଉତ୍ସ । ଭାରତର ଜନ-ଜୀବନର ପ୍ରତୀକ ହେଉଛନ୍ତି ମହାତ୍ମା ଗାନ୍ଧୀ—ସୁଭାଷ ଏହା ମର୍ମେ ମର୍ମେ ଅନୁଭବ କରିଥିଲେ । ପାଶ୍ଚାତ୍ୟ ସଭ୍ୟତାସିକ୍ତ ସହର ଦର୍ପଣରେ ପଲ୍ଲୀ ଭାରତର ଅନାସକ୍ତ ଅବୟବ ପ୍ରତିଫଳିତ ହୋଇପାରେନା । ମହାତ୍ମାଜୀ ଭାରତର ଆଧ୍ୟାତ୍ମିକ ବୈଭବ ବିଭୂତି, ନୈତିକ ନିର୍ମଳତା, ରାଜନୈତିକ ଦାବୀର ଦାମ୍ଭିକତା, ଦ୍ରବ୍ୟ-ଦାରିଦ୍ର୍ୟ, ପଲ୍ଲୀ-ଜୀବନର ଶୋଚନୀୟତା ଏବଂ ମନାଞ୍ଚିତ ମନନତାର ଥିଲେ ଏକ ସମବାୟ । ଏ ପ୍ରକାର ପ୍ରଚଣ୍ଡ ବ୍ୟକ୍ତିତ୍ୱ ଆଉ କାହାର ନଥିଲା । ଉଭୟଙ୍କର ଭାରତର ସ୍ୱାଧୀନତା ଲାଭପାଇଁ ଥିଲା ଲକ୍ଷ୍ୟ ଏକ; କିନ୍ତୁ ତାହା ହାସଲ କରିବାର ପନ୍ଥା ଥିଲା ଭିନ୍ନ । ଉଭୟେ ବିପ୍ଳବୀ ଥିଲେ : ଜଣଙ୍କର ସଶସ୍ତ୍ର ବିପ୍ଳବରେ ବିଶ୍ୱାସ ଥିଲା; ଅନ୍ୟଜଣଙ୍କର ଚିନ୍ତା ଓ ଚେତନାରେ ବିପ୍ଳବ ସୃଷ୍ଟି କରିବା ପାଇଁ ସିଦ୍ଧାନ୍ତ ଥିଲା । ଜଣେ ଥିଲେ ମାନବବାଦୀ ନୀତିବାଦୀ ନେତା; ଆଉ ଜଣେ ଥିଲେ ସାମରିକ ନେତା । ବିଭେଦ ଭିତରେବି ଗାନ୍ଧିଜୀଙ୍କର ସୁଭାଷଙ୍କ ପ୍ରତି ଯେପରି ଅକୃତ୍ରିମ ଶ୍ରଦ୍ଧା ଥିଲା, ସୁଭାଷଙ୍କର ମଧ୍ୟ ଗାନ୍ଧିଜୀଙ୍କ ପ୍ରତି ସେପରି ଅଭେଦ ଅତୁଟ ଭକ୍ତି ଓ ସମ୍ମାନ ଥିଲା ।

ସୁଭାଷଙ୍କର ବଡ଼ଭାଇ ଶରତ୍‌ଚନ୍ଦ୍ର । ତାଙ୍କ ପୁଅ ଶିଶିରଚନ୍ଦ୍ର । ଶରତ୍‌ଚନ୍ଦ୍ରଙ୍କର ପ୍ରଭାବ ସୁଭାଷଙ୍କ ଉପରେ ଅନେକ ସମୟରେ ପଡ଼ୁଥିଲା । ସେ ଥିଲେ ପିତୃପ୍ରତିମ । ତାଙ୍କ ସ୍ତ୍ରୀ ବିଭାବତୀ ଥିଲେ ସୁଭାଷଙ୍କ ପାଇଁ ମାତୃମୂର୍ତ୍ତି । ମାନସିକ ସଙ୍କଟ, କିମ୍ବା କୌଣସି ପ୍ରକାର ବିଚାର-ବିଭ୍ରାଟ ସୃଷ୍ଟି ହେଲେ, ଶରତ୍‌ଚନ୍ଦ୍ର ସୁଭାଷଙ୍କୁ ସାମୟିକ ସମୟୋଚିତ ଦିଗ୍‌ଦର୍ଶନ ତଥା ପରାମର୍ଶ ଦିଅନ୍ତି । ସୁଭାଷଙ୍କର ନିଜର ପୁତୁରା-ଝିଅମାନଙ୍କ ପ୍ରତି ଅକୃତ୍ରିମ ସ୍ନେହ ଥିଲା ଓ ସେ ସେମାନଙ୍କ ସହିତ ବନ୍ଧୁଭାବାପନ୍ନ ବ୍ୟବହାର ଦେଖାଉଥିଲେ—ଖୁବ୍ ମନଖୋଲା···ଖୁବ୍ ହୃଦୟଖୋଲା··· । ସମ୍ପର୍କ ଓ ବିଶ୍ୱାସ ଏପରି ନିବିଡ଼ ଥିଲା ଯେ ବହୁ ଗୁରୁତର ନିଷ୍ପତ୍ତିର ସୂଚକ ସେମାନେ ପାଇଲେବି ଶରତଙ୍କ କାନକୁ ସହଜରେ ଆସୁନଥିଲା ।

ଶିଶିରକୁମାର ନେତାଜୀଙ୍କଠାରୁ ବୟସରେ ଖୁବ୍ କମ୍ ହେଲେବି ଦାଦା-ପୁତୁରାଙ୍କର ସମ୍ପର୍କ ଥିଲା ନିବିଡ଼ । ଶିଶିର ସକାଳର ଶିଶିର ପରି ଥିଲେ କାନ୍ତ-କୋମଳ । ଦାଦାଙ୍କର ପ୍ରଚଣ୍ଡ ପ୍ରତିଭା କିରଣରେ ସେ ମିଳେଇଯାଇଥିଲେ ବି ସୁଭାଷ ଶ୍ରଦ୍ଧା-ସକାଳର ସାନ୍ନିଧ୍ୟ ଦେବାକୁ ପଛାଉନଥିଲେ । ଉଭୟଙ୍କ ମଧ୍ୟରେ ଥିବା ଅନ୍ତବନ୍ଧନ ଶ୍ରଦ୍ଧା, ବିଶ୍ୱାସ ତଥା ଆନ୍ତରିକତା ଥିଲା ଉଦ୍ଧରିଲା ।

ସୁଭାଷ ପ୍ରଥମରୁ ଥିଲେ ଆଦବ୍‌କାଇଦାର ମଣିଷ । ତାଙ୍କ ବେଶ-ପୋଷାକରେ ଥିଲା ସାମରିକ ସଂଯମତା । ସେ କାୟ-ମନୋବାକ୍ୟରେ ସାମରିକତାକୁ ଶ୍ରଦ୍ଧାର ସହିତ ଗ୍ରହଣ କରିଥିଲେ । ଏହାର ପ୍ରଭାବ ଶିଶିରଙ୍କ ଉପରେ ପଡ଼ିଥିଲା ।

ଭାରତର ସାଂପ୍ରତିକ ଘଟଣାବଳୀ ବିଷୟରେ ବିଶ୍ୱ ଜନମତ ଜାଣିବା ପାଇଁ ସେ ସର୍ବଦା ଆଗ୍ରହୀ ଥିଲେ । ଏଥିପାଇଁ ସେ ଅନେକ ସମୟରେ ମସ୍କୋ ରେଡିଓ ଶୁଣୁଥିଲେ । ଶିଶିରଙ୍କୁ ମଧ୍ୟ ନିଯୁକ୍ତ କରିଥିଲେ ମସ୍କୋ ରେଡିଓ ଶୁଣିବାକୁ ଓ ବିଭିନ୍ନ ତଥ୍ୟ ବିଷୟରେ ତାଙ୍କୁ ଅବହିତ କରିବାକୁ । ତା ବ୍ୟତୀତ ଅନ୍ୟ ରେଡିଓ ସହିତ ମଧ୍ୟ ସେ ସମ୍ପର୍କ ସ୍ଥାପନ କରିଥିଲେ । ତାଙ୍କର ପ୍ରଧାନ ଆୟୁଧ ଥିଲେ ଶିଶିରକୁମାର ଓ ଅନ୍ୟ ପୁତୁରା ଝିଆରୀମାନେ । ତେବେ ସେମାନଙ୍କ ମଧ୍ୟରେ ଶିଶିର ଥିଲେ ସର୍ବପ୍ରଧାନ ।

ଶିଶିର ଥିଲେ ମେଡିକାଲ କଲେଜର ଛାତ୍ର । ଜଣେ ଦକ୍ଷ ଓ ସେବାଶୀଳ ଡାକ୍ତର ହେବାପାଇଁ ସୁଭାଷ ସର୍ବଦା ତାଙ୍କୁ ପ୍ରେରଣା ଦେଉଥିଲେ । କଲେଜରେ ତାଙ୍କର କାର୍ଯ୍ୟକଳାପ ବିଷୟରେ ସେ ଆଗ୍ରହର ସହିତ ସବୁ ବୁଝୁଥିଲେ । ସୁଭାଷଙ୍କର ମୂଲ୍ୟବାନ୍ ପରାମର୍ଶ ଆଦରର ସହିତ ଗୃହୀତ ହେଉଥିଲା ।

କଲିକତାର ଏଲଗିନ୍ ରୋଡ଼ରେ ଥିବା ଜାନକୀନାଥଙ୍କର ପୁରୁଣାଘର ୩୮।୨ରେ ସୁଭାଷ ରହୁଥିଲେ । ସେଠାରେ ସେ ଥିଲେ ଏକପ୍ରକାର ନଜରବନ୍ଦୀ । ତାଙ୍କ ପାଖକୁ କିଏ ସବୁ ଆସୁଛନ୍ତି ଏବଂ କି ପ୍ରକାରର କାର୍ଯ୍ୟକଳାପ ସେଠାରେ ଚାଲିଛି ତା' ଉପରେ ସତର୍କ ଦୃଷ୍ଟି ସରକାରଙ୍କର ଥିଲା । ସୁଭାଷଙ୍କ ପାଖକୁ ପୁତୁରା ଶିଶିର ଯେ ସର୍ବଦା ଆସୁଥିଲେ ତାହା ହୁଏତ ସନ୍ଦେହ ସୃଷ୍ଟି କରିବାର କଥା; କିନ୍ତୁ ସୁଭାଷ ପୀଡ଼ିତ ଥିବାର ଅଭିନୟ କରିଥିଲେ । ତାଙ୍କର ସେବାପାଇଁ ଯେ ଶିଶିର ଆସୁଛନ୍ତି, ଏ ଧାରଣା ସୃଷ୍ଟି କରାଯାଇଥିଲା ।

ସେଦିନ ସୁଭାଷ ଖୁବ୍ ଗମ୍ଭୀର ଅଥଚ ଉତ୍ତେଜିତ ଜଣାପଡ଼ୁଥିଲେ । ଶିଶିର ତାଙ୍କ ପାଖରେ ପହଞ୍ଚିବା ପରେ ସେ ନୀରବରେ ଅଙ୍ଗୁଳି ନିର୍ଦ୍ଦେଶ କରି ବସିବାକୁ କହିଲେ । କିଛି ସମୟ ପର୍ଯ୍ୟନ୍ତ ନୀରବତା ଲାଗିରହିଲା । ଶିଶିର ଏକ ଅପ୍ରତ୍ୟାଶିତ କିଛି ଘଟିବାକୁ ଯାଉଛି ବୋଲି ଅନୁଭବ କଲେ । ନୀରବତା ଭଙ୍ଗକରି ସେ ଅନୁଚ୍ଚ ଅଥଚ ଦୃଢ଼ କଣ୍ଠରେ ପଚାରିଲେ—"ଦୂରବାଟକୁ ତୁମେ ନିଜେ ଗାଡ଼ି ଚଲାଇ ନେଇପାରିବ କି ନାହିଁ ?"

ଶିଶିର ହଠାତ୍ ଏ ପ୍ରଶ୍ନରେ ଟିକିଏ ବିଚଳିତ ହୋଇଉଠିଲେ ମଧ୍ୟ ମନର ସଣଙ୍କ ପ୍ରତିକ୍ରିୟାକୁ ପ୍ରକାଶ ନକରି ଉତ୍ତରଦେଲେ "ବୋଧହୁଏ ବିଶେଷ କିଛି ଅସୁବିଧା ହେବନି ।"

"ତା'ହେଲେ ତୁମେ ନିଜକୁ ପରୀକ୍ଷା କରିନେବାର ଆବଶ୍ୟକତା ଆସିଛି । ଏଥିଭିତରେ ଗାଡ଼ି ନେଇ ନିଜେ ଯାଅ । ବେଶ୍ କିଛି ଦୂରବାଟ ଚଲାଅ । ଆତ୍ମବିଶ୍ୱାସ ନିଶ୍ଚୟ ବଢ଼ିବ; ତାପରେ ହାତ ବି ତାଲିମ ହୋଇଯିବ । ତମରି ଏ ଦକ୍ଷତା ଆଗକୁ କାମରେ ଆସିବ ।"

ଶିଶିର ତାଙ୍କ କଥା ମାନି କାମ ଆଲରେ ବର୍ତ୍ତମାନ ପର୍ଯ୍ୟନ୍ତ ଗାଡ଼ି ଚଳାଇ ଯାଇ ଫେରିଥିଲେ ଓ ନିଜର ସାମର୍ଥ୍ୟର ପ୍ରମାଣ ସୁଭାଷଙ୍କୁ ଦେଇଥିଲେ । ନିଜର ନିଶ୍ଚିତ ପରିକଳ୍ପନାକୁ ରୂପଦେବାପାଇଁ ଏହା ଏକ ଅନୁକୂଳ ପରିସ୍ଥିତି ବୋଲି ନେତାଜୀ ଅନୁଭବ କରିଥିଲେ ।

ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । ସୁଭାଷ ପ୍ରତିଦିନ ଖୁବ୍ ଆଗ୍ରହକତାର ସହିତ ବିଦେଶରୁ ପ୍ରଚାରିତ ସମ୍ବାଦସବୁ ଶୁଣୁଥିଲେ । ଯୁଦ୍ଧ ପରିସ୍ଥିତି ବିଷୟରେ ତାଙ୍କର ପୁଙ୍ଖାନୁପୁଙ୍ଖ ଧାରଣା ଥିଲା । ଇଂରେଜମାନଙ୍କର ସ୍ଥିତି ବିଷୟରେ ସେ ପ୍ରତି ମୁହୂର୍ତ୍ତରେ ସଜାଗ ଥିଲେ । ବିଶ୍ୱ-ଯୁଦ୍ଧରେ ସେମାନେ କି ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେଉଛନ୍ତି ଓ ତାହା ତାଙ୍କର ସାମରିକ ସଫଳତାର ସମ୍ଭାବନାକୁ କିପରି ଭାବରେ ପ୍ରଭାବିତ କରୁଛି, ସେ ତାହା ଅନୁଧ୍ୟାନ କରୁଥିଲେ । ପରିସ୍ଥିତିର ଗତିଧାରା ଉପରେ ତାଙ୍କର ଟିପ୍ପଣୀ ଅନେକ ସମୟରେ ସତ୍ୟ କିମ୍ବା ତାହାର ନିକଟବର୍ତ୍ତୀ ହେଉଥିଲା ।

ସୁଭାଷ ଓ ଶିଶିରଙ୍କ ଭିତରେ ଏକ ଗୁପ୍ତ ପରାମର୍ଶ ଚାଲିଥାଏ । ଖୁବ୍ ନିବିଡ଼ ଆତ୍ମୀୟତା ଭିତରେ ଏହି ପରାମର୍ଶ । ସାମାନ୍ୟ ସନ୍ଦେହର କଳୀୟକଣା ଯେପରି ପରିବେଶର ପବନକୁ ସିକ୍ତ ନକରିବ ସେଥିପାଇଁ ଉଭୟେ ସତର୍କ । ସୁଭାଷଙ୍କର ପରାମର୍ଶ—ଶିଶିର ଏକାନ୍ତଭାବରେ ବିଶ୍ୱସ୍ତ ହେବେ; ଯାହା ଘଟିବାକୁ ଯାଉଛି, ତା'ର ସୂଚକ ଏପରିକି ତାଙ୍କର ପିତାମାତା ମଧ୍ୟ ଯେପରି ନପାଇବେ । ଚାହାଣିରେ କଥାବାର୍ତ୍ତାରେ କିମ୍ବା ମୁଖମୁଦ୍ରାରେ ଯେପରି କୌଣସି ପ୍ରକାର ବ୍ୟତିକ୍ରମ ସୃଷ୍ଟି ନହେବ ସେଥିପ୍ରତି ସାବଧାନ ହେବାକୁ ହେବ । ଗତାନୁଗତିକତାରେ ସାମାନ୍ୟ ପରିବର୍ତ୍ତନ ଅନ୍ୟର ମନ ଭିତରେ ସନ୍ଦେହର କମ୍ପନ ସୃଷ୍ଟି କରିପାରେ ।

ଶିଶିର ଜାତୀୟ ଜୀବନର ମହାନ୍ ଅଧ୍ୟାୟ ଉଦ୍‌ଘାଟନର ଏକ ଆୟୁଧ ରୂପେ ସୁଭାଷଙ୍କ ଦ୍ୱାରା ଯେ ବ୍ୟବହୃତ ହେଉଛନ୍ତି, ଏହା ସେ ଭଲ ରୂପେ ଉପଲବ୍ଧି କରିଥିଲେ । ଦାଦାଙ୍କର ଐତିହାସିକ ପଦକ୍ଷେପରେ ତାଙ୍କର ଭୂମିକା ପାଇଁ ସେ ଗର୍ବ ଅନୁଭବ କରୁଥିଲେ ।

ବହୁ ପ୍ରତୀକ୍ଷିତ ସେହି ଐତିହାସିକ ମୁହୂର୍ତ୍ତ ଆସି ପହଞ୍ଚିଲା । ୧୯୪୧ ମସିହା ଜାନୁଆରୀ ୧୬ ତାରିଖ ଗୁରୁବାର । ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଇତିହାସର ଏକ ବିସ୍ମୟ ବିଶ୍ୱକୁ ବିସ୍ମିତ କଲା । ସୁଭାଷ ଆକସ୍ମିକ ଭାବରେ ଇଂରେଜ ଶାସନର କଡ଼ା ପହରାକୁ ପ୍ରତାରଣା କରି ପଳାୟନ କଲେ ।

ଶୀତସିକ୍ତ ରଜନୀ । ପରିବେଶରେ ବିଶ୍ୱାସର ଶୁଭ୍ର-ସମୀର ଶିହରିତ ହେଉଛି । ସୁଭାଷଙ୍କ ସମ୍ମୁଖଭାଗରେ ଦଣ୍ଡାୟମାନ ଏକ ଶାନ୍ତ ଯୁବକ, ମିଆଁ ସାହେବ ଆକବର ଶାହା । ସୁଭାଷଙ୍କର ଅତ୍ୟନ୍ତ ଅନ୍ତରଙ୍ଗ, ଖୁବ୍ ବିଶ୍ୱସ୍ତ ଏବଂ ପଳାୟନ-ପର୍ବର ସୂତ୍ରଧର । ଇଙ୍ଗିତ ପାଇ

ଶିଶିର ତାଙ୍କୁ ଗାଡ଼ିରେ ନେଇଗଲେ । ସେ ବଜାରରୁ କିଛି ଜିନିଷପତ୍ର କିଣାକିଣି କରି ଷ୍ଟେସନକୁ ଯିବେ । ଗାଡ଼ି ଛୁଟିଲା । ଉଭୟେ ଶିଶିର ଓ ଆକବର ପରସ୍ପର ଆଲୋଚନାରେ ମଗ୍ନ । ଗାଡ଼ି ଧର୍ମତାଲାରେ ପହଞ୍ଚିଲା । ସେମାନେ ଗାଡ଼ିରୁ ଓହ୍ଲାଇଲେ । ଆକବର ଗୋଟିଏ ନୂଆ ଟୋପି ଓ ପାଇଜାମା ଦୋକାନରୁ କିଣିଲେ । ତା'ପରେ ସେମାନେ ସେ ରହୁଥିବା ହୋଟେଲରୁ ଜିନିଷପତ୍ର ନେଇ ଷ୍ଟେସନରେ ପହଞ୍ଚିଲେ । ତାଙ୍କୁ ତାଙ୍କର ନିର୍ଦ୍ଦିଷ୍ଟ ଗାଡ଼ି ଚଢ଼ାଇଦିଆଗଲା । ସେ ବିଦାୟ ନେଲେ ।

ଫେରିବା ସମୟରେ ଗାଡ଼ିର ଡ୍ରାଇଭର ଲକ୍ଷ୍ୟକଲା ପଛସିଟ୍ କୋଣରୁ କିଣାଯାଇଥିବା ପୋଷାକ ପ୍ୟାକେଟ୍‌ଟା ଭୁଲିରେ ରହିଯାଇଛି; ଅଥଚ ଟ୍ରେନ ଛାଡ଼ିଦେଲାଣି । ତାର ବ୍ୟସ୍ତତା ଦେଖି ଶିଶିର କହିଲେ, "ଠିକ୍ ଅଛି, ପ୍ୟାକେଟ୍‌ଟା ଭୁଲରେ ରହିଗଲା । ବର୍ତ୍ତମାନ ତ ଆଉ ଦେଇହେବନି, ତେବେ ଡାକରେ ପଠାଇଦେବା । ସେ ସୁବିଧାରେ ପାଇଯିବେ ।"

ଗାଡ଼ି ଫେରିଆସିଲା । ଶିଶିରଙ୍କୁ ଦେଖି ସୁଭାଷ ଖୁସିହେଲେ । ସେ ବରାଦ କରିଥିବା ଜିନିଷ ମଧ୍ୟ ଶିଶିର ବଜାରରୁ କିଣିଆଣିଥିଲେ । ତାହା ଦେଖି ତାଙ୍କ ପସନ୍ଦ ପାଇଁ ତାରିଫ୍ କଲେ । ଆକବର ଛାଡ଼ି ଦେଇଯାଇଥିବା ପ୍ୟାକେଟ୍‌ଟି ଶିଶିର ଦାଦାଙ୍କ ହାତକୁ ବଢ଼ାଇ ଦେଇ ସବୁ ଘଟଣା ଜଣାଇଲେ । ସୁଭାଷ ତାହା ଦେଖି ଉଲ୍ଲାସ ଉଚ୍ଛନ୍ନ ନୟନରେ ଶିଶିରଙ୍କୁ ଚାହିଁଲେ । ସେ ଚାହାଣିରେ କେତେ ଯେ ନିଭୃତ କଥା ମନକନ୍ଦରର ଅନ୍ଧକାର ସ୍ତରକୁ ଭେଦକରି ନୟନ ଉପାନ୍ତକୁ ଚାଲିଆସିଥିଲା, ତାହା କେବଳ ସୁଭାଷ ଜାଣନ୍ତି । ସେଥିରେ ଅସୁମାର ଅବ୍ୟକ୍ତ ଭାଷାର କାହାଣୀ ତରଙ୍ଗାୟିତ ହେଉଥିଲା । ଶିଶିର ସେ ନିଗୂଢ଼ତାର କିଛି ଅଂଶ ହୃଦୟଙ୍ଗମ କରିପାରିଥିଲେ । ଇଙ୍ଗିତର ଭାଷା ଅତ୍ୟନ୍ତ ଶକ୍ତିଶାଳୀ ।

ଶିଶିରଙ୍କର ଦାଦାହିଁ ଅ ଭଉଣୀ ଇଲା । ସେ ଥିଲା ସୁଭାଷଙ୍କର ବିଶ୍ୱସ୍ତ ଓ ପଳାୟନ-ପର୍ବର ଅନ୍ୟ ଏକ ରୂପକାର । ସୁଭାଷ ପଳାୟନ କରିବାର କେତେଦିନ ପୂର୍ବରୁ ଅସୁସ୍ଥତା ଆଳରେ ଛଦ୍ମଭାବରେ ଘରେ ରହିଲେ । ଘରର ଚାକରବାକର, ଅନ୍ୟ ଲୋକମାନେ ଓ ବାହାର ଲୋକଙ୍କ ମନରେ ସନ୍ଦେହର କଳାମେଘ ସୃଷ୍ଟି କରିବାକୁ ଦିଆଗଲା ନାହିଁ । ଏକ ଗତାନୁଗତିକ କାର୍ଯ୍ୟସୂଚୀ ଭିତରେ ତାଙ୍କ ପଳାୟନ ପ୍ରସ୍ତୁତିକୁ ଏପରି ଭାବରେ ମିଶାଇ ଦିଆଗଲା, ଯାହା କି କୌଣସି ବ୍ୟତିକ୍ରମ କିମ୍ବା ବିଚ୍ୟୁତିର ବିରୋଧାଭାସ ସୃଷ୍ଟି କରିନଥିଲା । ଅନ୍ୟମାନଙ୍କ ସହିତ ତାଙ୍କର ସମ୍ପର୍କ ସଙ୍କୁଚିତ ହେବାଦିଗରେ ଅସୁସ୍ଥତାର ଅଭିନୟ ସାହାଯ୍ୟ କରିଥିଲା ।

ସୁଭାଷଙ୍କ ଗତିବିଧି ଉପରେ, କଡ଼ା ନଜର ରଖୁଥିବା ସାଦାପୋଷାକଧାରୀ ପୁଲିସ-ମାନଙ୍କ ଗତିବିଧି ଉପରେ ଇଲା ତଥା ଶିଶିରଙ୍କର ଗୋପନ ସତର୍କ ଦୃଷ୍ଟି ସର୍ବଦା ଥିଲା । ସେମାନେ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ପୁଲିସମାନଙ୍କର କାର୍ଯ୍ୟକଳାପ ରାତିରେ ପ୍ରାୟ ମନ୍ଥର ଥାଏ ଓ ସେମାନେ ସୁଭାଷଙ୍କ ବିଷୟରେ ନିଶ୍ଚିନ୍ତ ଥାଆନ୍ତି । ଦିନବେଳେ ବି ବିଶେଷ

ପରିସ୍ଥିତି କ ଉପୁଜିଲେ ସେମାନେ ସେତେ ପରିସ୍ତ ହୋଇନଥାନ୍ତି । ଏ ପରିସ୍ଥିତି ଥିଲା ସୁଭାଷଙ୍କର ଅନ୍ତର୍ଦ୍ଧାନ ପାଇଁ ଅନୁକୂଳ । ସେ ବୋଧହୁଏ ସହଜରେ ପ୍ରତିକୂଳ ପରିସ୍ଥିତିକୁ ଏଡ଼ାଇ ଦେଇ ଲକ୍ଷ୍ୟପଥରେ ଆଗେଇ ଯାଇପାରିବେ ବୋଲି ଆତ୍ମ-ପ୍ରତ୍ୟୟ ସୃଷ୍ଟି କରିଥିଲେ ।

ଅନ୍ତର୍ଦ୍ଧାନ ହୋଇଯିବାର ଶେଷ ମୁହୂର୍ତ୍ତ ଆସି ପହଞ୍ଚିଲା । ଘରର କୌଣସି ବ୍ୟକ୍ତି ଟିକିଏ ବି ସୂଚକ ପାଇଲେ ନାହିଁ । ସୁଭାଷ ନିଭୃତରେ ଯାଇ ନିଜକୁ ସଜାଇ ନେଲେ ଛଦ୍ମ-ବେଶରେ । ନିଜକୁ ପରିଚୟ କରିବାର ନୂତନ ନାଁଟି ହେଲା "ମହମ୍ମଦ ଜିଆ-ଉଦ୍ଦିନ" । ନାମ ଅନୁସାରେ ବେଶଟି ପିନ୍ଧାଗଲା । ବିଲକୁଲ ଖାପ ଖାଇଲା ନାଁ ସହିତ । ସୁଭାଷଙ୍କର ଚେହେରାରେ ପରିବର୍ତ୍ତନର ନୂତନ ଆଲେଖ୍ୟ । ପୋଷାକର ମାଧ୍ୟମରେ ତାଙ୍କର ଅସଲ ରୂପକଳ୍ପ ଆତ୍ମଗୋପନ କଲା । ଦେହରେ ଥିଲା ପାଇଜାମା, ଲମ୍ବା କୋଟ, ମୁଣ୍ଡରେ କଳାଟୋପି, ଗୋଡ଼ରେ ଯୋତା, ଆଖିରେ ବହୁଳଭିତ୍ତିକଲର ଚଷମା ।

ସୁଭାଷ ବିଦାୟ ନେଲାବେଳକୁ ରାତି ପ୍ରାୟ ଗୋଟାଏ । ସମସ୍ତେ ତ ଶୋଇଯାଇଥିଲେ । ଇଲା ତା କୋଠରିରେ ଅପେକ୍ଷା କରିଥିଲା ବିଦାୟ ମୁହୂର୍ତ୍ତକୁ । ଶିଶିର ନିଜକୁ ସଜେଇ ନେଇଥିଲେ ଗାଡ଼ିର ସମ୍ଭ୍ରାନ୍ତ ମାଲିକ ଭାବରେ । ସେ ଗାଡ଼ି ଚଳାଇଲେ, ସୁଭାଷ ଡ୍ରାଇଭର ଭାବରେ ପାଖରେ ବସିବେ ଓ ଡ୍ରାଇଭରର ଆଜବ୍ କାଇଦା ଦେଖାଇବେ । ଯେକୌଣସି ସାମ୍ଭାବ୍ୟ ପ୍ରତିକୂଳ ପରିସ୍ଥିତିର ମୁକାବିଲା ପାଇଁ ସେମାନେ ପ୍ରସ୍ତୁତ ଥିଲେ । ସମସ୍ତଙ୍କ ସନ୍ଦେହକୁ ଲାଘବ କଲାପରି ପ୍ରତ୍ୟେକ ପ୍ରଶ୍ନର ସମୁଚିତ ଉତ୍ତର ସେ ସ୍ଥିର କରିଥିଲେ ।

କନ୍ୟାପ୍ରତିମ ଇଲାକୁ ଶୁଭାଶିଷ ଦେଇ ସୁଭାଷ ବାହାରିଆସିଲେ । ଆକାଶରେ ଶୁକ୍ଳ ଚନ୍ଦ୍ରର ଶୁଭ୍ର ଚନ୍ଦ୍ରିମା । ଉଜ୍ଜ୍ୱଳ ତାରକାପୁଞ୍ଜର କିରଣଜାଲ ଜ୍ୟୋତ୍ସ୍ନା ସହିତ ଲୁଚକାଳି ଖେଳୁଛି । ପ୍ରବାହିତ ହେଉଛି ନିଶାର୍ଦ୍ଧ ସମୀରଣ ସୁଲୁସୁଲୁ ହୋଇ ।

ସୁଭାଷ ବାହାରିଲେ ଅତି ସନ୍ତର୍ପଣରେ । ସତେ ଯେପରି ଘରକାନ୍ଥର ଇଟାଗୁଡ଼ିକ ଭିତରୁ ବାହାରି ଆସିଛନ୍ତି ବାହାରକୁ ପ୍ରିୟ ନେତାଜୀଙ୍କୁ ଅଶ୍ରୁଳ ବିଦାୟ ଦେବାପାଇଁ । ସମସ୍ତେ ସତର୍କ, ସଜାଗ । ସେ ଘରକାନ୍ଥ ସହିତ ନିଜକୁ ଛପାଇ ଦେଇ ଧୀର ପଦପାତ-କରୁଥାନ୍ତି ଧୀରେ ଧୀରେ । କାନ୍ଥକୁ ନିଜର ସ୍ନେହ ସ୍ପର୍ଶ ଦେଇ ସତେଅବା କହୁଥାନ୍ତି, ତମେ ଏତେ ଦୀର୍ଘ ଦିନ ମୋତେ ମା'ପରି କୋଳରେ ଆଶ୍ରୟଦେଇ ପାଳନ କରିଥିଲ; ଏବେ ବିଦାୟ ନେଉଛି···ଏ ବିଦାୟ ହୁଏତ ଜୀବନର ଶେଷ ବିଦାୟ ହୋଇପାରେ । ଜୀବନରେ ପୁଣି ଥରେ ସୁଯୋଗ ମିଳିବ କି ନାହିଁ ତୁମ କୋଳକୁ ଫେରିବାକୁ । ମୋତେ ଆଶୀର୍ବାଦ ଦିଅ···ଯାତ୍ରା ମୋର ସଫଳ ହେଉ ।

ଘରର ଝରକା କବାଟ ପବନର ପ୍ରତିରୋଧରେ ଯେଉଁ କ୍ଷୀଣ ଶବ୍ଦ କରୁଥିଲେ ଓ ରାତ୍ରିର ନିସ୍ତବ୍ଧତା ମଧ୍ୟରେ ଯାହା ଚହଲ ସୃଷ୍ଟି କରିବା ପାଇଁ ଯଥେଷ୍ଟ ଥିଲା, ତାହା ମଧ୍ୟ ଆସ୍ତେ

ବନ୍ଦ ହୋଇଗଲା । ପ୍ରସାରିତ ବାହୁ ଭିତରେ ସୁଭାଷ ନିଜକୁ ଅର୍ପଣକଲେ···କହିଲେ, "ତୁମେ ତୁମର ବଜ୍ରହସ୍ତରେ ଏପର୍ଯ୍ୟନ୍ତ ମୋତେ ସୁରକ୍ଷା କରିଥିଲ; ଆଜି ମୋତେ ବିଦାୟ ଦିଅ···ହୁଏତ ଏ ବିଦାୟ ଚିରଦିନ ପାଇଁ । ଝରକା, କବାଟ, ଦରଜା ସେଇପରି ନିଶ୍ଚଳ ମୂର୍ତ୍ତିପରି ଛିଡ଼ାହୋଇଥିଲେ । ସମସ୍ତେ ନିର୍ବାକ, ନିର୍ବାତ ଦୀପଶିଖା ପରି ସ୍ଥିର ।

ଘରର ପରିବେଶରେ କୌଣସି ପ୍ରକାର ପରିବର୍ତ୍ତନର ସୂଚକ ନାହିଁ । ସୁଭାଷ ପାଦ ଚିପିଚିପି ଖୁବ୍ ସତର୍କତାର ସହିତ ଗାଡ଼ିରେ ଯାଇ ବସିଲେ । ଶିଶିର ସବେଗରେ ଗାଡ଼ି ଛୁଟାଇ ଆଗେଇଗଲେ ଆଗକୁ । ଏକ ନୂତନ ପ୍ରଳୟ ପର୍ବର ଏଇ ହେଉଛି ଜନ୍ମମୁହୂର୍ତ୍ତ । ଜନ୍ମଭୂମିର ମୁକ୍ତିପାଇଁ ଜଣେ ମାତୃପ୍ରେମୀ ସନ୍ତାନର ଏଇ ହେଉଛି ଆତ୍ମୋତ୍ସର୍ଗିତ ଦୁଃଖ-ଦୀକ୍ଷା ଗ୍ରହଣର ମହୋତ୍ସବ । ଏ ଜାତିର ଆଗାମୀ ବଂଶଧରଙ୍କ ପାଇଁ ଏ ମହାନ୍ ସୁଯୋଗ ତ ଆଉ ମିଳିବ ନାହିଁ; ତେବେ ବହୁ ତପୋନିଷ୍ଠ ତାପସମାନଙ୍କର ତ୍ୟାଗରେ ଯେଉଁ ସ୍ୱାଧୀନତା ମିଳିଛି ତାହାର ସୁରକ୍ଷାପାଇଁ ଏହା ନିଶ୍ଚୟ ପ୍ରେରଣା ଦେବ ।

ସୁଭାଷ କାଳେ କାଳେ ରହିବେ ଭାରତୀୟ ଯୁବମାନସର ଅଗ୍ରପୂଜ୍ୟ ପ୍ରତିନିଧି ଭାବରେ ।

ଗାଡ଼ି ସିଧା ବାହାରିଲା ତା ଲକ୍ଷ୍ୟପଥରେ; ସତେଯେପରି ଶତ୍ରୁ ଶିବିରକୁ ଧ୍ୱଂସକରି ସ୍ୱାଧୀନତାକୁ ହାସଲ କରିବାପାଇଁ ମହାକାଳ ରଥ ଆଗକୁ ଛୁଟିଛି । ବିଦାୟ ପରେ ଘରର ବାତାବରଣରେ କୌଣସି ପରିବର୍ତ୍ତନ କରିବାକୁ ଦିଆଗଲାନାହିଁ—ସତେ ଯେପରି ସବୁ ଠିକ୍‌ଠାକ୍ ଚାଲିଛି; କିଛି ଅସ୍ୱାଭାବିକତା ନାହିଁ । ସନ୍ଦେହର ଶିଉଳି ପବନ କାହାକୁ ବି ଚମକାଇ ପାରିବନି—ପାରିଲାନି ମଧ୍ୟ ।

ପୁଲିସମାନେ ମହାଆନନ୍ଦରେ ଶୀତରାତିରେ ଶୋଇଥାନ୍ତି ଉଷ୍ଣଶଯ୍ୟାର ଉଷ୍ଣତାକୁ ସମ୍ବଳକରି । କଲିକତା ସହରର ଅନିଦ୍ର ରଜନୀରେ ମଟରର ଘର୍ଘର ଶବ୍ଦ ସେମାନଙ୍କର ଦେହସୁହା ହୋଇଯାଇଛି; ତେଣୁ ଏଇ ଗୋଟାଏ କାରଣ ପାଇଁ ସୁଖନିଦ୍ରାକୁ ବ୍ୟାହତ କରିବାର ଅବକାଶ ନାହିଁ ।

ପବନର ବେଗ ସହିତ ତାଳ ପକାଇ ଗାଡ଼ି ଚାଲିଥାଏ ଆଗକୁ । ଯେକୌଣସି ଗାଡ଼ିକୁ ପଛରୁ ଦେଖିଲେ ମନେ ହେଉଥିଲା ସତେଯେପରି ତାହା ତାଙ୍କୁ ଗୋଡ଼ାଇଛି । କେହି ଅନୁସରଣ କରୁନଥିଲେ ମଧ୍ୟ ଆବେଗର ଭୂତଟା ଯେ ପାଖେ ପାଖେ ଗୋଡ଼ାଇଥିଲା, ସେମାନେ ତାହା ଭଲରୂପେ ଜାଣିଥିଲେ । ଅନ୍ୟର ସନ୍ଦେହ ଅପେକ୍ଷା ନିଜ ଉପରେ ନିଜର ସନ୍ଦେହଟା ଏତେମୋଟାରେ ତୀବ୍ର ଥିଲା ଯେ, ଶିଶିର ବିଚଳିତ ହେବାପରି ଜଣାଯାଉଥିଲେ; କିନ୍ତୁ ସୁଭାଷ ତାଙ୍କୁ ଆଶ୍ୱାସନା ଦେଇ ମନୋବଳ ସୃଷ୍ଟି କରୁଥିଲେ ।

ଏ ଯାତ୍ରା ଥିଲା ଉଦ୍ଦାମ ସ୍ୱପ୍ନର ସଫଳତା ପାଇଁ ଏକ ମହାନ୍ ଯାତ୍ରା । କୌଣସି ଦୁଃଖ, ବିପଦ, ଆଶଙ୍କା, ଯନ୍ତ୍ରଣାର ଭୟ ଏ ଯାତ୍ରାପଥରେ ପ୍ରତିବନ୍ଧକ ସୃଷ୍ଟି କରିପାରିନଥିଲା ।

ସେତେବେଳକୁ ରାତି ସାଢ଼େ ଘଣ୍ଟା ହୋଇଗଲାଣି ।

ଗାଡ଼ି ବର୍ଦ୍ଧମାନରେ ପହଞ୍ଚିଗଲାଣି । ନିଦ୍ରିତ ସହର ଏଇ ସଦ୍ୟ ଶଯ୍ୟାତ୍ୟାଗ କରିବାପାଇଁ ପ୍ରସ୍ତୁତ ହେଉଛି ଅଳସ ନିଦ୍ରାର ଗୁଞ୍ଜନ ଭିତରେ । ଗାଡ଼ି କିନ୍ତୁ ଅନଳସ ଗତିରେ ଆଗେଇଥିଲା । କିଛିସମୟ ପରେ ଆକାଶରେ ସିନ୍ଦୂର ଫାଟିଲା । ଆକାଶ ହେଲା ନୀଳମାମିଶା ଲାଲଗୁଲାଲ । ଶୁଭ ଶୁକ୍ରବାରର ନୂତନ ସୂର୍ଯ୍ୟ ଅଭିନନ୍ଦନ ଜଣାଇଲେ ସ୍ୱାଧୀନ ଭାରତର ଭାବୀ ସୂର୍ଯ୍ୟ ନେତାଜୀଙ୍କୁ । ଧାନବାଦରେ ପହଞ୍ଚିଲା ବେଳକୁ ପ୍ରାୟ ଦିନ ହୋଇଗଲାଣି । ଧାନବାଦରୁ ବାରାରି ବେଶି ବାଟ ନୁହେଁ । ସେଠାରେ ଶିଶିରଙ୍କ ଭାଇଙ୍କ ଘର । ସେ ସେଠାରେ ଓହ୍ଲାଇବେ । ନିରାପଦତା ଭିତରେ ଟିକିଏ ବିଶ୍ରାମ ନେଇ ନିଜର କର୍ମପନ୍ଥା ସ୍ଥିର କରିବେ ।

ଶିଶିର ସୁଭାଷଙ୍କୁ କିଛି ଦୂରରୁ ଓହ୍ଲାଇ ଦେଇ ଏକା ଗାଡ଼ି ଚଳାଇ ତାଙ୍କ ଘରକୁ ଗଲେ । ଯିବାପରେ ସେ ଭାଇ-ଭାଉଜଙ୍କୁ ସୁଭାଷଙ୍କ ଗୋପନ ଯାତ୍ରା ବିଷୟରେ ଧାରଣା ଦେଲେ । ସୁଭାଷ ଯେ ଛଦ୍ମବେଶରେ ଏଇ ବର୍ତ୍ତମାନ ଆସି ପହଞ୍ଚିବେ, ତାହା ସେମାନେ ଜାଣିବା ପରେ ନିଜକୁ ପ୍ରସ୍ତୁତ କରିନେଲେ । ସୁଭାଷ ପହଞ୍ଚିବା ପରେ ଜଣେ ଆଗନ୍ତୁକ ଭାବରେ ତାଙ୍କ ସହିତ ସମ୍ପର୍କ ରଖାଗଲା । ବ୍ୟବସାୟ ସମ୍ବନ୍ଧୀୟ କଥାବାର୍ତ୍ତା ପାଇଁ ପ୍ରାୟ ସନ୍ଧ୍ୟା ପର୍ଯ୍ୟନ୍ତ ତାଙ୍କୁ ସେଠାରେ ଅପେକ୍ଷା କରିବାକୁ ପଡ଼ିଲା । ଏହା ଥିଲା ସଂପୂର୍ଣ୍ଣ ଏକ ଅଭିନୟ; ସନ୍ଧ୍ୟାରେ ଗାଡ଼ି ଧରିବା ପାଇଁ ସମୟ କଟାଇବାର ସୁଚିନ୍ତିତ କୌଶଳ ।

ସନ୍ଧ୍ୟାରେ ସୁଭାଷ କଥାବାର୍ତ୍ତା ସାରି ବିଦାୟନେଲେ । ଅନ୍ଧକାର ରାସ୍ତାରେ ନିଜକୁ ମିଶାଇଦେଲେ । ଶିଶିର ଓ ତାଙ୍କର ଭାଇ-ଭାଉଜ କିଛି ସମୟ ପରେ ବୁଲିଯିବାର ବାହାନାରେ ଘରୁ ବାହାରିଗଲେ । କିଛି ବାଟ ଅତିକ୍ରମ କରିବା ପରେ ସୁଭାଷଙ୍କୁ ଗାଡ଼ିରେ ବସାଇ ଲକ୍ଷ୍ୟପଥରେ ଆଗେଇଲେ । ସେମାନେ ଗୋମାରେ ପହଞ୍ଚି ସେଠାରେ ତାଙ୍କୁ ଗାଡ଼ି ଚଢ଼ାଇଦେବେ ।

ସେତେବେଳକୁ ପ୍ରାୟ ମଧ୍ୟରାତ୍ର । ଗାଡ଼ି ଆସି ପହଞ୍ଚିଲା ଷ୍ଟେସନରେ । ଖୁବ୍ ଅଳ୍ପ ସମୟ ରହଣି । ସୁଭାଷ ଚଞ୍ଚଳ ହୋଇ ଉଠିଥିଲେ ଗାଡ଼ି ଧରିବେ ବୋଲି; କିନ୍ତୁ ମୁଖ-ମଣ୍ଡଳରେ ସେହି ସ୍ୱଭାବସିଦ୍ଧ ଗାମ୍ଭୀର୍ଯ୍ୟ । ବିଦାୟ ବେଳ ଉପସ୍ଥିତ ହେଲା । ସେ ସମସ୍ତଙ୍କୁ ଚାହିଁ ଭାବ-ଗମ୍ଭୀର କଣ୍ଠରେ କହିଲେ, "ତୁମେ ଏଥର ଘରକୁ ଫେରିଯାଅ । ମୁଁ ଯାଉଛି ।"

ଗାଡ଼ି ବିକଟାଳ ନାଦକରି ଆଗକୁ ଆଗେଇଗଲା । ବିପ୍ଳବର ବାର୍ତ୍ତାବହକୁ ସେ ସାଥିରେ ନେଇଯାଉଛି । ତାର ସ୍ୱର, ଛନ୍ଦ, ଗତିଧାରା ସବୁରି ଭିତରେ ବିପ୍ଳବର ବିଜୟ ନିର୍ଘୋଷ । ଅନେକ ଯାତ୍ରୀ ଅତୀତରେ ସେ ଗାଡ଼ିରେ ଯାଇଛନ୍ତି ଓ ଭବିଷ୍ୟତରେ ମଧ୍ୟ ଯିବେ; କିନ୍ତୁ ସ୍ୱାଧୀନ ଭାରତର ଦେବଦୂତଙ୍କୁ ସେ ଯେ ଆଜି ତା କୋଳରେ ଅଭିଷିକ୍ତ କରିଛି; ଏହାହିଁ ତାର ଗୌରବ ।

ଗାଡ଼ି ଚଳିଲା ଗତିରେ ଆଗକୁ ଆଗେଇଗଲା । ଶିଶିର ଓ ତାଙ୍କ ଭାଇ-ଭାଉଜ ଦୂରକୁ ଚାହିଁଥାନ୍ତି ଅପଲକ ନୟନରେ—ଅନ୍ଧକାର ଭିତରେ ତିନୋଟି ଅଶ୍ରୁସିକ୍ତ ଛାୟାମୂର୍ତ୍ତି । ନିଷ୍ଫଳ ଭାବାବେଗରେ ଛିଡ଼ାହୋଇଥାନ୍ତି ସେମାନେ । କିଛି ସମୟପରେ ଗାଡ଼ିର ଆଲୋକମାଳା ଅନ୍ଧକାର ମଧ୍ୟରେ ଲୁଚିଗଲା । ତିନିହେଁ ବାଷ୍ପାକୁଳିତ ନୟନରେ ପଛକୁ ମୁହଁ ଫେରାଇଲେ । ସ୍ୱାଧୀନ ଭାରତର ସ୍ୱପ୍ନ-ପାଗଳ ଯୁବକ ସୁଭାଷ ମାତୃଭୂମିର ମୁକ୍ତିପାଇଁ ମାତୃଭୂମିରୁ ବିଦାୟ ନେଲେ ।

ଗାଡ଼ି ଭିତରେ ପଶ୍ଚିମା ମୁସଲମାନର ବେଶରେ ସୁଭାଷଙ୍କୁ କେହି ଚିହ୍ନିପାରିଲେ ନାହିଁ । ଅନ୍ଧକାର ବୁକୁ ବିଦୀର୍ଣ୍ଣ କରି ଗାଡ଼ି ଚାଲିଥାଏ ପାହାଡ଼-ପର୍ବତଘେରା ବନଭୂମି ଭିତରେ । ଆବେଗ ଓ ଉଦ୍‌ବେଗ ନେଇ ସୁଭାଷ ଆଗେଇଥିଲେ ବି ବାହାରକୁ ତାହା ଯେପରି ପ୍ରକାଶିତ ନ ହେବ, ସେଥିପାଇଁ ସେ ଅତ୍ୟନ୍ତ ସତର୍କ ।

ତା'ପର ଦିନର ଘଟଣା । ଡବାରେ ଚଢ଼ିଲେ ଜଣେ ଶିଖଯାତ୍ରୀ । ସୁଭାଷଙ୍କ ସହିତ ତାଙ୍କର ବାର୍ତ୍ତାଳାପ ହେଲା । ଚିହ୍ନିବାର ତ ପ୍ରଶ୍ନ ଉଠୁନି, ସତେ ଅବା ଜଣେ ମୌଲବୀ । କଥାପ୍ରସଙ୍ଗରେ ସେ ସୁଭାଷଙ୍କର ପରିଚୟ ଲୋଡ଼ିଲେ । ସୁଭାଷ ଜଣେ ଇନସୁରେନସ୍ ଏଜେଣ୍ଟ ଭାବରେ ନିଜର ପରିଚୟ ଦେଲେ—ନାଁ ଜିଆଉଦ୍ଦୀନ । ଘର ଲକ୍ଷ୍ନୌରେ । ବ୍ୟବସାୟ ସନ୍ଧାନରେ ରାୱଲପିଣ୍ଡି ଯାଉଛନ୍ତି । ବେଶ୍, ସାବଲୀଳ ପରିଚୟ । ସନ୍ଦେହର ପ୍ରଶ୍ନ ନାହିଁ; ତଥାପି ସେ ସତର୍କ ଥିଲେ । ଗାଡ଼ି ଷ୍ଟେସନରେ ଅଟକିଲେ ସେ ତଳକୁ ଓହ୍ଲାଉ ନଥିଲେ କିମ୍ବା ମୁହଁଟେକି ଷ୍ଟେସନ ଆଡ଼କୁ ଚାହୁଁ ନଥିଲେ; ବରଂ ଖବର କାଗଜ ପଢ଼ିବା ବାହାନାରେ ମୁହଁକୁ ଆବରଣଯୁକ୍ତ କରୁଥିଲେ ।

ଗାଡ଼ି ଆସି ପହଞ୍ଚିଲା ପେଶାୱାରରେ । ତାଙ୍କ ପାଇଁ ଷ୍ଟେସନରେ ଗାଡ଼ି ଅପେକ୍ଷା କରିଥିଲା । ଏଠାରେ ସେ ପ୍ରାୟ ଦୁଇଦିନ ବିଶ୍ରାମ ନେଲେ ଜଣେ ପଠାଣଙ୍କ ଘରେ ଅତିଥି ଭାବରେ । ସେ ତାଙ୍କର ଆତିଥ୍ୟରେ ମୁଗ୍ଧ ହୋଇଥିଲେ । ନେତାଜୀ ତାଙ୍କଠାରୁ ଯଥେଷ୍ଟ ନୈତିକ ସମର୍ଥନ ଲାଭ କରିଥିଲେ ।

କାବୁଲ ଦେଇ ଇଉରୋପ ଯିବାହିଁ ଥିଲା ସୁଭାଷଙ୍କର ପରିକଳ୍ପନା । ସେ କାବୁଲଯାତ୍ରା ପାଇଁ ନିଜର ଅତ୍ୟନ୍ତ ବିଶ୍ୱସ୍ତ ଜଣେ ସହକର୍ମୀ ଭଗତରାମଙ୍କୁ ସାଥିରେ ନେଲେ । ତାଙ୍କର ଛଦ୍ମନାମ ହେଲା 'ରହମତ୍ ଖାଁ' । ସାଥିରେ ଚାରିଜଣ ବନ୍ଧୁକଧାରୀ ପଠାଣ ତାଙ୍କର ଦେହରକ୍ଷୀ ହିସାବରେ ଯାଇଥିଲେ । ନେତାଜୀଙ୍କର ଛଦ୍ମନାମ ତ ଥିଲା ଜିଆଉଦ୍ଦୀନ । ପଠାଣବେଶରେ ସେ ତାଙ୍କର ଯାତାୟାତ କରିବାରେ ବିଶେଷ ଅସୁବିଧା ହୋଇ ନଥିଲା, ତେବେ ବଣ-ପାହାଡ଼ଘେରା ଘଞ୍ଚ ଅରଣ୍ୟ ଓ କଙ୍କରିଲ ପ୍ରାନ୍ତର ଦେଇ ପଦବ୍ରଜରେ ଯିବା ତାଙ୍କପାଇଁ ଥିଲା ଅତ୍ୟନ୍ତ କଷ୍ଟକର । ଅବଶ୍ୟ ରାସ୍ତାର ସୁବିଧା ଥିବା ଅଞ୍ଚଳରେ ମଟରଗାଡ଼ିର ବ୍ୟବସ୍ଥା କରାଯାଇଥିଲା ।

ଗାଁଗଣ୍ଡା ଦେଇ ଯିବାବେଳେ ସେ ଲୋକମାନଙ୍କଠାରୁ ହୃଦୟଭରା ସ୍ନେହ ଶ୍ରଦ୍ଧା ତଥା ଆତିଥ୍ୟ ଲାଭ କରୁଥିଲେ । ମମତାର ମୈତ୍ରୀ-ବନ୍ଧନରେ ସେ ସମସ୍ତରେ ଆବଦ୍ଧ ହୋଇଯାଇଥିଲେ । ପ୍ରତ୍ୟେକ ସ୍ଥାନରେ ଲୋକମାନେ ତାଙ୍କର ନିରାପଦ ଯାତ୍ରା ପାଇଁ ସାହାଯ୍ୟ କରୁଥିଲେ । କେଉଁଠାରେ ଘୋଡ଼ାଗାଡ଼ି ସବାରୀର ସାହାଯ୍ୟ ମିଳୁଥିଲା ତ ଆଉ କେଉଁଠାରେ ଲୋକମାନେ ନିଜେ ତାଙ୍କୁ ଯାତ୍ରାପଥରେ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ । ସେମାନେ ଦୀର୍ଘପଥ ଅତିକ୍ରମ କରିବା ପରେ ଆସି ପହଞ୍ଚିଲେ କାବୁଲ ନଦୀ ପାଖରେ । ନଦୀର ଅପରପାର୍ଶ୍ୱରେ ଆଫଗାନିସ୍ଥାନ । ନଦୀରେ ନୌକା ନ ପାଇଲେ ଚମଡ଼ାର ଥଳିରେ ଭେଳାକରି ସେ ସମୟରେ ଲୋକେ ନଦୀ ପାରହୁଅନ୍ତି । ସୁଭାଷ ସେହି ଚମଡ଼ା-ଥଳି ଭେଳାରେ ନଦୀ ଅତିକ୍ରମ କରି ପହଞ୍ଚିଲେ ଆଫଗାନିସ୍ଥାନରେ ।

( ୯ )

ସୁଭାଷଙ୍କୁ ବିଦାୟ ଦେବା ପରେ ଶିଶିର କଲିକତା ଫେରିଆସିଲେ । ଶିଶିରଙ୍କର ବାପା, ବୋଉ ଏ ଅନ୍ତର୍ଦ୍ଧାନର ସୂଚନା ପାଇଥିଲେ ଓ ବହୁ ପ୍ରତୀକ୍ଷା ଭିତରେ ଅପେକ୍ଷା କରିଥିଲେ ଶିଶିରଙ୍କର ପ୍ରତ୍ୟାବର୍ତ୍ତନ ପାଇଁ । ତାଙ୍କୁ ଦେଖିଲାକ୍ଷଣି ଅତ୍ୟଧିକ ଆନନ୍ଦ ପ୍ରକାଶ କରିନଥିଲେ ନିଜର ପ୍ରତିକ୍ରିୟାକୁ ଅନ୍ୟ ପାଖରେ ସନ୍ଦେହ-ସିକ୍ତ ନକରିବେ ବୋଲି; ସତେ ଯେପରି କିଛି ଘଟି ନାହିଁ । ଶିଶିର ଯେପରି ଆଖପାଖ ବଜାରକୁ ଯାଇଥିଲେ କିଛି ଜିନିଷପତ୍ର କିଣିବାକୁ ଓ ଫେରିଛନ୍ତି । ସେ ମଧ୍ୟ ନିଜର ଚାଲିଚଳନ ଭାବଭଙ୍ଗୀରେ କୌଣସି ପରିବର୍ତ୍ତନର ସାମାନ୍ୟତମ ସୂଚନା ଦେଇନଥିଲେ ।

ଇଲା ଚରମ ବ୍ୟାକୁଳତା ଭିତରେ ଅପେକ୍ଷା କରିଥିଲା ଦାଦାଙ୍କର ଖବର ଜାଣିବାକୁ । ଶିଶିର ସୁଭାଷଙ୍କର ନିରାପଦ ଯାତ୍ରା ବିଷୟରେ ତାଙ୍କର ପିତା ଏବଂ ଇଲାକୁ ସୂଚନା ଦେଇ ଆଶ୍ୱସ୍ତ ହେଲେ । ଚାକରବାକର, ଘର ଓ ବାହାର ଲୋକ ସୁଭାଷଙ୍କର ଅନ୍ତର୍ଦ୍ଧାନ କଥା ଜାଣିପାରିଲେ ନାହିଁ । ସୁଭାଷ ଅନ୍ତର୍ଦ୍ଧାନ ପୂର୍ବରୁ ଦୀର୍ଘଦିନଧରି ଅସୁସ୍ଥତାର ଅଭିନୟ କରି ପ୍ରାୟ ସମସ୍ତଙ୍କ ସହିତ ସମ୍ପର୍କ ଛିନ୍ନ କରିଦେଇଥିଲେ । ଶିଶିର ଓ ଇଲାଙ୍କ ବ୍ୟତୀତ ଅନ୍ୟ କେହି ତାଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିବାର ସୁଯୋଗ ନଥିଲା । ଘରର ପୂଝାରୀ, ଚାକର ମଧ୍ୟ ତାଙ୍କୁ ଦେଖି ନଥିଲେ । କୋଠରି ଭିତରେ ପର୍ଦ୍ଦା ଅନ୍ତରାଳରେ ସେ ରହୁଥିଲେ । ଖାଦ୍ୟ-ସାମଗ୍ରୀ ପର୍ଦ୍ଦା ତଳେ କୋଠରି ଭିତରକୁ ଠେଲିଦିଆଯାଉଥିଲା ।

ଏହି ବ୍ୟବସ୍ଥା ଅନେକ ଦିନ ପାଇଁ ପୁଣି ଚାଲିଲା । ଚାକରବାକରଙ୍କ ମନରେ ସନ୍ଦେହ ସୃଷ୍ଟି ନକରିବା ପାଇଁ ଏହା ହିଁ ଥିଲା ଅଭିପ୍ରେତ । ସୁଭାଷଙ୍କ ବଦଳରେ ଶିଶିର ସେହି ସୁମିଷ୍ଟ ଖାଦ୍ୟ ଆନନ୍ଦର ସହିତ ପର୍ଦ୍ଦା ଅନ୍ତରାଳରେ ଭୋଜନ କରୁଥିଲେ ।

ଏହି ଅପ୍ରୀତିକର ଅଭିନୟ ଆଉ କେତେଦିନ ବା ଚାଲିଥାନ୍ତା । ଶରତ୍‌ଚନ୍ଦ୍ର ସ୍ଥିର କଲେ, ସେ ଅନ୍ତତଃ ସୁଭାଷଙ୍କର ଅନ୍ତର୍ଦ୍ଧାନର କାହାଣୀ ତାଙ୍କ ନିଜ ପକ୍ଷରୁ ପ୍ରକାଶ କରିଦେବେ । ଇଂରେଜ ସରକାରଙ୍କ ଗୁଇନ୍ଦା ବିଭାଗ ଆଗ ଜାଣିଗଲେ ଘର ସର୍ଚ୍ଚ ହେବ ଓ ସମସ୍ତେ ନାନା ହଇରାଣ ହରକତ ହେବେ । ଏଥିଭିତରେ ଦଶ-ବାର ଦିନ ବିତିଗଲାଣି । ସୁଭାଷ ନିଶ୍ଚୟ ସୀମାନ୍ତ ପାର ହୋଇ ଚାଲିଯିବେଣି । ନିଜ ତରଫରୁ ଏହା ପ୍ରକାଶ କରିଦେବା ବରଂ ନିରାପଦ ।

ଘଟଣାପ୍ରବାହର ପ୍ରାସଙ୍ଗିକତା ରକ୍ଷା କରିବା ପାଇଁ ଏକ କୌଶଳ ଚିନ୍ତା କରାଗଲା । ସୁଭାଷଙ୍କ ଅନ୍ତର୍ଦ୍ଧାନ ଖବରଟା ଅନ୍ୟ କାହାଠାରୁ ପ୍ରକାଶିତ ହେବା ଅପେକ୍ଷା ଘରର ଚାକର କିମ୍ବା ପୂଜାରୀମାନଙ୍କଠାରୁ ପ୍ରଥମେ ପ୍ରଚାରିତ ହେବା ବରଂ ଅଧିକ ଅନୁକୂଳ ହେବ । ଦିନେ ଆକସ୍ମିକ ଭାବରେ ପୂଜାରୀ ଘରଲୋକଙ୍କୁ ଏ ସଣଙ୍କ ସମ୍ବାଦ ଦେଇ ସମସ୍ତଙ୍କୁ ଚକିତ କରିଦେଲା । ସମ୍ବାଦଟା ହେଉଛି, ସେ ଦେଇଥିବା ଖାଦ୍ୟ ପର୍ଦ୍ଦା ପାଖରୁ କେହି ଗ୍ରହଣ କରିନାହାନ୍ତି । ସୁଭାଷଙ୍କ ଖାଦ୍ୟ ଅଭୁକ୍ତ ଅଛି ।

ଘରଭିତରେ ସମ୍ବାଦଟା ବିଜୁଳି ବେଗରେ ପ୍ରଚାରିତ ହୋଇଗଲା । ଚରମ ବ୍ୟସ୍ତତା ଭିତରେ ସମସ୍ତେ ସୁଭାଷଙ୍କ ଶୟନକକ୍ଷକୁ ଦଉଡ଼ିଲେ । ଦେଖାଗଲା, ସୁଭାଷଙ୍କ ଶଯ୍ୟା ଶୂନ୍ୟ ଅଛି । ସେ କେଉଁଆଡ଼େ ଚାଲିଯାଇଛନ୍ତି ରହସ୍ୟଜନକ ଭାବରେ । କାଳେ ଚିଠିପତ୍ର କିଛି ଛାଡ଼ିଯାଇଥିବେ କିମ୍ବା ପଳାୟନର କିଛି ସଙ୍କେତ କେଉଁଠାରେ ରହିଯାଇଥିବ ତାହା ଆବିଷ୍କାର କରିବାପାଇଁ ସମସ୍ତେ ଘରସାରା ତନ୍ନତନ୍ନ କରି ଖୋଜାଖୋଜି କଲେ । ତାଙ୍କର ଆଉ ଘର ଓ ବଗିଚା-ଘରକୁ ଲୋକ ପଠାଗଲା ଖୋଜିବା ପାଇଁ । ବନ୍ଧୁ-ବାନ୍ଧବ ଜ୍ଞାତିପରିଜନମାନଙ୍କ ଘରକୁ ପରିବାରର ଲୋକସବୁ ଖୋଜିବାକୁ ଚାଲିଗଲେ । ଖୋଜିବା ଭିତରେ ସୃଷ୍ଟି ହେଲା ଏକ ସୁନ୍ଦର ନାଟକ ଅଭିନୟ ।

ପୁଲିସ ସୁଭାଷଙ୍କ ଅନ୍ତର୍ଦ୍ଧାନର ଖବର ପାଇ କେବଳ ଯେ ବିସ୍ମିତ ହେଲା, ତା ନୁହେଁ, ଏହି ଦୁର୍ଘଟଣା ପୁଲିସମହଲରେ ଏକ ତୀବ୍ର ଆଲୋଡ଼ନ ସୃଷ୍ଟି କଲା । ପୁଲିସର କାର୍ଯ୍ୟକଳାପ ଓ ଗତିବିଧି ହୋଇଉଠିଲା ପୂର୍ବାପେକ୍ଷା ଅଧିକ କଠୋର । ସରକାରଙ୍କ ପାଖରେ ଏ ସମ୍ବାଦଟା ଥିଲା ତାଙ୍କ କୂଟନୈତିକ ଶିବିରରେ ବଜ୍ରାଘାତ ପରି । ସରକାରୀ ଗୁଇନ୍ଦା ସଂସ୍ଥାର କ୍ଲୀବତ୍ୱ ପ୍ରମାଣିତ ହୋଇଗଲା । ଜଣେ ବିପ୍ଲବୀର ଗୁଇନ୍ଦାଗିରି ସରକାରଙ୍କ ଗୁଇନ୍ଦା କାର୍ଯ୍ୟକଳାପକୁ ଯେ ପ୍ରତିହତ କରିଦେଇପାରିଲା, ଏହା ବ୍ରିଟିଶ ଶାସନ ବିପର୍ଯ୍ୟୟର ଏକ ଶାଣିତ ସୂଚନା । ଦେଶସାରା ଚାରିଆଡ଼େ ଏ ଖବର ବ୍ୟାପିଗଲା ସମ୍ବାଦପତ୍ରର ସମ୍ବାଦ ପାଇଁ ।

ବଙ୍ଗଳା 'ଆନନ୍ଦ ବଜାର' ପତ୍ରିକାରେ ୨୭-୧-୪୧ ତାରିଖରେ ସମ୍ବାଦ ପ୍ରକାଶ ପାଇଲା—"ସୁଭାଷଚନ୍ଦ୍ର ଅପ୍ରତ୍ୟାଶିତ ଭାବରେ ନିଜ ଗୃହରୁ ଅନ୍ତର୍ଦ୍ଧାନ ହୋଇ-ଯାଇଛନ୍ତି । ଏ ଦାରୁଣ ଦୁଃସମ୍ବାଦ ତାଙ୍କର ପରିବାର ଓ ଜ୍ଞାତି-ପରିଜନ ମଧ୍ୟରେ ଘୋର ଉଦ୍‌ବେଗ ସୃଷ୍ଟି କରିଛି । ସେ ଅତ୍ୟନ୍ତ ଅସୁସ୍ଥ ଥିଲେ । ପ୍ରତ୍ୟେକ ସମ୍ଭାବ୍ୟ ସ୍ଥାନ ଅନୁସନ୍ଧାନ ପରେ ବି କୌଣସି ସୂଚନା ମିଳିପାରିନାହିଁ ।"

ଇଂରାଜୀ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ' ପତ୍ରିକାରେ ଏ ସମ୍ବାଦଟି ନିମ୍ନ ଢଙ୍ଗରେ ପ୍ରକାଶିତ ହୋଇଥିଲା—"Great anxiety prevails amongst the relatives and friends of Sri Suvash Bose since yesterday ofternoon when it was noticed that he was not in his room where he was confined since his releas from jail in the lst week of December last. It is generally known that from the last few days he was observing strict silence and had not been seeing anybody not even the members of his femily but has been spending his time in religious practices. Anxiety is all the more acute on account of his present state of health.

Enquiries have been made at various places about him but up to the time of going to the press we understand he has not returned home."

ସୁଭାଷଙ୍କ ଅନ୍ତର୍ଦ୍ଧାନ ନେଇ ନାନା କଳ୍ପନାଜଳ୍ପନା ଚାଲିଲା । ଅନେକ ମନଗଢ଼ା କଥା ପ୍ରଚାରିତ ହେଲା । ପରେ ସେସବୁ ଅମୂଳକ ଓ ବିଭ୍ରାନ୍ତିକର ବୋଲି ପ୍ରମାଣିତ ହେଲା । ପୁଲିସ ନେତାଜୀଙ୍କର ପଳାୟନର ସୂତ୍ର ଆବିଷ୍କାର କରିବା ପାଇଁ ପୂର୍ଣ୍ଣଦମ୍‌ରେ ଲାଗିଛି; କିନ୍ତୁ ସଠିକତାର ସମ୍ଭାବନା ଅତି କ୍ଷୀଣ । ଏତେ ପ୍ରହରୀଙ୍କର ଜାଗ୍ରତ ଦୃଷ୍ଟିକୁ ଏଡ଼ାଇ ଦେଇ ନିର୍ଦ୍ଦ୍ୱନ୍ଦ୍ୱରେ ସେ ନିଷ୍କ୍ରାନ୍ତ ହୋଇଯିବା ପ୍ରକୃତରେ ଯେପରି ବିସ୍ମୟକର; ପୁଲିସର କାର୍ଯ୍ୟକଳାପ ପ୍ରତି ସେତିକି ଅହ୍ୱାନ ।

ସେତେବେଳେ ସାରା ଭାରତରେ ଉତ୍କଣ୍ଠାର ଆଲୋଡ଼ନ । କଂଗ୍ରେସ ଶିବିରରେ ତମସାର ଘନଘୁମ୍ପା । ଦକ୍ଷିଣପନ୍ଥୀ କିମ୍ବା ବାମପନ୍ଥୀ ଭାବନାର ପ୍ରଶ୍ନ ଉଠୁନାହିଁ—ସମସ୍ତେ ଗଭୀର ଭାବରେ ମର୍ମାହତ । ଭାରତର ସ୍ୱାଧୀନତା ଆଣିବା ଦିଗରେ ସୁଭାଷ ଯେ ତପୋନିଷ୍ଠ ସାଧକ ଥିଲେ, ଏଥିରେ କାହାର ଦ୍ୱିମତ ନଥିଲା । ସୁଭାଷଙ୍କର ଅନ୍ତର୍ଦ୍ଧାନ ନିଶ୍ଚୟ ଯେ ଭାରତର ସ୍ୱାଧୀନତା ପ୍ରଶ୍ନ ସହିତ ସମ୍ପର୍କିତ, ଏହା କଂଗ୍ରେସର ତୁଙ୍ଗ ନେତାମାନଙ୍କର

ବୁଦ୍ଧବୋଧ ହୋଇଥିଲା । ସେମାନଙ୍କର ଅଧିକାଂଶଙ୍କର ଧାରଣା, ଏହା ନୈରାଶ୍ୟ-ଜର୍ଜରିତ, ନିଷ୍ଫଳ ଭାବାପନ୍ନ ବ୍ୟକ୍ତିର ବୈରାଗ୍ୟ ବା ବିରାଗର ପୂର୍ବରାଗ ନୁହେଁ କିମ୍ବା ଏକ ଅପରାଧ-ପ୍ରବଣ ପଳାତକର ପଳାୟନ ନୁହେଁ; ବରଂ ସ୍ୱାଧୀନତାଲଭର ଏହା ଏକ ସମର-କୌଶଳ ।

ଗାନ୍ଧିଜୀ ନେତାଜୀଙ୍କ ଅନ୍ତର୍ଦ୍ଧାନର ସମ୍ବାଦ ପାଇ ହତବାକ୍ ହୋଇଯାଇଥିଲେ । ସେ ସଙ୍ଗେ ସଙ୍ଗେ ଶରତ୍‌ଚନ୍ଦ୍ରଙ୍କ ପାଖକୁ ଟେଲିଗ୍ରାମ୍ କରି ଘଟଣାର ସଠିକତା ଜାଣିବାଲାଗି ଚେଷ୍ଟା କରିଥିଲେ । ରବୀନ୍ଦ୍ରନାଥ ଠାକୁର, ରାଜେନ୍ଦ୍ର ପ୍ରସାଦ, ଜବାହରଲାଲ ନେହରୁ, ରାଜଗୋପାଳାଚାରୀ ପ୍ରଭୃତି ଭାରତର ତୁଙ୍ଗ ନେତାମାନେ ଉଦ୍‌ବେଗର ସହିତ ପରିସ୍ଥିତି ଜାଣିବାପାଇଁ ତାରବାର୍ତ୍ତା ପଠାଇଥିଲେ । ଶରତ୍‌ଚନ୍ଦ୍ରଙ୍କର ଅନୁରୂପ ଉଦ୍‌ବେଗଭରା ଉତ୍ତର ସେମାନଙ୍କୁ କୌଣସି ସିଦ୍ଧାନ୍ତରେ ପହଞ୍ଚାଇ ପାରିନଥିଲା । ଏ ପଳାୟନ ଥିଲା ସମସ୍ତଙ୍କ ପାଇଁ ରହସ୍ୟାବୃତ୍ତ ।

ଏପାଖରେ ସୁଭାଷ ଆସି ପହଞ୍ଚିଲେଣି କାବୁଲ ସହରରେ । ଉତ୍ତମଚାନ୍ଦ ମାଲହୋତ୍ରା ଜଣେ ଭାରତୀୟ ବ୍ୟବସାୟୀ । କାବୁଲରେ ସେ ରହୁଥିଲେ । ସୁଭାଷ ଓ ଭଗତରାମ ତାଙ୍କର ଅତିଥି ହେଲେ । ସୁଭାଷ ଜଣେ ମୂକ ବଧିର ଭାଇ ଓ ଭଗତରାମ ତାଙ୍କୁ ସାଥିରେ ନେଇ ଆସିଛନ୍ତି ତୀର୍ଥଯାତ୍ରା କରିବାପାଇଁ—ଏହି ଧାରଣା ସମସ୍ତଙ୍କୁ ଦିଆଯାଇଥିଲା । ନେତାଜୀଙ୍କର ଅଭିନୟ ମଧ୍ୟ ଅତି ନିଖୁଣ ଥିଲା । ଉତ୍ତମଚାନ୍ଦ ତଥା ତାଙ୍କ ପରିବାରର ସମସ୍ତେ ତାଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ତଥା ଆତିଥ୍ୟ ପ୍ରଦାନ କରିଥିଲେ । ଉତ୍ତମଚାନ୍ଦ ଏ ମହାନାଟକର ରହସ୍ୟ ଯେତେବେଳେ ଜାଣିଲେ, ସେତେବେଳକୁ ସୁଭାଷ ତାଙ୍କଠାରୁ ଥିଲେ ବହୁତ ଦୂରରେ । ସେ ଉତ୍ତର-ଜୀବନରେ ଏହି ରୋମାଞ୍ଚକର କାହାଣୀକୁ ରୂପଦେବା ପାଇଁ ଏକ ପୁସ୍ତକ ପ୍ରକାଶ କରିଥିଲେ, ତା ନାଁ ଥିଲା "When Bose was Ziauddin" । ଏହା ଯେପରି ରୋମାଞ୍ଚକର; ସେପରି ବିସ୍ମୟୋଦ୍ଦୀପକ ।

ଆଫଗାନିସ୍ଥାନର ରାଜଧାନୀ କାବୁଲ । ସେଠାରେ ନେତାଜୀ ଛଦ୍ମବେଶରେ କେତେଦିନ ରହିବାପରେ ଭଗତରାମଙ୍କୁ ଫେରାଇ ଦେଲେ ଓ ନିଜେ ନିଃସଙ୍ଗ ସୈନିକ ପରି ତାଙ୍କର ଲକ୍ଷ୍ୟପଥରେ ଆଗେଇଗଲେ ।

ତେଣେ ସାରା ଭାରତରେ ଗିରଫଦାରି ପରୱାନା ଚାଲୁଥାଏ । ପୁଲିସ କଡ଼ାକଡ଼ି ଭାବରେ ସୁଭାଷଙ୍କୁ ଭାରତର ପ୍ରତି କୋଣ-ବକୋଣ ଖୋଜୁଥାଏ । ଅନୁସନ୍ଧାନ କାର୍ଯ୍ୟ କ୍ଷିପ୍ର ଗତିରେ ଚାଲିଥାଏ । କିଛିଦିନପରେ ଭଗତରାମ ଫେରିଆସି ସୁଭାଷଙ୍କର ନିରାପଦ ଯାତ୍ରା ବିଷୟରେ ତାଙ୍କ ଘରେ ଖବର ଦେଲେ । ଶରତ୍‌ଚନ୍ଦ୍ର ଓ ତାଙ୍କର ପରିବାରବର୍ଗ ଟିକିଏ ଆଶ୍ୱସ୍ତ ହେଲେ । ଶିଶିର ଏବଂ ଇଲା ଭଗତରାମଙ୍କଠାରୁ ସବିଶେଷ ଘଟଣା ଜାଣିବାକୁ ପାଇଲେ । ଅବଶ୍ୟ ଘରର ଅନ୍ୟମାନଙ୍କ ପାଇଁ ଅନେକ କଥା ଗୋପନୀୟ ଥିଲା ।

ସୁଭାଷ କାବୁଲରେ ପ୍ରଥମେ ରୁଷର ରାଷ୍ଟ୍ରଦୂତଙ୍କୁ ଭେଟି ନିଜର ମନକଥା କହିବାକୁ ଇଚ୍ଛାକରିଥିଲେ । ଭାରତର ସ୍ୱାଧୀନତା ପାଇଁ ରୁଷର ସାହାଯ୍ୟ ପାଇବାକୁ ସେ ଅନୁରୋଧ କରିଥାନ୍ତେ; କିନ୍ତୁ ଦୁଃଖର କଥା, ତାଙ୍କ ସହିତ ନେତାଜୀଙ୍କର ସାକ୍ଷାତ ହୋଇ ପାରିଲନାହିଁ । ତାପରେ ସେ ସାକ୍ଷାତ କଲେ ଇଟାଲୀର ରାଷ୍ଟ୍ରଦୂତଙ୍କୁ । ସୁଭାଷଙ୍କର ଧୈର୍ଯ୍ୟ, ସାହସ ଓ ତ୍ୟାଗ ତାଙ୍କୁ ବିସ୍ମିତ କରିଥିଲା । ସେ ଆଗ୍ରହ ପ୍ରକାଶ କଲେ ସୁଭାଷଙ୍କୁ ସାହାଯ୍ୟ କରିବାକୁ । ଏଥିପାଇଁ ପ୍ରଥମେ ତାଙ୍କୁ ଏକ ଇଟାଲୀୟ ଛଦ୍ମନାମ ଗ୍ରହଣ କରିବାକୁ ହେଲା । ନାଁଟି ହେଲ 'ଓରଲାଣ୍ଡୋ ମାକୋଣ୍ଡୋ' । ପାସ୍‌ପୋର୍ଟ ପାଇବା ପାଇଁ ଏହି ଇଟାଲୀୟ ନାଁଟି ସାହାଯ୍ୟ କରିଥିଲା । ସେହି ନାଁରେ ସେ ପାସ୍‌ପୋର୍ଟ ପାଇ ଯାତ୍ରା ଆରମ୍ଭ କଲେ ବର୍ଲିନକୁ ।

ସେ ସୁବିଧା ପାଇ ପହଞ୍ଚିଲେ ରୁଷର ରାଜଧାନୀ ମସ୍କୋରେ । ସେଦିନ ମାର୍ଚ୍ଚ ମାସ ୨୭ ତାରିଖ । ସେଠାରୁ ସେ ବର୍ଲିନ ଯାତ୍ରା କରିବେ । ସେତେବେଳେ ଷ୍ଟାଲିନ୍ ଥିଲେ ମସ୍କୋର ଶାସନକର୍ତ୍ତା । ସେ ତାଙ୍କ ସହିତ ସାକ୍ଷାତ କରିବାକୁ ଯାଇ ସଫଳ ହେଲେ । ଷ୍ଟାଲିନ୍ ସୁଭାଷଙ୍କର ଦେଶାତ୍ମବୋଧକୁ ସମ୍ମାନ ଦେଇଥିଲେ ମଧ୍ୟ ଭାରତର ସ୍ୱାଧୀନତା ପାଇଁ ସାଂପ୍ରତିକ ପରିସ୍ଥିତିରେ ଇଂରେଜମାନଙ୍କ ସହିତ ଅଯଥା ଶତ୍ରୁତା କରିବାକୁ ସେ ପସନ୍ଦ କରିନଥିଲେ; ତେବେ ତାଙ୍କର ନୈତିକ ସମର୍ଥନ ସବୁବେଳେ ରହିଛି ଓ ରହିବ ବୋଲି ତାଙ୍କୁ ଆଶ୍ୱାସନା ଦେଇଥିଲେ । ସୁଭାଷଙ୍କର ଲକ୍ଷ୍ୟ ଓ କାର୍ଯ୍ୟ-ପଦ୍ଧତିକୁ ସେ ପସନ୍ଦ କରିଥିଲେ । ଭାରତରୁ ଇଂରେଜ ଶାସନର ବିଲୋପକୁ ଷ୍ଟାଲିନ୍ ନୈତିକ ସମର୍ଥନ ଦେଇଥିଲେ । ରୁଷିଆ ସାମୟିକ ସ୍ୱର ଉତ୍ତୋଳନ କରୁଥିଲା ଭାରତରେ ଚାଲିଥିବା ବିଦେଶୀ ଶାସନତନ୍ତ୍ର ବିରୁଦ୍ଧରେ । ପୁଞ୍ଜିବାଦ ବିପକ୍ଷରେ ରୁଷିଆର ଯେଉଁ ବିଶ୍ୱବ୍ୟାପୀ କାର୍ଯ୍ୟକ୍ରମ ଚାଲିଥିଲା, ଏହାହିଁ ଥିଲା ତା'ର ଏକ ଅଂଶବିଶେଷ । ଅନ୍ୟ କୌଣସି ପ୍ରକାରର ବିଶେଷ ଲାଭ ମିଳୁ ନମିଳୁ, ବ୍ରିଟିଶ ସରକାରକୁ ବିବ୍ରତ କରିବା ଦିଗରେ ଏହା ସାହାଯ୍ୟ କରିଥିଲା ।

ବ୍ରିଟେନ ଓ ଜର୍ମାନ ଭିତରେ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ଜର୍ମାନର ଦୁର୍ଦ୍ଧର୍ଷ ଶାସକ ହିଟଲର୍ ସେତେବେଳେ ବିଶ୍ୱରେ ଚହଳ ପକାଇଥିଲେ । ହିଟଲର୍ ଇଂରେଜ-ମାନଙ୍କର ଏକ ଦୁର୍ଜୟ ବିରୁଦ୍ଧ ଶକ୍ତି ଭାବରେ ଛିଡ଼ାହୋଇଥିବାରୁ ସୁଭାଷ ମସ୍କୋରୁ ବର୍ଲିନ ଯାଇ ତାଙ୍କ ସହିତ ସାକ୍ଷାତକଲେ । ତାଙ୍କର ଲକ୍ଷ୍ୟ ଥିଲା ଏ ପରିସ୍ଥିତିରୁ କିଛି ଫାଇଦା ଉଠାଇବା ଓ ଭାରତର ସ୍ୱାଧୀନତା ସଂଗ୍ରାମକୁ ସାମରିକ ଉପାୟରେ ସମାଧାନ କରିବା । ଅବଶ୍ୟ ହିଟଲର୍‌ଙ୍କ ପୂର୍ବରୁ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ସେତେ ସହାନୁଭୂତି ନଥିଲା । ସେ ଭାରତୀୟମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ସୁଭାଷ ସେତେବେଳେ ତାଙ୍କୁ ଯେ ଭୀଷଣ ସମାଲୋଚନା ପ୍ରତ୍ୟକ୍ଷ ଭାବରେ କରୁନଥିଲେ ତା ନୁହେଁ; ତେବେ ପରିବର୍ତ୍ତିତ ପରିସ୍ଥିତିରେ ହିଟଲର ସୁଭାଷଙ୍କୁ ଭାରତର ଜଣେ ତୁଙ୍ଗ ବ୍ୟକ୍ତିତ୍ୱସମ୍ପନ୍ନ ପ୍ରଚଣ୍ଡ ପ୍ରତିଭାଯୁକ୍ତ ମହାନ୍ ନେତା ଭାବରେ ଗ୍ରହଣ କରିଥିଲେ ଓ ତାଙ୍କୁ

ସମ୍ମାନ ଦେଇଥିଲେ । ବର୍ତ୍ତମାନ ହିଟଲରର ସୁଭାଷଙ୍କ ସମକ୍ଷରେ ଏକ ପରିବର୍ତ୍ତିତ ଚରିତ୍ର; ଭାରତର ସ୍ୱାଧୀନତା ପାଇଁ ଚରମ ସମ୍ବେଦନଶୀଳ । ବ୍ରିଟିଶ କେବଳ ନିଜର ଶକ୍ତି ପ୍ରୟୋଗ କରି ଭାରତକୁ ଶାସନ କରୁଛି ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା । ଶକ୍ତିର ମୁକାବିଲା ଶକ୍ତି ବ୍ୟତୀତ ଅନ୍ୟ ପଦ୍ଧତିରେ କରିଯାଇପାରେନା—ଉଭୟ ନେତା ଏଥିରେ ଏକମତ ଥିଲେ ।

ଇଂରେଜମାନଙ୍କ ବିରୁଦ୍ଧରେ ଜର୍ମାନମାନେ ଯୁଦ୍ଧ କରିବା ସମୟରେ ଭାରତର ଅଗଣିତ ସୈନିକ ଇଂରେଜମାନଙ୍କ ସପକ୍ଷରେ ଜର୍ମାନ ବିରୁଦ୍ଧରେ ଲଢ଼େଇ କରୁଥିଲେ । ଏହା ସହାନୁଭୂତିର ସଂଗ୍ରାମ ନଥିଲା; ବରଂ ଥିଲା ଇଂରେଜମାନଙ୍କର ନମକ୍ ଖାଇ ଇଂରେଜ ବାହିନୀରେ ଭୁକ୍ତିକରି ବିଶ୍ୱସ୍ତତାକୁ ରକ୍ଷା କରିବା ପାଇଁ ଏକ ନୈତିକ ଦାୟିତ୍ୱ । ମହାତ୍ମା ଗାନ୍ଧିଙ୍କୁ ଯେତେବେଳେ ପ୍ରସ୍ତାବ ଦିଆଯାଇଥିଲା ଯେ ଇଂରେଜ-ଜର୍ମାନ ଯୁଦ୍ଧରେ ଭାରତୀୟମାନେ ଇଂରେଜମାନଙ୍କ ସପକ୍ଷରେ ଜର୍ମାନ ବିରୁଦ୍ଧରେ ଲଢ଼ିବେ ନାହିଁ ଏବଂ ଏହି ଦୁଃସ୍ଥିତିରେ ଇଂରେଜମାନେ ଥିବାବେଳେ ଭାରତକୁ ସ୍ୱାଧୀନତା ଦେଇଦେବା ପାଇଁ ବାଧ କରାଯିବ, ସେତେବେଳେ ଗାନ୍ଧିଜୀ ଏ ପ୍ରସ୍ତାବକୁ ଏକ ଭୀରୁ କାପୁରୁଷୋଚିତ ପ୍ରସ୍ତାବ ବୋଲି ବିଚାର କରିଥିଲେ; ଏହା ଭାରତୀୟ ଚିନ୍ତାଧାରାର ପରିପନ୍ଥୀ ତଥା ନୀତିସମ୍ମତ ନୁହେଁ ବୋଲି ମତ ଦେଇଥିଲେ । ଫଳରେ ଏହି କୂଟନୈତିକ ବିଚାରଧାରା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଭାରତ ନିଜର ସଂଗ୍ରାମକୁ ଦୂରେଇ ଦେଇ ଅସମୟରେ ଇଂରେଜ-ମାନଙ୍କୁ ସାହାଯ୍ୟ କରିଥିଲା, କେବଳ ସେମାନଙ୍କ ଉପରେ ନୈତିକ ପ୍ରଭାବ ପକାଇବା ପାଇଁ ।

ଯୁଦ୍ଧରେ ବହୁ ସୈନିକ ମୃତାହତ ହେଲେ, ଅନେକ ବନ୍ଦୀ ହେଲେ ଏବଂ ବନ୍ଦୀଥିବା ଅବସ୍ଥାରେ ସୁଭାଷ ସେମାନଙ୍କ ସଂସ୍ପର୍ଶରେ ଆସିଥିଲେ ଚିନ୍ତା ଓ ଚେତନା ମଧ୍ୟରେ । ସୁଭାଷଙ୍କର ବ୍ୟକ୍ତିତ୍ୱ, ଅଗ୍ନିମୟୀ ବାଣୀ ତଥା ଆଦର୍ଶ ସେମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଜାତୀୟ ଭାବନାର ନିଶାରେ ସେମାନେ ବିହ୍ୱଳ ହୋଇଉଠିଥିଲେ । ସୁଭାଷଙ୍କର ବ୍ୟକ୍ତିତ୍ୱର ଚମକରେ ସେମାନେ ହୋଇଥିଲେ ଚମକିତ ଓ ପରେ ଆଜାଦ ହିନ୍ଦ୍ ଫୌଜର ସକ୍ରିୟ ସୈନିକରୂପେ କାର୍ଯ୍ୟକରିଥିଲେ ।

ଜର୍ମାନୀର ବର୍ଲିନ ଥିଲା ସ୍ୱାଧୀନ ଭାରତୀୟ ଫୌଜର ପ୍ରସ୍ତୁତିଶାଳା । ଇଉରୋପର ବିଭିନ୍ନ ରାଜ୍ୟ ଓ ମଧ୍ୟପ୍ରାଚ୍ୟର ଯୁଦ୍ଧଭୂମିରୁ ଜର୍ମାନୀକୁ ଅଣାଯାଇଥିବା ଭାରତୀୟ ଯୁଦ୍ଧବନ୍ଦୀ-ମାନଙ୍କୁ ନେଇ ସୁଭାଷ ସେଠାରେ ତାଙ୍କର ବହୁଦିନର ସ୍ୱପ୍ନ ଏକ ସମରବାହିନୀର ଜନ୍ମୋତ୍ସବ ପାଳନ କରିଥିଲେ । ବିଦେଶଭୂମିରେ ଭାରତକୁ ସ୍ୱାଧୀନ କରିବା ପାଇଁ ଯେଉଁ ଜାତୀୟ ବାହିନୀ ଗଠନ ୧୯୪୧ ମସିହାରେ କରାଗଲା ତାକୁ "ଆଜାଦ ହିନ୍ଦ୍ ଫୌଜ" (I.N.A.) ନାମରେ ନାମିତ କରାଗଲା । ଜର୍ମାନ ସରକାର ଏ ଦଗରେ ସାହାଯ୍ୟ କରିଥିଲେ । ଏହାହିଁ ପରାଧୀନ ଭାରତର 'ସ୍ୱାଧୀନ ଭାରତୀୟ ସେନାବାହିନୀ' । ସୁଭାଷଚନ୍ଦ୍ର ହେଲେ ଏହାର

ସର୍ବୋଚ୍ଚ ଅଧିନାୟକ । ଜର୍ମାନର "ଆଜାଦ୍ ହିନ୍ଦ୍ କେନ୍ଦ୍ର (Free India Centre) ୧୯୧୪ ମସିହାରେ ସ୍ଥାପିତ ହୋଇଥିଲା । ପ୍ରଥମେ କୋଡ଼ିଏ ଜଣ ଭାରତୀୟଙ୍କୁ ନେଇ ଆଜାଦ୍ ହିନ୍ଦ୍ କେନ୍ଦ୍ର ସ୍ଥାପନ କରାଯାଇଥିଲା । ଡଃ ଏମ୍.ଆର. ବ୍ୟାସ, ଏ.ସି.ଏନ. ନାମ୍ବିଆର, ଡଃ ଗିରିଜାଭୂଷଣ ମୁଖାର୍ଜୀ ପ୍ରଭୃତି ସେମାନଙ୍କ ଭିତରେ ଅନ୍ତର୍ଭୁକ୍ତ ଥିଲେ । ସ୍ୱାଧୀନ ଭାରତୀୟ ସେନାବାହିନୀର ସୈନିକଗଣ ସୁଭାଷଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଭିତରେ 'ନେତାଜୀ' ନାମରେ ସମ୍ବୋଧନ କରିଥିଲେ । ଏ ନାଁଟି ଏପରି ଲୋକପ୍ରିୟତା ହାସଲ କରିଥିଲା ଯେ, କେବଳ 'ନେତାଜୀ' ଉଚ୍ଚାରଣରେ ସୁଭାଷଙ୍କର ଅନ୍ତର୍ବ୍ୟକ୍ତିତ୍ୱ ପ୍ରକଟିତ ହୋଇଥିଲା । ସେହି ପ୍ରିୟ ପଦବୀଟି ଆସ୍ତେ ବିଶ୍ୱବ୍ୟାପୀ ହୋଇ ଐତିହାସିକ ନାମରେ ପରିଣତ ହେଲା । ବର୍ତ୍ତମାନ ନେତାଜୀ କହିଲେ ସାରା ବିଶ୍ୱ ସେହି ବିଶ୍ୱବନ୍ଦନୀୟ ମହାତେଜା ମହାପୁରୁଷ ସୁଭାଷଙ୍କୁ ବୁଝାଇବ ।

ହିଟଲର୍ ଓ ତାଙ୍କ ସରକାର ଆଜାଦ୍ ହିନ୍ଦ ଫୌଜକୁ ସମସ୍ତ ପ୍ରକାରର ସାହାଯ୍ୟ ଓ ସହଯୋଗ ପ୍ରଦାନ କରିଥିଲେ । ଏଥିପାଇଁ କୌଣସି ପ୍ରକାର ପ୍ରତିଦାନର ପ୍ରଶ୍ନ ଉଠିନଥିଲା । ସୁଭାଷ ସେହି ବିଦେଶମାଟିରେ ଭାରତୀୟ ଜାତୀୟତାର ଏକ ବିଶାଳ ଓ ମହାନ୍ ଦ୍ରୁମରୂପେ ନିଜର ଆସ୍ଥାନ ଦୃଢ଼ କରିପାରିଥିଲେ । ଏପରିକି ଜର୍ମାନୀ ସୈନ୍ୟମାନେ ଆଜାଦ୍ ହିନ୍ଦ୍ ଫୌଜ ସହିତ ନେତାଜୀଙ୍କୁ ସାମରିକ ସମ୍ମାନ ଦେଉଥିଲେ । ସେମାନେ ଅନୁଭବ କରୁଥିଲେ, ସୁଭାଷ ବୋଷ ସତେ ଯେପରି ଜର୍ମାନୀ ସାମରିକ ବାହିନୀର ଜଣେ ସର୍ବୋଚ୍ଚ ସେନାପତି । ଜର୍ମାନ ଓ ଭାରତୀୟମାନଙ୍କ ମଧ୍ୟରେ ମାନସିକ ସମ୍ପର୍କ ଅତ୍ୟନ୍ତ ନିବିଡ଼ ଥିଲା । ସେମାନଙ୍କର ସ୍ୱାଧୀନତାକୁ ଆଞ୍ଚ ଆଣିଲା ପରି କୌଣସି ପ୍ରକାର କଟକଣା ଜର୍ମାନୀ ତରଫରୁ ନ୍ୟସ୍ତ କରାଯାଇନଥିଲା । ନେତାଜୀଙ୍କର ଅନବଦ୍ୟ ନେତୃତ୍ୱ ଦୁର୍ଦ୍ଧର୍ଷ ହିଟଲରଙ୍କୁ ମଧ୍ୟ ବିସ୍ମିତ କରିଥିଲା ।

ସୁଭାଷଙ୍କର କାର୍ଯ୍ୟକଳାପ ଉପରେ ଇଂରେଜମାନଙ୍କର ଯେ ଏକା ସତର୍କ ଦୃଷ୍ଟି ଥିଲା ତା ନୁହେଁ; ସାରା ବିଶ୍ୱର ଦୃଷ୍ଟି ତାଙ୍କ ଉପରେ ପୁଞ୍ଜିଭୂତ ହୋଇଥିଲା । ବହୁଦେଶ ଅନେକ ନିଭୃତ କାରଣ ନେଇ ଇଂରେଜମାନଙ୍କର ପତନ ଭାରତରେ ହେଉ ବୋଲି ଚାହୁଁନଥିଲେ । ଅନେକେ ଇଂରେଜମାନଙ୍କର କ୍ଷମତା, ପରିବାରପରିଣିଆ, ଶକ୍ତି-ସାମର୍ଥ୍ୟ ଦିଗରେ ପୂର୍ଣ୍ଣ ସଚେତନ ଥିଲେ । ପୃଥିବୀର ଏ ପ୍ରକାର ଏକ ଦୁର୍ଜୟ ଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ବିନା କାରଣରେ ସେମାନଙ୍କ ଶତ୍ରୁଶ୍ରେଣୀଭୁକ୍ତ ହେବାକୁ ଅନେକେ ଚାହୁଁନଥିଲେ । ଯେଉଁମାନଙ୍କର ଉପନିବେଶ ସବୁ ଥିଲା ଓ ସେମାନେ ନିଜର ପ୍ରଭୁତ୍ୱ ଜାହିର କରୁଥିଲେ, ସେମାନେ ଭାରତ ଉପରେ ଇଂରେଜମାନଙ୍କର କର୍ତ୍ତୃତ୍ୱର ଅବସାନକୁ ଆଦୌ ଚାହୁଁନଥିଲେ । ସେମାନଙ୍କର ଧାରଣା ଇଂରେଜମାନେ ନିଜର ପ୍ରଭୁତ୍ୱ ଏହି ବିଶାଳ ସାମ୍ରାଜ୍ୟ ଉପରୁ ହରାଇଲେ ସେମାନଙ୍କୁ ମଧ୍ୟ ଅନୁରୂପ ପରିଣତି ଭୋଗକରିବାକୁ ହେବ । ସାମ୍ରାଜ୍ୟବାଦୀ ଦେଶମାନେ ଭାରତର ସ୍ୱାଧୀନତାକୁ

ଅନ୍ତରର ସହିତ ସମର୍ଥନ କରୁନଥିଲେ । ଏହି ଦୁଃସମୟରେ ଜର୍ମାନ୍‌ମାନଙ୍କର ନେତାଜୀ ସୁଭାଷଙ୍କୁ ସାହାଯ୍ୟ ଓ ସହଯୋଗ ପ୍ରଦାନ ଦେବପ୍ରେରିତ ଆଶୀର୍ବାଦପରି ଥିଲା । ସ୍ୱାଧୀନତାଲାଭ ଦିଗରେ ଏହା କେତେଦୂର ସହାୟକ ଥିଲା ତାହା ଅଲଗା କଥା; କିନ୍ତୁ ଇଂରେଜମାନଙ୍କର ବାଦଶାହି ଶାସନ ବିରୁଦ୍ଧରେ ଏହା ଯେ ବିଶ୍ୱ-ଜନମତର ଏକ ପ୍ରତ୍ୟକ୍ଷ ଇଙ୍ଗିତ ଥିଲା, ତାହା ସେମାନେ ହୃଦୟଙ୍ଗମ କରିଥିଲେ । ବିଦ୍ରୋହର ଏକ ପ୍ରଳୟ ତରଙ୍ଗ ବ୍ରିଟିଶ-ଶାସନକୁ ଗ୍ରାସ କରିବା ପାଇଁ ମାଡ଼ିଆସୁଛି ବୋଲି ସେମାନଙ୍କର ହୃଦ୍‌ବୋଧ ହୋଇଥିଲା ।

ନେତାଜୀଙ୍କର ଆଜାଦ ହିନ୍ଦ୍ ଫୌଜ ଗଠନ ଓ ବିଦ୍ରୋହାତ୍ମକ କାର୍ଯ୍ୟକଳାପ ବିଦେଶୀ ଶାସକ ମନରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଇଂରେଜମାନଙ୍କର ଦୃଷ୍ଟିକୋଣରେ ପରିବର୍ତ୍ତନ ସୃଷ୍ଟି କରିବା ଦିଗରେ ଏହା ସହାୟକ ଥିଲା । ଜର୍ମାନମାନଙ୍କର ସହଯୋଗରେ ୧୯୪୧ ମସିହା ନଭେମ୍ବର ଦୁଇ ତାରିଖରେ ସୁଭାଷଙ୍କ ଦ୍ୱାରା 'ଆଜାଦ୍ ହିନ୍ଦ୍ କେନ୍ଦ୍ର' ଉଦ୍‌ଘାଟିତ ହେଲା । ଆଜାଦ ହିନ୍ଦ୍ କେନ୍ଦ୍ର ସୁଭାଷଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ କୂଟନୈତିକ ସଂସ୍ଥା । ଜର୍ମାନୀରେ ଏହା ତାଙ୍କ ସରକାରଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲା । ୧୯୪୨ ମସିହାରେ ବର୍ଲିନରେ ଭାରତ ତରଫରୁ ଏକ ସମ୍ବାଦ ସରବରାହ କେନ୍ଦ୍ର ବହୁପୂର୍ବରୁ ଖୋଲାଯାଇଥିଲା । ତାହାପରେ ନେତାଜୀଙ୍କ ବାର୍ତ୍ତା, ତାଙ୍କର ଅଗ୍ନିମୟୀ ଭାଷଣ, କାର୍ଯ୍ୟକ୍ରମ ଦେଶବାସୀଙ୍କ ପାଇଁ ଉଦ୍‌ବୋଧନ ପ୍ରଚାର କରିବାରେ ଲାଗିଲା । ଆଜାଦ ହିନ୍ଦ୍ ରେଡିଓ, ମୁସଲିମ୍ ଲିଗ୍ ରେଡିଓ ଓ ଜାତୀୟ କଂଗ୍ରେସ ରେଡିଓ ନେତାଜୀଙ୍କର ସମସ୍ତ କାର୍ଯ୍ୟକ୍ରମ ପ୍ରଚାର କରୁଥିଲେ ।

ଭାରତୀୟ ସ୍ୱେଚ୍ଛାବାହିନୀ (Indian Legion) ଆଉ ଏକ ଜାତୀୟବାଦୀ ଅନୁଷ୍ଠାନ । ସୁଭାଷ ତାର ମଧ୍ୟ ଥିଲେ ପ୍ରତିଷ୍ଠାତା । ଇଂରେଜମାନେ ଇଉରୋପର ବିଭିନ୍ନ ସ୍ଥାନ ଓ ଉତ୍ତର ଆଫ୍ରିକାର କେତେକ ଅଞ୍ଚଳରେ ଅନେକ ଭାରତୀୟଙ୍କୁ ଯୁଦ୍ଧବନ୍ଦୀ ରୂପେ ରଖିଥିଲେ । ସେଇମାନଙ୍କୁ ଏକତ୍ରିତ କରି ଇଂରେଜମାନେ ଜର୍ମାନୀ ବିରୁଦ୍ଧରେ ଲଢ଼େଇ କରିବାକୁ ନିଯୁକ୍ତ କରିଥିଲେ । ଜର୍ମାନୀଦ୍ୱାରା ବନ୍ଦୀହୋଇ ପୁଣି ତାହାର ଯୁଦ୍ଧବନ୍ଦୀ ରୂପେ ଥିଲେ । ସୁଭାଷ ପରେ ସେହିମାନଙ୍କ ମଧ୍ୟରୁ ବଛା ବଛା କେତେକଙ୍କୁ ନେଇ "ଭାରତୀୟ ସେନା-ବାହିନୀ" ଗଠନ କରିଥିଲେ । ଏହା ଆଜାଦ ହିନ୍ଦ୍ ଫୌଜର ସହାୟକ ଅନୁଷ୍ଠାନ ରୂପେ କାର୍ଯ୍ୟ କରୁଥିଲା । ଏହା ଗଠିତ ହେଲା ୧୯୪୧ ମସିହା ସେପ୍‌ଟେମ୍ବର ମାସରେ ।

'ଆଜାଦ ହିନ୍ଦ୍ ଫୌଜ'ର ସାମରିକ ଅଭିମୁଖ୍ୟ ଥିଲା ପ୍ରତ୍ୟକ୍ଷ ଓ ଆପତ୍କାଳୀନ ବିପ୍ଳବୀ ସରକାରଙ୍କର ସ୍ୱୀକୃତ ସମରବାହିନୀ ରୂପେ ଏହାର ସ୍ଥାନ ଉଚ୍ଚରେ ଥିଲା । ସୁଭାଷ ପରେ ଯେଉଁ ଆଜାଦ୍ ହିନ୍ଦ୍ ସରକାର ଗଠନ କଲେ, ସେ ଥିଲେ ତାର ଶାସନ-ମୁଖ୍ୟ । ଜର୍ମାନୀ ସରକାର ତାଙ୍କୁ ଅବାଧ ସୁଯୋଗ ଦେଇଥିଲେ ସ୍ୱାଧୀନଭାବରେ ଭାବୀ ଭାରତର ଜନ୍ମୋତ୍ସବ ପାଳନ କରିବାକୁ । ସୁଭାଷଙ୍କୁ ମଧ୍ୟ ବିପୁଳ ଅର୍ଥ ଜର୍ମାନୀ ସରକାର ସାହାଯ୍ୟ

କରିଥିଲେ । ସ୍ୱାଧୀନତା ଲାଭ ପରେ ସେ ତାହା ପରିଶୋଧ କରିବେ ବୋଲି ଉଭୟଙ୍କ ମଧ୍ୟରେ ଏକପ୍ରକାର ବୁଝାମଣା ହୋଇଥିଲା । ଆଜାଦ ହିନ୍ଦ୍ ଫୌଜ ତା ନିଜସ୍ୱ ପତାକା ତିଆରି କରିଥିଲା । ତାହା ଥିଲା ସ୍ୱାଧୀନ ଭାରତ ପାଇଁ ପ୍ରଥମ ପତାକା । ତା ତଳେ ଜାତୀୟ ସଂଗ୍ରାମ ପାଇଁ ପ୍ରତ୍ୟେକ ଏକଜୁଟ ହେବାକୁ ସୁଭାଷ ଆହ୍ୱାନ ଦେଇଥିଲେ । କଂଗ୍ରେସର ପବିତ୍ର ପତାକା ପରି ଏହା ମଧ୍ୟ ଥିଲା ତିରଙ୍ଗା; କିନ୍ତୁ ଏହାର ମଝିରେ ଗୋଟିଏ ଲମ୍ଫଦାନ କରୁଥିବା ବ୍ୟାଘ୍ରର ଚିତ୍ର ଥିଲା । ଏହା ଥିଲା ବୀରତ୍ୱର ପ୍ରତୀକ ତଥା ପୌରୁଷ ଓ ଦୃଢ଼ତାର ଚିହ୍ନ ।

'ଆଜାଦ ହିନ୍ଦ ଫୌଜ'ର ଅଭିବାଦନ ଥିଲା 'ଜୟ ହିନ୍ଦ୍' ଓ ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ 'ଜନଗଣମନ-ଅଧିନାୟକ ଜୟ ହେ ଭାରତ-ଭାଗ୍ୟବିଧାତା' ଥିଲା ଜାତୀୟ ସଙ୍ଗୀତ । ଏହାକୁ ସମସ୍ତେ ଏକସ୍ୱରରେ ଉଦ୍‌ଗତ କଣ୍ଠରେ ଜାତୀୟପତାକା ତଳେ ଗାନକରିବା ବେଳେ ନେତାଜୀ ଭାବବିହ୍ୱଳ ହୋଇପଡ଼ୁଥିଲେ । ତାଙ୍କ ନୟନରୁ ଆନନ୍ଦାଶ୍ରୁ ନିର୍ଗତ ହେଉଥିଲା । ସେ ନିଜେ ଯେପରି ଉଦ୍‌ଗତ ହେଉଥିଲେ, ସମବେତ ଜନତା ମଧ୍ୟ ସେପରି ଭାବପ୍ରବଣ ହୋଇଉଠୁଥିଲେ । ଆଜାଦ୍‌ହିନ୍ଦ ଫୌଜର ପ୍ୟାରେଡ୍ ଥିଲା ଅତ୍ୟନ୍ତ ଚିତ୍ତାକର୍ଷକ । ଏହା ଏପରି ଗମ୍ଭୀର, ଏପରି ଉନ୍ମାଦନାମୟ ଥିଲା—ଯାହା ଯେକୌଣସି ଦର୍ଶକକୁ ଉତ୍ତେଜିତ କରିପାରୁଥିଲା । ଫୌଜର ଜବାନମାନେ ଥିଲେ ଅତ୍ୟନ୍ତ ଶୃଙ୍ଖଳ ଓ କଷ୍ଟସହିଷ୍ଣୁ । କର୍ତ୍ତବ୍ୟରେ ସେମାନେ ଅଟଳ ଥିଲେ । ଭାରତର ସ୍ୱାଧୀନତାଲାଭ ହିଁ ତାଙ୍କର ବ୍ରତ ଥିଲା ।

୧୯୪୨ ମସିହା ଜାନୁୟାରୀ ମାସ ୨୬ ତାରିଖ । ଜାତୀୟ କଂଗ୍ରେସ ଭାରତର ସ୍ୱାଧୀନତା ଦିବସ ପାଳନ କରୁଥାଏ । ସେତେବେଳେ ଭାରତରେ "ଭାରତଛାଡ଼ ଆନ୍ଦୋଳନ' ପାଳନ କରାଯାଉଥିଲା । ନେତାଜୀ ରେଡିଓ ମାଧ୍ୟମରେ ଜର୍ମାନୀରୁ ଯେଉଁ ଅଗ୍ନିମୟୀ ଭାଷଣ ପ୍ରଦାନ କରୁଥିଲେ, ତାହା ଭାରତୀୟମାନଙ୍କ ମଧ୍ୟରେ ଅଭିନବ ଜାଗରଣ ସୃଷ୍ଟି କରୁଥିଲା । ଏ ଜାଗରଣ ଥିଲା ଅଦ୍ଭୁତ, ଅକଳ୍ପନୀୟ ଓ ଅଭୂତପୂର୍ବ । ଦେଶ ଭିତରେ ନବଜାଗରଣର ମୌସୁମୀ ପ୍ରବାହିତ ହେଉଥିବା ସମୟରେ ବିଦେଶରୁ ଜନମାନସର ସମ୍ମାନୀୟ ପ୍ରିୟ ନେତାଙ୍କର ପ୍ରୋତ୍ସାହନ ବାଣୀ ଜନତାର ଉତ୍ସାହକୁ ବହୁଗୁଣିତ କରୁଥିଲା ।

ବିଦେଶରେ ଥିବା ଭାରତୀୟମାନେ ସ୍ୱାଧୀନତାର ସ୍ୱପ୍ନରେ ଏତେ ମାଦକ ମୋହିତ ହୋଇଥିଲେ ଯେ ସେ ଉଚ୍ଛଳନ ସମସ୍ତଙ୍କୁ ଉନ୍ମାଦିତ କରିଥିଲା । ସେମାନେ ନେତାଜୀଙ୍କୁ ଅକୁଣ୍ଠ ସହଯୋଗ ତଥା ବିପୁଳ ଅର୍ଥଦାନ କରୁଥିଲେ । ସେ ଅର୍ଥର କିଛି ଅଂଶ ସଂଗଠନ କାର୍ଯ୍ୟରେ ବ୍ୟୟିତ ହେଉଥିଲା ଓ ମୋଟା ଅଂଶ ଜର୍ମାନୀଠାରୁ ଆଣାଯାଇଥିବା ଋଣ ପରିଶୋଧ ବାବଦରେ ବିନିଯୋଗ କରାଯାଇଥିଲା । ଜର୍ମାନୀ ସରକାର ନେତାଜୀଙ୍କର ନିଷ୍ଠା, କର୍ତ୍ତବ୍ୟପରାୟଣତା ଓ ବିଶ୍ୱରବୋଧ ଉପରେ ଯେଉଁ ଉଚ୍ଚ ଧାରଣା ସୃଷ୍ଟି କରିଥିଲେ ତାହାର ଏଭଳି ପ୍ରତିଟି କାର୍ଯ୍ୟଧାରା ଭିତରେ ପ୍ରମାଣିତ ହେଉଥିଲା ।

ଜର୍ମାନୀର ଭୂତ ସାମରିକ ଅଫିସରମାନେ ଆଜାଦ୍ ହିନ୍ଦ୍ ଫୌଜର ସୈନିକମାନଙ୍କୁ ସମରକୌଶଳ ଓ ସାମରିକ ତାଲିମ ଦେଉଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଉଇଲ୍ ହେଲମ୍ କେପ୍ଲାର୍, ଡଃ ସେଇଫରିକ୍, ଲେଫଟେନାଣ୍ଟ କର୍ଣ୍ଣେଲ କାପ୍ ପ୍ରଭୃତି ଅନ୍ୟତମ । ଏମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଫୌଜର କାର୍ଯ୍ୟଧାରା ନିୟନ୍ତ୍ରିତ ହେଉଥିଲା । ସୁଭାଷ ଥିଲେ ସର୍ବୋପରି । ତାଙ୍କ ଇଚ୍ଛା ବିରୁଦ୍ଧରେ କିମ୍ବା ନୀତି ବିରୁଦ୍ଧରେ କିଛି କରାଯାଉ ନଥିଲା । କେବଳ ସମରକୌଶଳ ଶିକ୍ଷା ଦେବା ଦିଗରେ ସେମାନେ ସାହାଯ୍ୟ କରୁଥିଲେ ।

ଜର୍ମାନୀର ସ୍ୱରାଷ୍ଟ୍ର ବିଭାଗ ତଥା ବୈଦେଶିକ ବିଭାଗ ସହିତ ସୁଭାଷଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସର୍ବୋଚ୍ଚ ଅଫିସର ପ୍ରାୟ୍ ବିଭିନ୍ନ ଆଲୋଚନାରେ ସୁଭାଷଙ୍କ ବ୍ୟକ୍ତିତ୍ୱର ପ୍ରଭାବ ସେମାନଙ୍କ ଉପରେ ପଡ଼ୁଥିଲା । ସେତେବେଳେ ଜର୍ମାନୀରେ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରୀ ଥିଲେ ମିଃ କେପ୍ଲର୍ । ତାଙ୍କ ସହିତ ସୁଭାଷଙ୍କର ହାର୍ଦ୍ଦିକ ସମ୍ପର୍କ ନିବିଡ଼ ଥିଲା ଓ ସେ ଭାରତର ସ୍ୱାଧୀନତା ପାଇଁ ଆନ୍ତରିକତା ପ୍ରକାଶ କରିଥିଲେ । ସେ ଥିଲେ ଜଣେ ଉଦାର ନୀତିବାଦୀ ବ୍ୟକ୍ତି । ଜର୍ମାନୀର ରାଷ୍ଟ୍ରମୁଖ୍ୟ, ଚାନ୍ସେଲର୍ ହିଟଲର୍‌ଙ୍କ ସହିତ ସୁଭାଷଙ୍କର କୂଟନୈତିକ ସହଯୋଗ ଓ ସୁସ୍ଥ ସମ୍ପର୍କ ରକ୍ଷା କରିବା ଦିଗରେ ମିଃ କେପ୍ଲର ସାହାଯ୍ୟ କରୁଥିଲେ ।

ଆଜାଦ୍ ହିନ୍ଦ୍ କେନ୍ଦ୍ର, ଭାରତୀୟ ସ୍ୱେଚ୍ଛାବାହିନୀ ଓ ଆଜାଦ୍ ହିନ୍ଦ୍ ଫୌଜ ଏହି ତିନୋଟି ଅନୁଷ୍ଠାନର ପରିଚାଳନାରେ ଭାରତୀୟ ଅଫିସରମାନେ ସକ୍ରିୟ ଭାବରେ ଦାୟିତ୍ୱ ତୁଲାଇଥିଲେ ମଧ୍ୟ ଜର୍ମାନ ସାମରିକ କର୍ତ୍ତୃପକ୍ଷ ଦିଗ୍‌ଦର୍ଶନ ଦେବାପାଇଁ ସେମାନଙ୍କୁ ସାହାଯ୍ୟ କରୁଥିଲେ ।

ସୁଭାଷ ଭାରତର ସ୍ୱାଧୀନତା ପାଇଁ ସାହାଯ୍ୟ, ସହଯୋଗ ଓ ପୂର୍ଣ୍ଣ ସମର୍ଥନ ଭିକ୍ଷା କରିଥିବା ଦେଶମାନଙ୍କ ମଧ୍ୟରେ ଜର୍ମାନୀ, ଜାପାନ ଓ ଇଟାଲୀ ପ୍ରଭୃତି ପ୍ରଧାନ । ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବୀକୁ ଅନ୍ୟମାନେ ସମର୍ଥନ କରିଥିଲେ ମଧ୍ୟ ଜର୍ମାନୀ ଟାଳଟୁଳ ନୀତି ଗ୍ରହଣ କରିଥିଲା । ଜର୍ମାନୀର ରାଷ୍ଟ୍ରମୁଖ୍ୟ ହିଟଲର ଉପସ୍ଥିତ କ୍ଷେତ୍ରରେ ସମସ୍ତ ସାହାଯ୍ୟ-ସହଯୋଗ ଦେଉଥିଲେ ମଧ୍ୟ ସୁଭାଷଙ୍କ ସଂଗଠନର ଶୈଶବ ଅବସ୍ଥାରେ ଏ ପ୍ରକାର ଏକ ପ୍ରତିଶ୍ରୁତି ଦେବାକୁ ସେ ପସନ୍ଦ କରି ନଥିଲେ । ତାଙ୍କର ମତ ଥିଲା, ସଂଗଠନର ଅଗ୍ରଗତି ଉପରେ ସ୍ୱାଧୀନତାଲାଭର ନିଶ୍ଚିତତା ନିର୍ଭର କରେ; ତେଣୁ ବହୁ ପୂର୍ବରୁ ଏ ପ୍ରକାର ପ୍ରତିଶ୍ରୁତି ଦେବାର କିଛି ଅର୍ଥ ନାହିଁ । ଏହା ବ୍ୟତୀତ ସୁଭାଷଙ୍କର ଅବାଧ ରାଜନୈତିକ କାର୍ଯ୍ୟ ସମ୍ପାଦନର ସୁଯୋଗ ଲାଭ ପାଇଁ ସେ ହିଟଲରଙ୍କଠାରୁ ଯେଉଁ ସହଯୋଗ ଚାହିଁଲେ, ସେଥିରେ ମଧ୍ୟ ସେ ସଫଳ ହୋଇପାରିଲେ ନାହିଁ; ଫଳରେ ତାଙ୍କର ବିରାଟ ସ୍ୱପ୍ନ କୁହେଳିକାଚ୍ଛନ୍ନପରି ଅନୁମିତ ହେଲା ।

ଏପ୍ରକାର ଏକ ପରିସ୍ଥିତିରେ ସେ ଥିବାବେଳେ ପୂର୍ବ-ଏସିଆରେ ଥିବା ଭାରତୀୟ ନେତାମାନଙ୍କଠାରୁ ସେଠାକୁ ଯିବାକୁ ଅନୁରୋଧ ପାଇଥିଲେ । ଜାପାନ ଓ ପୂର୍ବ-

ଏସିଆର ରାଷ୍ଟ୍ରମାନଙ୍କରେ ଥିବା ଭାରତୀୟମାନଙ୍କୁ ସଙ୍ଘବଦ୍ଧ କରିବାରେ ସଫଳତା ଅଧିକ ମିଳିବ ଓ ଭାରତଠାରୁ ଦୂରତା କମିଯିବା ଫଳରେ ଲକ୍ଷ୍ୟସିଦ୍ଧି ପାଇଁ ଏହା ସାହାଯ୍ୟ କରିବ ।

ଭାରତକୁ ବ୍ରିଟିଶ କବଳରୁ ରକ୍ଷା କରିବାପାଇଁ ସେତେବେଳେ ବହୁ ଦେଶପ୍ରେମୀ ଭାରତୀୟ ନିଜର ଜୀବନ ଉତ୍ସର୍ଗ କରିଥିଲେ । ନାନାପ୍ରକାରର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ମୁଣ୍ଡ ଟେକିଥିଲା । ଅନେକେ ଅନୁଭବ କରିଥିଲେ, ଭାରତ ଭିତରେ ବ୍ରିଟିଶ ଅଧୀନରେ ରହି ବ୍ରିଟିଶ ସରକାର ବିରୁଦ୍ଧରେ ବିଦ୍ରୋହ କରିବା ସୁବିଧାପ୍ରଦ ନୁହେଁ ଓ ପ୍ରତି ମୁହୂର୍ତ୍ତରେ ବାଧା ବିପଦ, ବନ୍ଧନ ଓ ଅତ୍ୟାଚାରର ଭୟ ରହିଛି । ବିଦେଶକୁ ଚାଲିଯାଇ, ବ୍ରିଟିଶ-ବିରୋଧୀ ଶକ୍ତିମାନଙ୍କ ସହିତ ସହଯୋଗ କରି ମିତ୍ରତାର ବଳୟ ମଧ୍ୟରେ ଶତ୍ରୁ ସାଧନ କରିଯାଇପାରିଲେ ଲକ୍ଷ୍ୟ ପୂରଣ ହୋଇପାରିବ । ଏହି ଦୃଷ୍ଟିରୁ ଅନେକ ବିଦ୍ରୋହୀ ବିପ୍ଳବୀ ଭାରତୀୟ ସ୍ୱଦେଶ ଛାଡ଼ି ବିଦେଶରେ ଗୁପ୍ତ ରାଜନୈତିକ କାର୍ଯ୍ୟକଳାପ ଦାମ୍ଭିକତାର ସହିତ ଆରମ୍ଭ କରିଥିଲେ । ପୂର୍ବ-ଏସିଆ ଏକପ୍ରକାର କାର୍ଯ୍ୟକଳାପର କ୍ରୀଡ଼ାଭୂମି ଥିଲା । ଏହିସବୁ ବିପ୍ଳବୀ ଦେଶପ୍ରେମୀମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଥିଲେ ବାବା ଅମର ସିଂ । ଦୀର୍ଘ କାରାବାସ ପରେ ସେ ଥାଇଲାଣ୍ଡରେ ରହି ଭାରତର ସ୍ୱାଧୀନତା ପାଇଁ କାର୍ଯ୍ୟ କରୁଥିଲେ । ଦ୍ୱିତୀୟ ମହାନ୍ ବ୍ୟକ୍ତି ହେଲେ ବାବା ଓସ୍‌ମାନ ଖାଁ । ସେ ଥିଲେ ସାଂଘାଇରେ । ଜ୍ଞାନୀ ପ୍ରୀତମ୍ ସିଂ ଥିଲେ ଜଣେ ଧର୍ମଯାଜକ ଓ ବାଙ୍କକ୍‌ରେ ରହୁଥିଲେ । ସେ ଥିଲେ ବାବା ଅମର ସିଂଙ୍କର ପ୍ରଧାନ ଅନୁଗାମୀ ଓ ତାଙ୍କଠାରୁ ଭାରତର ସ୍ୱାଧୀନତା ଲାଭ ପାଇଁ ସେ ଦୁଃଖ-ଦୀକ୍ଷା ଗ୍ରହଣ କରିଥିଲେ । ପ୍ରୀତମ୍ ସିଂ ଥିଲେ ଜଣେ ଉଦ୍ଦାମ ବ୍ୟକ୍ତି । ନାନା ପ୍ରକାର ଗୁପ୍ତ ସଙ୍ଗଠନ ମାଧ୍ୟମରେ ସେ ବ୍ରିଟିଶ ଅଧୀନରେ ଥିବା ଭାରତୀୟ ସେନାବାହିନୀକୁ ଜାତୀୟ ଭାବନାରେ ଉଦ୍‌ବୃଦ୍ଧ କରୁଥିଲେ । ସ୍ୱାମୀ ସତ୍ୟାନନ୍ଦ ପୁରୀ ଥାଇଲାଣ୍ଡରେ 'ଭାରତ-ଥାଇଲାଣ୍ଡ୍' ଗଠନ କରିଥିଲେ ଓ ପରେ ଏହା ବଦଳି 'ଭାରତୀୟ ଜାତୀୟ କାଉନସିଲ୍‌ର'ରେ ପରିଣତ ହେଲା ।

ଓସମାନ୍ ଖାଁ ଥିଲେ ମହାନ୍ ବିପ୍ଳବୀ । ସେ ସାଂଘାଇଠାରେ ଏକ ଗୁପ୍ତ ସାମରିକ ସଙ୍ଗଠନ ସୃଷ୍ଟି କରିଥିଲେ । ତାର ପ୍ରଭାବ ଥିଲା ସୁଦୂରପ୍ରସାରୀ । ତାଙ୍କରି ଦ୍ୱାରା ପ୍ରତିଷ୍ଠିତ ଏକ ସମ୍ବାଦପତ୍ର ଯାହାକି ଭାରତର ମୁକ୍ତିସଂଗ୍ରାମ ପାଇଁ ବିଶ୍ୱ-ଜନମତ ସୃଷ୍ଟି କରୁଥିଲା ଓ ଭାରତୀୟମାନଙ୍କୁ, ସେ ଯେଉଁ କ୍ଷେତ୍ରରେ ଥାଆନ୍ତୁନା କାହିଁକି, ଦେଶାତ୍ମବୋଧରେ ଉଚ୍ଛଳିତ କରୁଥିଲା, ତାହା ପୂର୍ବ-ଏସିଆର ଅଧିକାଂଶ ରାଜ୍ୟରେ ବହୁଳ ପ୍ରଚାରିତ ହୋଇଥିଲା ।

୧୯୪୧ ମସିହା ଡିସେମ୍ବର ୮ ତାରିଖରେ ଜାପାନ୍ ଖୋଲାଖୋଲି ଭାବରେ ବ୍ରିଟେନ୍ ଆକ୍ରମଣ କରିବା ପରେ ପରେ ଇଂରେଜ ଓ ଜାପାନ ମଧ୍ୟରେ ଯେଉଁ ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା, ତାହା ନଷ୍ଟ ହୋଇଗଲା ଓ ପରସ୍ପର ପରସ୍ପରର ଶତ୍ରୁ ପାଲଟିଗଲେ । ଭାରତୀୟ

ବିପ୍ଳବୀମାନେ ଜାପାନରେ ଯେଉଁ ଗୁପ୍ତ କାର୍ଯ୍ୟକଳାପ, ସଂଗଠନ ଓ ସାମରିକ ବ୍ୟବସ୍ଥା କରୁଥିଲେ ତାହା ପ୍ରକାଶ୍ୟ ଭାବରେ ଅଧିକ ତତ୍ପରତାର ସହିତ ଆଗେଇଗଲା । ଇଂରେଜ-ମାନଙ୍କ ତରଫରୁ ଚାଲିଥିବା ଗୁପ୍ତ ଅଭିଯାନ ବିପ୍ଳବୀ ଭାରତୀୟମାନଙ୍କୁ ଆଉ ଭୟଭୀତ କରିପାରିଲାନାହିଁ । ୧୯୪୨ ମସିହା ଫେବୃଆରି ମାସରେ ସିଙ୍ଗାପୁରଠାରେ ଜାପାନ ପାଖରେ ପରାସ୍ତ ହେଲେ ଇଂରେଜମାନେ; ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଏକ ନୂତନ ଦିଗ୍‌ଦର୍ଶନ ପାଇଲା । ସାମରିକ ତତ୍ପରତା ଅଧିକ ସକ୍ରିୟ ହୋଇଉଠିଲା ।

ଜେନେରାଲ ମୋହନ ସିଂ ଆଜାଦ୍ ହିନ୍ଦ୍ ଫୌଜର ଜାପାନ ଶାଖାର ସ୍ରଷ୍ଟା ତଥା ଅଧିନାୟକ ମଧ୍ୟ । ସିଙ୍ଗାପୁରଠାରେ ବ୍ରିଟିଶମାନଙ୍କର ଯେଉଁ ବିପର୍ଯ୍ୟୟ ହେଲା, ସେଥିରେ ହଜାର ହଜାର ବ୍ରିଟିଶ୍-ଭାରତୀୟ ସୈନ୍ୟ ଜାପାନୀମାନଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ବିପ୍ଳବୀ ମୋହନ ସିଂ, ଜ୍ଞାନୀ ପ୍ରୀତମ୍ ସିଂ ପ୍ରଭୃତି ଭାରତୀୟ ଯୁଦ୍ଧବନ୍ଦୀ ଶିବିରରେ ଭାଷଣ ଦେବା ପାଇଁ ଜାପାନର ସାମରିକ କର୍ତ୍ତୃପକ୍ଷ ଯଥେଷ୍ଟ ସୁଯୋଗ ଦେଇଥିଲେ । ଭାରତୀୟ ମୁକ୍ତି-ସଂଗ୍ରାମକୁ ଶକ୍ତିଶାଳୀ କରିବା ପାଇଁ ସବୁ ଦିଗରୁ ସାହାଯ୍ୟ କରିବ ବୋଲି ଜାପାନ ବନ୍ଦୀମାନଙ୍କ ମଧ୍ୟରେ ଦୃଢ଼ବିଶ୍ୱାସ ସୃଷ୍ଟି କରିଥିଲା । ବାବା ଅମର ସିଂ ଭାରତର ସ୍ୱାଧୀନତା ସଂଗ୍ରାମକୁ ଅଧିକ ସୁସଂହତ ତଥା କ୍ଷିପ୍ରତର କରିବାପାଇଁ ଜାପାନରେ 'ଭାରତୀୟ ସ୍ୱାଧୀନତା ଲିଗ୍' ନାମରେ ଏକ ସାମରିକ ଅନୁଷ୍ଠାନ ଗଢ଼ିଥିଲେ । ତାର ଶାଖା ସାରା ପୂର୍ବ-ଏସିଆରେ ପ୍ରାୟ ବିଛେଇ ହୋଇଯାଇଥିଲା । ଆଜାଦ୍ ହିନ୍ଦ୍ ଫୌଜକୁ ଶକ୍ତିଶାଳୀ କରିବାପାଇଁ ଭାରତୀୟ ସ୍ୱାଧୀନତା ଲିଗ୍ କାମ କରୁଥିଲା । ଯୁଦ୍ଧବନ୍ଦୀମାନେ ବିପ୍ଳବୀ ଭାରତୀୟମାନଙ୍କର ଅଗ୍ନିମୟୀ ଭାଷଣରେ ଉଦ୍‌ବୁଦ୍ଧ ହୋଇ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗଦେବାକୁ ଅଧିକାଂଶ ସ୍ୱୀକୃତ ଦେଇଥିଲେ । ଏମାନେ ଏଣିକି ହେଲେ ଆଜାଦ୍ ହିନ୍ଦ୍ ଫୌଜର ସକ୍ରିୟ ସୈନିକ । ଏହା କ୍ରମେ ଆଶାତୀତ ଭାବରେ ବୃଦ୍ଧି ଲାଭ କଲା । ରାସବିହାରୀ ବୋଷ ରେଡିଓ ମାଧ୍ୟମରେ ଭାରତବାସୀଙ୍କୁ ନିବେଦନ କରିଥିଲେ 'ଭାରତୀୟ ସ୍ୱାଧୀନତା ଲିଗ୍' ସ୍ଥାପନ କରି ଭାରତର ମୁକ୍ତିପାଇଁ ସଂଗ୍ରାମ କରିବାକୁ ।

ପ୍ରବାସୀ ଭାରତୀୟମାନେ ସ୍ୱାଧୀନତା ସଂଗ୍ରାମରେ ଝାସଦେଇଥିଲେ । ସେମାନେ ଏଥିପାଇଁ ଅଜସ୍ର ଅର୍ଥ ଦାନ କରିଥିଲେ । ଅନେକ ବେସାମରିକ ବ୍ୟକ୍ତି ବିଭିନ୍ନ ସଂଗଠନ ମାଧ୍ୟମରେ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଜୀବନ ଉତ୍ସର୍ଗ କରିଥିଲେ ।

ଜାପାନର ସାହାଯ୍ୟ ସହଯୋଗ କେତେଦୂର ନିଃସର୍ତ୍ତ-ନିଃସ୍ୱାର୍ଥମୂଳକ ଓ ଭାରତୀୟ ସମସ୍ୟା ପ୍ରତି ଅନୁକୂଳ, ତାହା ଅଲକ୍ଷିତ ବା ଅସ୍ପଷ୍ଟ ଭାବରେ ରହିଯିବାକୁ ଜାପାନ ତଥା ପୂର୍ବ-ଏସିଆରେ ଥିବା ବିପ୍ଳବୀ ଭାରତୀୟମାନେ ଚାହୁଁ ନଥିଲେ । ଜାପାନ ସରକାରଙ୍କୁ ବିଧିବଦ୍ଧ ଭାବରେ ପ୍ରତିଶ୍ରୁତି ଦେବାକୁ ହେବ ଯେ ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ଦିଗରେ ଜାପାନ ପୂର୍ଣ୍ଣପ୍ରାଣରେ ସହଯୋଗ କରିବ । ସ୍ୱାଧୀନତା ଲାଭ ପରେ ଭାରତର ସାର୍ବଭୌମତ୍ୱ ଅକ୍ଷୁଣ୍ଣ ରହିବ । ଭାରତ ସରକାର ଭାରତର ସଂପୂର୍ଣ୍ଣ ଶାସନଭାର ଗ୍ରହଣ

କରିବେ । ଆଜାଦ୍ ହିନ୍ଦ୍ ଫୌଜ ବା ଭାରତୀୟ ସ୍ୱାଧୀନ ସରକାରର ସୈନ୍ୟଗଣ ବ୍ରିଟିଶ-ଭାରତର ଯେଉଁ ଅଞ୍ଚଳ ଦଖଲ କରିବେ ତାହା ଭାରତୀୟମାନଙ୍କ ପୂର୍ଣ୍ଣ ଅଧିକାରରେ ରହିବ । ଜାପାନୀ ସୈନ୍ୟମାନେ ଭାରତ ଭିତରକୁ ପ୍ରବେଶ କରି ପାରିବେ ନାହିଁ । ଭବିଷ୍ୟତରେ ଯେତେବେଳେ ଭାରତୀୟ ସଂବିଧାନ ପ୍ରସ୍ତୁତ ହେବ, ସେତେବେଳେ ଜାପାନର କୌଣସି କର୍ତ୍ତୃତ୍ୱ ତା ଉପରେ ରହିବ ନାହିଁ । ଜାପାନ ସାହାଯ୍ୟଦାନ କରିବା ପରିପ୍ରେକ୍ଷୀରେ ଭାରତର ଶାସନ ଓ ସାର୍ବଭୌମତ୍ୱ ଉପରେ କୌଣସି ପ୍ରକାରର ହସ୍ତକ୍ଷେପ କରିବ ନାହିଁ ବୋଲି ଏ ସରକାରୀ ଘୋଷଣାରେ ଲିପିବଦ୍ଧ ରହିବ । ଏଥିପାଇଁ ଟୋକିଓ, ବ୍ୟାଙ୍କକ୍, ସିଙ୍ଗାପୁର ପ୍ରଭୃତିରେ ସମ୍ମିଳନୀ ବସି ସିଦ୍ଧାନ୍ତ ନିଆଯାଇଥିଲା । ଏଥିରେ ଥାଇଲାଣ୍ଡ, ମାଳୟ, ଟୋକିଓ, ଜାପାନ, ବର୍ମା, ହଂକଂ, ଜାଭା, ବୋର୍ଣ୍ଣିଓ ପ୍ରଭୃତିର ପ୍ରତିନିଧିମାନେ ଯୋଗ ଦେଇଥିଲେ ।

ଜାପାନ ସରକାର ଏ ପ୍ରକାର ଏକ ସିଧାସଳଖ ସରକାରୀ ଘୋଷଣା କରିବାକୁ ଅନୁକୂଳ ମନୋଭାବ ପ୍ରକାଶ କଲେନାହିଁ । କାଳକ୍ଷେପଣ ମାତ୍ର ଧରିବା ସାର ହେଲା । ପୂର୍ବ-ଏସିଆରେ ଥିବା ବିଦ୍ରୋହୀ ଭାରତୀୟ ନେତା ଓ ଜାପାନ ସରକାର ମଧ୍ୟରେ ଯୋଗସୂତ୍ର ଧୀରେ ଦୁର୍ବଳ ହେବାକୁ ବସିଲା । ଯେଉଁ ଜାପାନୀ ପ୍ରତିନିଧିମାନେ ପରେ ଏ ଦାୟିତ୍ୱରେ ରହିଲେ, ସେମାନେ ଠିକ୍ ଭାବରେ ତାଙ୍କ ସରକାରଙ୍କ ସମ୍ମୁଖରେ ସ୍ୱାଧୀନତା-ସଂଗ୍ରାମୀମାନଙ୍କର ସମସ୍ୟା ଉପସ୍ଥାପନ କଲେ ନାହିଁ ।

ସନ୍ଦେହ ଓ ଅବୁଝାମଣାର ପତଳା ଅଂଧକାର କ୍ରମେ ଘନୀଭୂତ ହେଲା । କେତେକ କ୍ଷେତ୍ରରେ ଫୌଜ ଓ ସ୍ୱାଧୀନତା ଲିଗ୍‌ର କର୍ମକର୍ତ୍ତାମାନଙ୍କ ସହିତ ଜାପାନୀ କର୍ମକର୍ତ୍ତା-ମାନଙ୍କର ମୃଦୁ ବାକ୍ୟ-ବିନିମୟ ହେଲା । ଅତି ଛୋଟ ଛୋଟ ଘଟଣାକୁ ମଧ୍ୟ ଅତିରଞ୍ଜିତ କରାଯାଇ ବେଶ୍ ଦୃଷ୍ଟି-ଆକର୍ଷଣକାରୀ କରାଗଲା । ସହଯୋଗର ସଙ୍କଟ ନିମ୍ନ ସ୍ତରରୁ କ୍ରମେ ଉଚ୍ଚ ସ୍ତରକୁ ସଂକ୍ରମିତ ହେଲା । ଉଭୟ ଶକ୍ତି ମଧ୍ୟରେ ମନ ଓ ମାନର ଯେଉଁ ଲଘୁ ଝଡ଼ ସୃଷ୍ଟି ହେଲା, ତାହା ଭାରତୀୟ ଜାତୀୟ ସଂଗ୍ରାମ ପାଇଁ ଅନୁକୂଳ ନଥିଲା ।

ଆଜାଦ ହିନ୍ଦ୍ ଫୌଜ ଜାପାନୀମାନଙ୍କର ସାହାଯ୍ୟ ଓ ସହଯୋଗ ଭିତ୍ତିରେ ସେମାନଙ୍କଦ୍ୱାରା ଠିକ୍ ଭାବରେ ପରିଚାଳିତ ହେଲା ନାହିଁ । ଅନେକ ସମୟରେ ନାନା ଅପ୍ରୀତିକର ପରିସ୍ଥିତି ମଧ୍ୟରେ ସୈନ୍ୟବାହିନୀ ଗଠିତ ହେଉଥିଲେ । ଜେନେରାଲ ମୋହନ ସିଂଙ୍କୁ ଯୁଦ୍ଧ ଶେଷଯାଏ ଜାପାନୀମାନେ ଗିରଫ କରି ବନ୍ଦୀ କରିରଖିଲେ । ଆଜାଦ ହିନ୍ଦ୍ ଫୌଜକୁ ଜାପାନୀମାନେ ନିମ୍ନ ମାନର ଅସ୍ତ୍ରଶସ୍ତ୍ର ଦେଉଥିଲେ, ଯାହାକି ସୈନ୍ୟମାନଙ୍କର ସାମରିକ ଦକ୍ଷତାରେ ଆଞ୍ଚ ଆଣିଥିଲା ।

ଘୋର ଦୁର୍ଦ୍ଦିନ ଭିତରେ ଆଜାଦ ହିନ୍ଦ୍ ଫୌଜ ଗଠିତ ହେଲା । ଏହା ଆଗ୍ରେ ଭାରତୀୟ ନେତୃତ୍ୱବିହୀନ ହୋଇଉଠିଲା । ରାସବିହାରୀ ବୋଷ ଜଣେ ଦୁର୍ଜୟ ପରମ ପରାକ୍ରାନ୍ତ ନେତା । ସେ ଏହାକୁ ପରିଚାଳନା କରୁଥିଲେ ମଧ୍ୟ ସ୍ୱାଧୀନତା ସଂଗ୍ରାମର ଅନ୍ୟ ସାଥୀମାନେ ଆଗ୍ରେ

ତାଙ୍କଠାରୁ ଅପସରିଗଲେ। ବାର୍ଦ୍ଧକ୍ୟଗ୍ରସ୍ତ ହେଲେବି ଯୁବସୁଲଭ ମନୋଭାବ ନେଇ ସେ ଆଜାଦ ହିନ୍ଦ୍ ଫୌଜ, ଭାରତୀୟ ସ୍ୱାଧୀନତା ଲିଗ୍‌କୁ ପୁନର୍ଗଠନ କରିବା ପାଇଁ ଅଣ୍ଟାଭିଡ଼ି ଠିଆହେଲେ। ତାଙ୍କର ଦୃଢ଼ ବିଶ୍ୱାସ ଥିଲା—ସୁଭାଷ ବୋଷଙ୍କୁ ସେ ନିକଟରେ ତାଙ୍କ ଗହଣରେ ପାଇବେ ଓ ତାଙ୍କରି ହାତରେ ଏସବୁ ସଂଗଠନ ତଥା ଫୌଜର ଦାୟିତ୍ୱ ଟେକି ଦେଇ ସଂଗ୍ରାମକୁ ଜୀବନ୍ୟାସ ଦେବେ।

ରାସବିହାରୀ ଥିଲେ ଆଜନ୍ମ ବିପ୍ଲବୀ ଏବଂ ଆଶାବାଦୀ। ଭାରତର ସ୍ୱାଧୀନତା ସ୍ୱପ୍ନ ନେଇ ସେ ଥିଲେ ପାଗଳ। ଭାରତରେ ଲର୍ଡ ହାର୍ଡିଞ୍ଜଙ୍କ ଶାସନ ସମୟରେ ସେ ତାର ପ୍ରତିରୋଧ କରି ତାଙ୍କ ଉପରକୁ ବୋମା ନିକ୍ଷେପ କରିବାକୁ ଚେଷ୍ଟାକରି ବିଫଳ ହେଲେ। ଧରାପଡ଼ିବା ଭୟରେ ଜାପାନକୁ ଛଦ୍ମବେଶରେ ପଳାଇଆସିଥିଲେ। ଦେଶଦ୍ରୋହ ଅପରାଧରେ ତାଙ୍କୁ ଦଣ୍ଡ ଦେବାପାଇଁ ଇଂରେଜ ସରକାର ତାଙ୍କୁ ଖୋଜିବୁଲୁଥାନ୍ତି। ଦୀର୍ଘ ୩୦ ବର୍ଷଧରି ସେ ଜାପାନରେ ଆତ୍ମଗୋପନ କରି ବ୍ରିଟିଶବିରୋଧୀ ବାୟୁମଣ୍ଡଳ ସୃଷ୍ଟି କରୁଥିଲେ। ଏ ଦିଗରେ ସେ କିଛିମାତ୍ରାରେ ସଫଳତା ହାସଲ କରିଥିଲେ। ଜାପାନ ବ୍ରିଟେନ ଆକ୍ରମଣ କରିବା ଫଳରେ ରାସବିହାରୀଙ୍କର ସମସ୍ତ ଗୁପ୍ତ କାର୍ଯ୍ୟକଳାପ ଖୋଲା-ଖୋଲି ଭାବରେ ଇଂରେଜମାନଙ୍କ ବିରୁଦ୍ଧରେ ପରିଚାଳିତ ହୋଇଥିଲା। ବୟସର ଆଧିକ୍ୟ ଦୃଷ୍ଟିରୁ ସେ ଜଣେ ତରୁଣ ବିପ୍ଲବୀଙ୍କର ସାନ୍ନିଧ୍ୟ ଖୋଜୁଥିଲେ। ସୁଭାଷଙ୍କର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ଜର୍ମାନୀରେ ଯେ ଚାଲିଥିଲା, ରାସବିହାରୀ ତାହା ଅନ୍ତରର ସହିତ ସମର୍ଥନ କରିଥିଲେ। ସୁଭାଷଙ୍କୁ ସେ ଅନୁରୋଧ କରିଥିଲେ ଜାପାନ ଆସି ଏଠାରେ ତାଙ୍କର ବିପ୍ଲବକୁ ରୂପ ଦେବାକୁ।

କୌଣସି ମହାନ୍ ଇଚ୍ଛା ଅପୂରଣ ରହେନାହିଁ।

ପ୍ରବାସୀ ଭାରତୀୟ ନେତାମାନଙ୍କ ଅନୁରୋଧରେ ସୁଭାଷଚନ୍ଦ୍ର ବୋଷ ଜର୍ମାନୀରୁ ଜାପାନ ଆସିଲେ। ଦୀର୍ଘ ୪୦୦ ମାଇଲ ବୁଡ଼ାଜାହାଜରେ ବିପଦପୂର୍ଣ୍ଣ ଶତ୍ରୁ-ସମାକୀର୍ଣ୍ଣ ସାଗର-ବକ୍ଷ ତାଙ୍କୁ ଅତିକ୍ରମ କରିବାକୁ ପଡ଼ିଥିଲା। ଏହି ଐତିହାସିକ ଯାତ୍ରା ଆରମ୍ଭ ହୋଇଥିଲା ୧୯୪୩ ମସିହା ଫେବୃୟାରୀ ୮ ତାରିଖରେ ଓ ଦୀର୍ଘ ଚାରି ମାସର ସାଗରଯାତ୍ରାପରେ ସେ ଜୁନ ମାସରେ ଜାପାନରେ ଆସି ପଦାର୍ପଣ କଲେ। ଏହା ଥିଲା ବିଶ୍ୱ-ଇତିହାସର ଏକ ଅବିସ୍ମରଣୀୟ ଦିବସ। ପୂର୍ବ-ଏସିଆରେ ଯେଉଁ ମୁକ୍ତି-ସଂଗ୍ରାମର ସ୍ରୋତ କ୍ରମେ ଦୁର୍ବଳ ହୋଇ ଆସୁଥିଲା, ତାହା ପୁଣି ଥରେ ଉଚ୍ଛଳିତ ହୋଇଉଠିଲା। ବିପ୍ଲବୀ ବୃଦ୍ଧ ରାସବିହାରୀ ବୋଷ ସ୍ୱାଧୀନ ଭାରତର ନବୀନ ସୂର୍ଯ୍ୟ ସୁଭାଷଙ୍କୁ ସମ୍ବର୍ଦ୍ଧନା ଜଣାଇ ଆଜାଦ ହିନ୍ଦ୍ ଫୌଜ ପ୍ରଭୃତି ସମସ୍ତ ଅନୁଷ୍ଠାନର ଦାୟିତ୍ୱ ତାଙ୍କୁ ଅର୍ପଣକଲେ। ସଂଗ୍ରାମର ନୂତନ ଦିଗନ୍ତ ସୃଷ୍ଟି ହେଲା।

ଜାପାନରେ ପହଞ୍ଚିବାପରେ ସୁଭାଷଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ଜାପାନ ତଥା ଅନ୍ୟାନ୍ୟ ରାଷ୍ଟ୍ରର ସାମ୍ବାଦିକମାନେ ତାଙ୍କ ଚାରିପାଖରେ ଘେରିଯାଇଥିଲେ ଓ ତାଙ୍କୁ ନାନା ପ୍ରଶ୍ନ ପଚାରିଥିଲେ । ସେମାନଙ୍କର ଅଭିନନ୍ଦନର ଉତ୍ତର ଦେବାକୁ ଯାଇ ସୁଭାଷ ଆନ୍ତରିକ ତଥା ଆବେଗପୂର୍ଣ୍ଣ ଭାଷାରେ କହିଥିଲେ, "ଆପଣମାନଙ୍କର ଆତିଥ୍ୟଲାଭର ସୁଯୋଗ ମୋତେ ମିଳିଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି । ମୁଁ ମୋ ଦେଶରେ ଥିବା ସମୟରେ ସାମ୍ବାଦିକତା ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା । ସାଂବାଦିକତା ଏକ ସମ୍ମାନନୀୟ କର୍ତ୍ତବ୍ୟ । ଏଥିପାଇଁ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ପ୍ରଦାନ କରୁଛି ।

"ମୋ ନିଜ ଦେଶ ଛାଡ଼ି ଆଜିର ଏହି ସଙ୍କଟମୟ ପରିସ୍ଥିତିରେ ମୁଁ ଯେ ଆସି ଆପଣଙ୍କ ଦେଶରେ ପହଞ୍ଚିଛି, ଏଥିରେ ଆପଣମାନେ ବିସ୍ମିତ ହେବାର ଯଥେଷ୍ଟ କାରଣ ଅଛି । ମୋ ଜୀବନର ଦୀର୍ଘସମୟ ଇଂରେଜମାନଙ୍କର ବନ୍ଦୀ ହିସାବରେ ଭାରତ ଓ ବର୍ମାରେ ଥିବା ବ୍ରିଟିଶ କାରାଗାରରେ ଅତିବାହିତ ହେଲା । କାରାରୁଦ୍ଧ ହୋଇ ଜୀବନର ବହୁମୂଲ୍ୟ ସମୟକୁ ନଷ୍ଟ କରିଦେବା ଅପେକ୍ଷା ସ୍ୱାଧୀନ ଭାବରେ ଆପଣମାନଙ୍କ ଗହଣରେ ଛିଡ଼ାହେବାର ଆନନ୍ଦ ଅଛି । ଜାପାନ ରାଜଧାନୀର ପବିତ୍ର ପୀଠରେ ମୁଁ ଆଜି ଯେ ଛିଡ଼ାହେବାର ସୁଯୋଗ ପାଇଛି, ତାହା ମୋ ଦେଶର ସ୍ୱାଧୀନତା ପାଇଁ ନୂତନ ସୁଯୋଗର ପ୍ରତୀକ ।

"ମୁଁ ପ୍ରାୟ ଦୁଇବର୍ଷତଳେ ମୋର ଜନ୍ମଭୂମି ଭାରତବର୍ଷକୁ ଛାଡ଼ି ମୁକ୍ତିର ଅନ୍ୱେଷଣ ପାଇଁ ଚାଲିଆସିଲି । ସେହିଦିନଠାରୁ ଭାରତର ମୁକ୍ତି-ସଂଗ୍ରାମକୁ ଆଗେଇନେବା ପାଇଁ କାମ କରି ଆସିଛି । ଗତ ମହାଯୁଦ୍ଧରେ ଆମର ଭାରତୀୟ ନେତାମାନେ ଚତୁର ଇଂରେଜ କୂଟନୀତିଜ୍ଞ-ମାନଙ୍କର ପ୍ରତାରଣାର ଶିକାର ହୋଇଥିଲେ । ଆମେ ଆଉ ପ୍ରତାରିତ ହେବୁନାହିଁ ବୋଲି ଶପଥ ନେଇଥିଲୁ । ସେହିଦିନଠାରୁ ଆମେ ଭାରତର ସ୍ୱାଧୀନତା ପାଇଁ ସଂଘର୍ଷ କରିଆସୁଛୁ ଏବଂ ମୁକ୍ତିଲାଭର ସେଇ ମହାନ୍ ମୁହୂର୍ତ୍ତର ଅପେକ୍ଷାରେ ଅଛୁ ।

"ବର୍ତ୍ତମାନ କୁହାଯାଉଛି ଯେ ଆଜି ଯେଉଁ ଯୁଦ୍ଧ ହେଲା, ତାହା ମୁକ୍ତି ତଥା ଗଣତନ୍ତ୍ରର ସୁରକ୍ଷାପାଇଁ ଅଭିପ୍ରେତ । ଯେଉଁ ଇଂରେଜମାନେ ଏହି ଆଦର୍ଶ ବଖାଣ କରୁଛନ୍ତି, ସେମାନେ ଆମ କ୍ଷେତ୍ରରେ ବର୍ତ୍ତମାନ କଣ କରୁଛନ୍ତି ? ସାରା ମାନବଜାତିର ଏକ-ପଞ୍ଚମାଂଶ ଯେଉଁ ଭାରତୀୟ, ସେମାନଙ୍କୁ ସେ ମୁକ୍ତି ତଥା ଗଣତନ୍ତ୍ରର ସୁଯୋଗ ଦେବାକୁ ଚାହାନ୍ତିନାହିଁ; ବରଂ ନିର୍ମମ ଭାବରେ ନିରୀହ ନିରସ୍ତ୍ର ସର୍ବସାଧାରଣ ମହିଳା ଓ ଶିଶୁମାନଙ୍କୁ ହତ୍ୟାକରି

ସେମାନଙ୍କୁ ଆତଙ୍କିତ କରି ରଖିଛନ୍ତି । ଆଜି ଭାରତମାଟିରେ ପାଶବିକତାର ରାଜୁତି ଚାଲିଛି—ମାନବିକତା, ମାନବିକ ସମ୍ବେଦନ ଓ ସଂପର୍କର ଅବସାନ ହୋଇଛି । ଭାରତୀୟମାନେ ସେମାନଙ୍କର ସର୍ବସ୍ୱ ହରାଇ ଇଂରେଜମାନଙ୍କଠାରୁ ଅନୈତିକତା, ଅପସଂସ୍କୃତି, ଚରମ ଦାରିଦ୍ର୍ୟ ତଥା ରାଜନୈତିକ ଦାସତ୍ୱ ଉପହାର ରୂପେ ଲାଭକରିଛନ୍ତି । ବ୍ରିଟିଶ ଶାସନତନ୍ତ୍ରକୁ ଛିନ୍ନ କରି ଆମେ ଆମର ସ୍ୱାଧୀନତାକୁ ସେମାନଙ୍କ ହାତରୁ ଛଡ଼ାଇ ନେବାପାଇଁ ବଦ୍ଧପରିକର ।

"ସଂପ୍ରତି ଯେଉଁ ବିଶ୍ୱଯୁଦ୍ଧ ସଂଘଟିତ ହେଲା, ତାହା ଦୁଇଟି ଆଦର୍ଶ ଭିତରେ ସଂଘର୍ଷ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରଥମଟି ହେଉଛି ସାମ୍ରାଜ୍ୟବାଦର ପ୍ରତିଷ୍ଠା ଓ ଦ୍ୱିତୀୟଟି ହେଉଛି ସାମ୍ରାଜ୍ୟବାଦର ଧ୍ୱଂସ । ପୁରାତନ ପଦ୍ଧତିକୁ ବଞ୍ଚାଇ ରଖିବାପାଇଁ ଗୋଟିଏ ଗୋଷ୍ଠୀର ଆପ୍ରାଣ ଉଦ୍ୟମ ଓ ପୁରାତନକୁ ଛିନ୍ନକରି ନୂତନତାକୁ ସ୍ୱାଗତ ଜଣାଇବା ଅନ୍ୟ ଗୋଷ୍ଠୀର ପ୍ରାଣମୂର୍ଚ୍ଛା ଚେଷ୍ଟା । ଆମେ ହେଉଛୁ ନୂତନତାର ପୂଜାରୀ; ପରିବର୍ତ୍ତିତ ଚିନ୍ତାଧାରାର ବାର୍ତ୍ତାବହ ।

"ମିତ୍ରଶକ୍ତି ଯଦି ଏ ଯୁଦ୍ଧରେ ବିଜୟଲାଭ କରେ, ତା'ହେଲେ ସାମ୍ରାଜ୍ୟବାଦର ଅଭିବୃଦ୍ଧି ଘଟିବ । ଆମର ଚରଶତ୍ରୁ ମିତ୍ରଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବାକୁ ଯାଇ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଜର୍ମାନ ଓ ଜାପାନ ଯେ ବିଶେଷ ସାହାଯ୍ୟ କରିଛନ୍ତି, ଏହାକୁ ଅସ୍ୱୀକାର କରି-ଯାଇପାରିବନାହିଁ । ସେମାନେ ଆମ୍ଭମାନଙ୍କୁ ଯେଉଁ ସବୁ ଦୀର୍ଘକାଳୀନ ସାହାଯ୍ୟ ଦେଇଛନ୍ତି, ସେଥିପାଇଁ ଆମେ ସେମାନଙ୍କ ପାଖରେ ଋଣୀ । ଆମେ ଆମର ସ୍ୱାଧୀନତା ଜୀବନ ବିନିମୟରେ ହାସଲ କରିବାକୁ ଚାହୁଁ । ନିଜର ତ୍ୟାଗ ଓ ସାଧନା ବଳରେ ତାହା ହାସଲ କରିପାରିଲେ ନିଶ୍ଚୟ ତାହା ରକ୍ଷାକରିଯାଇ ପାରିବ । ଆମେ ଏହି ଯୁଦ୍ଧରେ ସକ୍ରିୟ ଭୂମିକା ଗ୍ରହଣକରି ଶତ୍ରୁ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରିବାକୁ ଚାହୁଁ ।

"ଯୁଦ୍ଧ ଯେତେଦିନ ପର୍ଯ୍ୟନ୍ତ ଚାଲୁନା କାହିଁକି ଶେଷରେ ଯେ ମିତ୍ରଶକ୍ତିର ପରାଜୟ ହେବ ଏଥିରେ କୌଣସି ସନ୍ଦେହ ନାହିଁ । ଆପଣମାନେ ଭାରତୀୟମାନଙ୍କର ମନୋଭାବ ଜାପାନ ପ୍ରତି କିଣ, ତାହା ଜାଣିବାକୁ ହୁଏତ ଆଗ୍ରହୀ । ମୁଁ ସ୍ପଷ୍ଟକରିଦେବାକୁ ଚାହେଁ ଯେ ଏସିଆର ପୁନର୍ବିନ୍ୟାସ ପାଇଁ ଏକ ଶକ୍ତିଶାଳୀ ଜାପାନର ଆବଶ୍ୟକତା ଅପରିହାର୍ଯ୍ୟ । ଜାପାନ ସହିତ ଭାରତର ସାଂସ୍କୃତିକ ସମ୍ପର୍କ ନିବିଡ଼ । ଇଂରେଜମାନଙ୍କର ଶାସନକାଳରେ ଏହା କେତେକାଂଶରେ ବ୍ୟାହତ ହୋଇଥିଲା । ଭାରତ ସ୍ୱାଧୀନତାଲାଭ କରିବା ପରେ ଏହି ସମ୍ପର୍କ ପୁଣି ନିବିଡ଼ ହେବ । ଜାପାନ ସ୍ୱାଧୀନଭାବରେ ତାର ସ୍ୱାଧୀନତାକୁ ରକ୍ଷାକରି ଚଳିବା ଦିଗରେ ଭାରତ ନିଶ୍ଚୟ ସହାୟକ ହେବ; ଏଥିରେ ସନ୍ଦେହ ନାହିଁ ।

"ପ୍ରଧାନମନ୍ତ୍ରୀ ତୋଜୋଙ୍କର ଭାରତ ପ୍ରତି ଯେଉଁ ବନ୍ଧୁଭାବାପନ୍ନ ମନୋଭାବ ରହିଛି ତାହା ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଅନୁକୂଳ ଓ ଭାରତୀୟମାନଙ୍କର ମନୋବଳ ବୃଦ୍ଧି

ଦିଗରେ ସହାୟକ । ମୁଁ ମିତ୍ରଶକ୍ତିର ବିଜୟ ଚାହେଁ ଓ ତା' ସହିତ ଭାରତର ଚାଳିଶ କୋଟି ଲୋକଙ୍କର ମୁକ୍ତିକାମନା କରେ । ଜୟ ହିନ୍ଦ୍ ।" ( ୧୯୪୩ ମସିହା ଜୁନ୍ ୧୯ ତାରିଖ )

ସୁଭାଷଙ୍କର ଅଭିଭାଷଣର ଭାଷା ଓ ପ୍ରକାଶଭଙ୍ଗୀ ଥିଲା ଆବେଗମୟ । ଏହା ପ୍ରତ୍ୟେକଙ୍କ ଅନ୍ତରକୁ ସ୍ପର୍ଶ କରିଥିଲା । ଜାପାନୀମାନେ ଅନୁଭବ କରିଥିଲେ, ସୁଭାଷ ହେଉଛନ୍ତି ଭାରତର ଏକ ସର୍ବମାନ୍ୟ ମହାନ୍ ନେତା । ଦାସତ୍ୱ-ବନ୍ଧନରୁ ଦେଶକୁ ମୁକ୍ତ କରିବା ପାଇଁ ତାଙ୍କର ଚେଷ୍ଟା ଅନବଦ୍ୟ ଓ ଅନନ୍ୟସାଧାରଣ । ସେ ଯେ ଜଣେ ସାମ୍ୱାଦିକ ଥିଲେ ଓ ସେ ସ୍ତରରୁ ନିଜକୁ ଊର୍ଦ୍ଧ୍ୱକୁ ଉନ୍ନୀତ କରି ଏକ ଆନ୍ତର୍ଜାତିକ ଭାବରୂପ ଗ୍ରହଣ କରିଛନ୍ତି, ତାହା ଜାପାନୀ ସାମ୍ବାଦିକମାନଙ୍କୁ ଉଦ୍‌ବୃଦ୍ଧ କରିଥିଲା । ସୁଭାଷ ନିଜର ବାକ୍‌ଚାତୁରୀ ବଳରେ ଜାପାନର ପ୍ରଚ୍ଚୁର ସଂସ୍ଥା ଉପରେ ନିଜର ପ୍ରଭାବ ପକାଇପାରିଲେ ।

ଜାପାନରେ ଅବସ୍ଥାନ କରିବା ସମୟରେ ସୁଭାଷଙ୍କର ବହୁ ପୁରାତନ ବନ୍ଧୁଙ୍କ ସହିତ ସାକ୍ଷାତ୍ ହୋଇଥିଲା । ଜାପାନର ନେତୃସ୍ଥାନୀୟ ବ୍ୟକ୍ତି ଓ ସୁଭାଷଙ୍କ ମଧ୍ୟରେ ସହଯୋଗ କ୍ରମଶଃ ବୃଦ୍ଧି ଲାଭ କଲା । ଜାପାନର ପ୍ରଧାନମନ୍ତ୍ରୀ ମିଃ ତୋଜୋ ଓ ସୁଭାଷଙ୍କ ମଧ୍ୟରେ ଏକାଧିକ ଥର ସାକ୍ଷାତ-ଆଲୋଚନା ହୋଇଥିଲା । ପ୍ରଧାନମନ୍ତ୍ରୀ ତାଙ୍କ ସହୃଦୟତାର ପରିପ୍ରକାଶ ରୂପେ ନେତାଜୀଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ, ଜାପାନ ଭାରତର ସ୍ୱାଧୀନତା ପାଇଁ ସମ୍ଭାବ୍ୟ ସାହାଯ୍ୟଦାନରେ ଅବହେଳା କରିବ ନାହିଁ । ଭାରତରେ ମୁକ୍ତି-ସଂଗ୍ରାମକୁ ସଫଳ କରିବା ଦିଗରେ ଜାପାନର ଉଲ୍ଲେଖନୀୟ ଅବଦାନ ନିଶ୍ଚୟ ରହିବ ।

ସୁଭାଷ ଅନୁଭବ କରିଥିଲେ ଯେ ତୋଜୋଙ୍କର ଭାରତପ୍ରତି ଆନ୍ତରିକ ସମର୍ଥନ ତଥା ଶ୍ରଦ୍ଧା ଅଛି । ଭାରତର ସ୍ୱାଧୀନତା ସଂଗ୍ରାମକୁ ସେ ବିଶ୍ୱରେ ଏକ ଐତିହାସିକ ସଂଘଟନରୂପେ ଗ୍ରହଣ କରନ୍ତି ଓ ଇତିହାସ-ସୃଷ୍ଟି ଦିଗରେ ଜାପାନ ନିମିତ୍ତରୂପେ କାର୍ଯ୍ୟ କରିବାର ସୁଯୋଗ ପାଇଥିବାରୁ ସେ ତାହା ଆଗ୍ରହର ସହିତ ସମ୍ପନ୍ନ କରିବେ ବୋଲି ଆସ୍ଥା ପ୍ରକାଶ କରିଥିଲେ ।

ଜାପାନର ସାହାଯ୍ୟ ସାଂପ୍ରତିକ ପରିସ୍ଥିତିରେ ବିଶ୍ୱଚକ୍ଷୁରେ କୌଣସି ଦିଗରୁ ଅପ୍ରାସଙ୍ଗିକ ହେବନାହିଁ ବୋଲି ସୁଭାଷ ଅନୁଭବ କରିଥିଲେ । ବ୍ରିଟେନପରି ଏକ ଶକ୍ତିଶାଳୀ ରାଜ୍ୟ ଯଦି ଆମେରିକାର ସାହାଯ୍ୟ ନେଇପାରିଲା, ଭାରତପରି ବିପଦଗ୍ରସ୍ତ ଏକ ଦେଶ ତାର ସମଭାବାପନ୍ନ ବନ୍ଧୁରାଷ୍ଟ୍ରରୁ ସାହାଯ୍ୟ ଲାଭ କରିବା କୌଣସି ଦିଗରୁ ଅସମୀଚୀନ ନୁହେଁ । ସ୍ୱାଧୀନତା କେହି କାହାକୁ ଯାଚକରି ଦିଏ ନାହିଁ; ବିଶ୍ୱ-ଇତିହାସରେ ଏ ପ୍ରକାର ଦୃଷ୍ଟାନ୍ତ ବିରଳ । ଭାରତୀୟମାନେ ସଂଗ୍ରାମ କରି ଓ ତ୍ୟାଗସ୍ୱୀକାର କରି ଏହାକୁ ହାସଲ କରିବାକୁ ହେବ । ଏ କ୍ଷେତ୍ରରେ ଅନ୍ୟର ସାହାଯ୍ୟ ସହାନୁଭୂତି ଗ୍ରହଣୀୟ ।

ଜାପାନର ଲୋକମାନଙ୍କ ପ୍ରତି ଶ୍ରଦ୍ଧାର ନିଦର୍ଶନସ୍ୱରୂପ ସେ ତାଙ୍କର ଆନ୍ତରିକ ଶୁଭେଚ୍ଛା ଜ୍ଞାପନ କରିଥିଲେ । ଭାରତୀୟମାନଙ୍କର ଦୁରବସ୍ଥା ବର୍ଣ୍ଣନା କରିବାକୁ ଯାଇ ସେ କହିଲେ,

"ଭାରତୀୟମାନେ ଇଂରେଜମାନଙ୍କର କ୍ରୂର ଶାସନଚକ୍ର ତଳେ ଯନ୍ତ୍ରଣାକ୍ଷୁବ୍ଧ । ସେମାନେ ବହୁ ଦିଗରୁ ଅତ୍ୟାଚାର ଅନାଚାର ଭୋଗୁଥିଲେ ମଧ୍ୟ ଅତ୍ୟାଚାରୀ ଶାସକମାନେ ସେତିକିରେ ତୃପ୍ତ ନୁହନ୍ତି । ଭାରତର ଭାବମୂର୍ତ୍ତିକୁ ବିଶ୍ୱଦରବାରରେ କଳଙ୍କିତ କରିବାପାଇଁ ସେମାନେ ସର୍ବଦା କୁତ୍ସା ପ୍ରଚାର କରିବାରେ ତତ୍ପର । ଆମ୍ଭମାନଙ୍କ ବିଷୟରେ ସେମାନେ ଯେଉଁ ଚିତ୍ର ଆପଣମାନଙ୍କୁ ଦେଇଛନ୍ତି, ତାହା ସଂପୂର୍ଣ୍ଣ ବିଭ୍ରାନ୍ତିକର ତଥା ଉଦ୍ଦେଶ୍ୟ-ପ୍ରଣୋଦିତ । ଭାରତୀୟମାନଙ୍କର ଚରିତ୍ର ଓ ଆଦର୍ଶକୁ ପୂର୍ଣ୍ଣ କଲଭଳି ସେମାନଙ୍କର ବହୁ ଅସମ୍ମାନଜନକ ମନ୍ତବ୍ୟ ଆପଣମାନଙ୍କ ପାଖରେ ପହଞ୍ଚିଛି । ଆପଣମାନଙ୍କୁ ଅନୁରୋଧ, ଆପଣମାନେ ଭାରତକୁ ଆଦୌ ଭୁଲ ବୁଝିବା ଉଚିତ ନୁହେଁ । ଶତ୍ରୁ ପକ୍ଷର ଅପପ୍ରଚାରରେ ପ୍ରଭାବିତ ନହେବାପାଇଁ ଓ ଆମ୍ଭମାନଙ୍କୁ ଭୁଲ ନବୁଝିବାପାଇଁ ମୋର ନମ୍ର ନିବେଦନ ବୋଧହୁଏ ଆପଣମାନେ ଗ୍ରହଣ କରିବେ ।

"ଇଂରେଜମାନେ ଯେଉଁ ଭାରତର ଚିତ୍ର ଆପଣମାନଙ୍କୁ ଦେଇଛନ୍ତି, ତାହା ଆଜିର ଭାରତର ଚିତ୍ର ନୁହେଁ । ଅତୀତର ଭାରତର ଅବସ୍ଥା ଓ ବର୍ତ୍ତମାନର ଅବସ୍ଥା ଭିତରେ ଆକାଶ-ପାତାଳ ପ୍ରଭେଦ । ଆଜିର ପରିବର୍ତ୍ତିତ ଭାରତ ଯେ ଅତୀତଠାରୁ ସଂପୂର୍ଣ୍ଣ ଭିନ୍ନ, ଏଥିରେ ଦ୍ୱିମତ ନାହିଁ । ସାଂପ୍ରତିକ ନୂତନ ଭାରତରେ ଜାତିଭେଦ, ସାଂପ୍ରଦାୟିକ ବିଦ୍ୱେଷ, ପାରସ୍ପରିକ ଅସଦ୍‌ଭାବ, ଅନ୍ତର୍ଦ୍ୱନ୍ଦ୍ୱ ପ୍ରଭୃତି ନାହିଁ କହିଲେ ଚଳେ । ଇଂରେଜମାନଙ୍କର କବଳରୁ ଭାରତକୁ ମୁକ୍ତ କରିବା ଆମ୍ଭମାନଙ୍କର ଏକମାତ୍ର ସ୍ୱପ୍ନ ଏବଂ ଏକାନ୍ତ କାମନା ।

"ଭାରତର ଚିରଶତ୍ରୁ ଇଂରେଜମାନଙ୍କ ଉପରେ ଯୁଦ୍ଧର ପରାଭବ ଆପଣମାନେ ଦେଇଥିବାରୁ ଆମ୍ଭମାନଙ୍କର ମନୋବଳ ବୃଦ୍ଧି ଲାଭ କରିଛି ଓ ଆମେ ନିଜର ଅକ୍ଳାନ୍ତ ଉଦ୍ୟମବଳରେ ଆମର ଚିର ଈପ୍ସିତ ସ୍ୱାଧୀନତାକୁ ହାସଲ କରିବାକୁ ସମର୍ଥ ହୋଇପାରିବୁ ବୋଲି ଦୃଢ଼ ଆଶା ପୋଷଣ କରୁଛୁ । ଆମର ଲକ୍ଷ୍ୟ ପୂରଣ କରିବାଦିଗରେ ଆମେ ଏକ ମାହେନ୍ଦ୍ର ମୁହୂର୍ତ୍ତର ଆଶୀର୍ବାଦ ଲାଭ କରିଛୁ । ଏ ସୁଯୋଗ ଆମ ପାଇଁ ସତେ ଯେପରି ବିଧି-ନିର୍ଦ୍ଦେଶିତ । ଆମେ ଏହାର ପୂର୍ଣ୍ଣ ଉପଯୋଗ କରିବା ଦିଗରେ ଅଗେଇଯିବୁ । ଆମେ ନିଶ୍ଚୟ ସ୍ୱାଧୀନତା ଲାଭ କରିବୁ ଏବଂ ଲାଭ କରିବୁ ଆମର ଆତ୍ମଶକ୍ତିବଳରେ ।

"ବନ୍ଧୁଗଣ ! ଅତୀତର ସେଇ ଅମ୍ଳାନ ସ୍ମୃତି ମନେପଡ଼ିଲେ ଆଜି ବି ମନ ଶିହରିଉଠେ । ମୁଁ ତ ସେତେବେଳେ ପିଲା ଥିଲି; ନୂଆଁକରି ଦେଶବିଦେଶ ଖବର ଗ୍ରହଣ କରୁଥିଲି । ଜାପାନ ଯେଉଁଦିନ ବିଶ୍ୱର ଏକ ଦୁର୍ଜୟ ଶକ୍ତିକୁ ପରାହତ କରି ବିଜୟମଣ୍ଡିତ ହେଲା, ସେଦିନ ସୁଦୂର ଭାରତରେ ମୋ'ପରି ଟିକି ଟିକି ପିଲାମାନେ ବି ଆନନ୍ଦରେ ଉଚ୍ଛଳିତ ହୋଇଥିଲେ । ଭାରତର ଲୋକମାନେ ସେହି ବିଜୟ-ଉଲ୍ଲାସକୁ ନିଜର ବିଜୟରୂପେ ଗ୍ରହଣ କରିଥିଲେ । ଆଜି ବି ସେ ସ୍ମୃତିରେ ଭାରତର ଲୋକମାନେ ଉତ୍ସବମୁଖରିତ ମୁହୂର୍ତ୍ତଗୁଡ଼ିକୁ ଉପଭୋଗ କରୁଛନ୍ତି । ଆପଣମାନେ ଜାଣନ୍ତି, ଏ ଉଲ୍ଲସନ ଅନ୍ତରାଳରେ କି ପ୍ରକାର ଦିବ୍ୟ ଭାବନା ଆତ୍ମଗୋପନ କରିଛି; ଜାପାନର ବିଜୟକୁ ସେତେବେଳେ ଭାରତୀୟମାନେ ସାରା ଏସିଆର

ବିଜୟ ବୋଲି ମନେ କରିଥିଲେ । ଜାପାନ ଏସିଆର ଗର୍ବ ଓ ଗୌରବ—ଏ ମନୋଭାବ ଭାରତୀୟମାନଙ୍କର ସେତେବେଳେ ଥିଲା; ଆଜି ବି ଅଛି । ଏ ବିଜୟ ଫଳରେ ସାରା ଏସିଆ ଏକ ଭୟାବହ ପରିସ୍ଥିତିରୁ ରକ୍ଷାପାଇଗଲା ।

"ସେତେବେଳେ ଭାରତର କେତେକ ବିପ୍ଳବୀ ନେତା ଜାପାନକୁ ଆସିଥିଲେ ସାମର୍ଥ୍ୟର ଉତ୍ସ ନିରୂପଣ କରିବା ପାଇଁ ଏବଂ ସେଥିରୁ ସେମାନେ ଶିକ୍ଷାଲାଭ କରି ଭାରତର ମୁକ୍ତି-ସଂଗ୍ରାମରେ ତାହା ବିନିଯୋଗ କରିବାକୁ ଲକ୍ଷ୍ୟ ରଖିଥିଲେ । 'ଗାଗୁସୋ ଓଗାକୁରା'ଙ୍କ ପରି ଜାପାନର ମହାନ୍ ବ୍ୟକ୍ତି ମଧ୍ୟ ଭାରତ ପରିଦର୍ଶନ କରିବାକୁ ଆସି ଆମ୍ଭମାନଙ୍କୁ ତାଙ୍କ ଆଦର୍ଶ ଓ ଅଭିବ୍ୟକ୍ତିରେ ଅନୁପ୍ରାଣିତ କରିଥିଲେ ।

"ମୁଁ ଜାପାନରେ ପଦାର୍ପଣ କଲି ଦିନଠାରୁ ଜାପାନର ଲୋକମାନେ ମୋତେ ପ୍ରତ୍ୟେକ କ୍ଷେତ୍ରରେ ସେବା, ଆନ୍ତରିକ ଶ୍ରଦ୍ଧା, ସହାନୁଭୂତି ଓ ସଦିଚ୍ଛା ଜ୍ଞାପନ କରିଛନ୍ତି । ମୁଁ ତଳଠାରୁ ଉପର ପର୍ଯ୍ୟନ୍ତ ସମସ୍ତଙ୍କ ସ୍ନେହର ପାତ୍ର ହୋଇପାରିଛି । ମୋର ନିଜର ବିଶେଷ କିଛି ପରିଚୟ ନାହିଁ, ଯାହାକି ଆପଣମାନଙ୍କୁ ଚମତ୍କୃତ କରିବ; କିନ୍ତୁ ମୁଁ ଏତିକି କହିପାରେ ଯେ, ମୁଁ ହେଉଛି ଏପରି ଏକ ଦେଶର ପ୍ରତିନିଧି ଯାହାର ଅତୀତ ମହାନ୍, ପରମ୍ପରା ସୁବିଶାଳ ଓ ସଂସ୍କୃତି ସମୁନ୍ନତ । ମୁଁ ସାରା ଜୀବନ ମୋ ଦେଶର ମୁକ୍ତି ପାଇଁ ସଂଗ୍ରାମ କରିଆସିଛି ଏବଂ ଆଜି ବି ସେହି ମହାନ୍ ଲକ୍ଷ୍ୟ ନେଇ ଆଗେଇଛି ।

"ବନ୍ଧୁଗଣ ! ଆପଣମାନେ ଅତୀତରେ ନ୍ୟାୟ ପାଇଁ ସଂଗ୍ରାମ କରିଆସିଛନ୍ତି । ମୁଁ ବି ଏକ ଆଦର୍ଶର ପ୍ରତୀକ ରୂପେ ଆପଣମାନଙ୍କ ଗହଣରେ ଛିଡ଼ାହୋଇଛି । ମୋତେ ଆପଣମାନେ ଅଭିନନ୍ଦନ ଦେବାର ଅର୍ଥ ମୋ ଦେଶର ଅଗଣିତ ନରନାରୀଙ୍କୁ, ଯେଉଁମାନେ କି ତାଙ୍କର ମୁକ୍ତିଲାଭ ପାଇଁ ଅକଥନୀୟ ଦୁଃଖ-ଯନ୍ତ୍ରଣା ଭୋଗ କରୁଛନ୍ତି ସେମାନଙ୍କୁ, ଅଭିନନ୍ଦିତ କରିଛନ୍ତି । ଆମେ ବର୍ତ୍ତମାନ ଯେଉଁ ଅନ୍ଧକାର ଆବର୍ତ୍ତ ମଧ୍ୟରେ ଗତିକରୁଛୁ, ସେହି ଦୁଃସମୟରେ ଆପଣମାନେ ଯେଉଁ ଶ୍ରଦ୍ଧା ତଥା ସହାନୁଭୂତି ପ୍ରକାଶ କରିଛନ୍ତି ସେଥିପାଇଁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ଆପଣ ଏବଂ ଆମେ ଏହି ପୁଣ୍ୟ ଏସିଆର ଅଧିବାସୀ । ଆମର ଦୁଃସମୟରେ ଆପଣମାନେ ଯେଉଁ ସମୟୋଚିତ ସାହାଯ୍ୟ ଦାନ କରୁଛନ୍ତି, ତାହା ଆମେ କେବେହେଲେ ଭୁଲିପାରିବୁ ନାହିଁ—ଆଜି ଏ ମିଳନ-ମଞ୍ଚରେ ଏହି ଆତ୍ମୀୟ ପ୍ରତିଶ୍ରୁତି ମୁଁ ଆପଣମାନଙ୍କୁ ଦେଉଛି ।"

( ୨୮ । ୬ । ୧୯୪୩ 'ରେଡିଓ ଟୋକିଓ'ରୁ ଅଭିଭାଷଣ )

ଜାପାନରେ ପହଞ୍ଚିବା ପରେ ସେ ସମ୍ବାଦ ସାରା ବିଶ୍ୱରେ ପ୍ରଚାରିତ ହୋଇଗଲା । ଭାରତର ଲୋକମାନେ ଆନନ୍ଦରେ ବିହ୍ୱଳ ହୋଇଉଠିଲେ । ତାଙ୍କର ପ୍ରିୟ ନେତା ବର୍ତ୍ତମାନ ଜାପାନରେ ଏବଂ ଭାରତର ନିକଟବର୍ତ୍ତୀ । ସମୟ ଆସିବ, ଦେଶକୁ ମୁକ୍ତ

କରିବା ପାଇଁ ସେ ନିଶ୍ଚୟ ଭାରତରେ ଆସି ପହଞ୍ଚିବେ । ଶତ୍ରୁର ଶାସନ ଭାରତରେ ବେଶିଦିନ ତିଷ୍ଠି ବ ନାହିଁ ।

ଜାପାନ ତଥା ପୂର୍ବ-ଏସିଆରେ ଥିବା ଦେଶପ୍ରେମୀ ଭାରତୀୟମାନଙ୍କୁ ଲକ୍ଷ୍ୟ ରଖି ସେ ଉଦ୍‌ବୋଧନର ବାର୍ତ୍ତା ଶୁଣାଇ କହିଥିଲେ, "ଭାରତକୁ ମୁକ୍ତ କରିବାର ଦାୟିତ୍ୱ ସଂପୂର୍ଣ୍ଣ-ଭାବରେ ଆମର । ଏ ଦାୟିତ୍ୱ ଆମେ କାହା ଉପରେ ନ୍ୟସ୍ତ କରିବା ନାହିଁ କିମ୍ବା ନ୍ୟସ୍ତ କରାଯାଇନପାରେ । ଶତ୍ରୁମାନେ ସଜାଗ ତଥା ସାମରିକ ଦିଗରୁ ସଶସ୍ତ୍ର । ସେମାନଙ୍କୁ ଜୟ କରିବାକୁ ହେଲେ ଅନୁରୂପ ସାମରିକ ପ୍ରସ୍ତୁତିର ଆବଶ୍ୟକତା ରହିଛି । ଅସ୍ତ୍ରର ଜବାବ ଅସ୍ତ୍ରରେ ଦିଆନଗଲେ ପରିସ୍ଥିତିର ସମାଧାନ କେବେହେଲେ ସମ୍ଭବ ନୁହେଁ । କେବଳ ଆଇନ ଅମାନ୍ୟ ଆନ୍ଦୋଳନ କିମ୍ବା ଅସହଯୋଗ ଆନ୍ଦୋଳନ, ଏକ ଅବିବେକୀ ତଥା ଦୁର୍ଦ୍ଦାନ୍ତ ଶତ୍ରୁର ମୁକାବିଲା କିମ୍ବା ହୃଦୟ ପରିବର୍ତ୍ତନ କରିପାରିବ ନାହିଁ । ଶତ୍ରୁର ଉତ୍ତୋଳିତ ଅସ୍ତ୍ରକୁ ଭୂପତିତ କରିବାପାଇଁ ପ୍ରତିଅସ୍ତ୍ର ଉତ୍ତୋଳନର ଆବଶ୍ୟକତା ରହିଛି । ଆମକୁ ସେଥିପାଇଁ ପ୍ରସ୍ତୁତ ହୋଇଯିବାକୁ ପଡ଼ିବ । ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ପାଇଁ ପ୍ରତ୍ୟେକଙ୍କୁ ମୁକ୍ତିପଥର ସୈନିକ ରୂପେ କାର୍ଯ୍ୟ କରିବାକୁ ହେବ ।

"ମୋର ଦୃଢ଼ ବିଶ୍ୱାସ, ପୂର୍ବ-ଏସିଆରେ ମୋର ଯେଉଁ ବନ୍ଧୁମାନେ ଅଛନ୍ତି ସେମାନଙ୍କର ପ୍ରୀତିପୂର୍ଣ୍ଣ, ସକ୍ରିୟ ସାହାଯ୍ୟ ଓ ସହଯୋଗ ମିଳିଲେ ମୁଁ ଏକ ଦୁର୍ଦ୍ଧର୍ଷ ସେନାବଳ ଗଠନ କରିପାରିବି । ଇଂରେଜଶକ୍ତିକୁ ପ୍ରତିହତ କରିବା ପାଇଁ ଏହା ନିଶ୍ଚୟ ସମର୍ଥ ହୋଇ ପାରିବ । ସେହି ସନ୍ଧିସନ୍ଧ ମୁହୂର୍ତ୍ତ ଆସି ଉପଗତ ହୋଇଯାଇଛି । ଆମେ ପ୍ରତ୍ୟେକ ନିଜକୁ ସୈନିକବେଶରେ ସମରପ୍ରାଙ୍ଗଣକୁ ଆଗେଇଯିବାକୁ ପ୍ରସ୍ତୁତ କରି ରଖିବା ଦରକାର । ଯେଉଁ ଦିନ ସ୍ୱାଧୀନତାପ୍ରେମୀ ଭାରତୀୟମାନେ ନିଜର ରକ୍ତ ଦାନକରିପାରିବେ, ସେଦିନ ଭାରତ ନିଶ୍ଚୟ ସ୍ୱାଧୀନତା ହାସଲ କରିପାରିବ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।"

( ୧୯୪୩ ମସିହା, ଜୁଲାଇ ୪ ତାରିଖ )

ସୁଭାଷ ବୋଷ ରାସବିହାରୀ ବୋଷଙ୍କଠାରୁ ସଂଗଠନର ଦାୟିତ୍ୱ ନେଇସାରିଲେଣି । ପୂର୍ବ-ଏସିଆର ସମସ୍ତ ମୁକ୍ତି ଅନୁଷ୍ଠାନ ଭିତରେ ନବଜୀବନର ସଞ୍ଚାର ହୋଇଛି । ଏଠାରେ ପୂର୍ବରୁ ଥିବା ଆଜାଦ୍ ହିନ୍ଦ୍ ଫୌଜ, ଯାହାକି ମୁମୂର୍ଷୁ ଅବସ୍ଥାରେ ଥିଲା, ସୁଭାଷଙ୍କ ଜୀବନମୟ ସ୍ପର୍ଶରେ ପୁଣି ଜୀବନ୍ୟାସ ଲାଭକଲା । ସୁଭାଷଙ୍କୁ ସାହାଯ୍ୟ କରିବା ପାଇଁ ରାସବିହାରୀ ପାଖେ ପାଖେ ରହିଲେ ।

ସେ ଦିନଟି ଥିଲା ଇତିହାସର ଏକ ଉତ୍ତେଜନାମୟ ସମୟ ।

ଭାରତୀୟ ସ୍ୱାଧୀନତା ଲିଗ୍ ଓ ଆଜାଦ ହିନ୍ଦ୍ ଫୌଜ ତରଫରୁ ସୁଭାଷଙ୍କୁ ଅଭିବାଦନ ଦିଆଯିବାର ବ୍ୟବସ୍ଥା ହୋଇଥାଏ ସିଙ୍ଗାପୁରରେ । ସୁଭାଷ ଓ ରାସବିହାରୀ ବୋଷ ଉଭୟେ

ଟୋକିଓରୁ ଯାତ୍ରା ଆରମ୍ଭ କଲେ ସିଙ୍ଗାପୁରର ପ୍ରସିଦ୍ଧ ବିମାନବନ୍ଦର 'ସାମ୍‌ବାଓ୍ୱାଙ୍ଗ୍'କୁ । ଅପେକ୍ଷାରତ ଭାରତ ସ୍ୱାଧୀନତା ଲିଗ୍, ଆଜାଦ ହିନ୍ଦ୍ ଫୌଜର ନେତୃବୃନ୍ଦ, ବହୁ ଗଣ୍ୟମାନ୍ୟ ଭାରତୀୟ ଓ ହଜାର ହଜାର ନରନାରୀ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନକଲେ । ସେ ମଂଚ ଉପରକୁ ଯାଇ ଆସନ ଗ୍ରହଣକଲେ । ସମସ୍ତଙ୍କ ମଧ୍ୟରେ ଆଶା, ଆନନ୍ଦ ଓ ଉଚ୍ଛ୍ୱାସର ଅବାରିତ ସ୍ରୋତ ପ୍ରବାହିତ ହେଲା । ସେ ଭାଷଣ ଆରମ୍ଭକରି କହିଲେ :

"ପୂର୍ବ-ଏସିଆର ସ୍ୱାଧୀନତା ସଂଗ୍ରାମର ପ୍ରତିନିଧି ଶ୍ରୀଯୁକ୍ତ ରାସବିହାରୀ ବୋଷ, ଭଉଣୀ ଓ ଭାଇମାନେ !

"ମୋତେ ଯେ ଆପଣମାନେ ପୂର୍ବ-ଏସିଆର ଭାରତୀୟ ସ୍ୱାଧୀନତା ଲିଗ୍‌ର ସଭାପତିରୂପେ ନିର୍ଦ୍ଦିଷ୍ଟରେ ନିର୍ବାଚିତ କରିଛନ୍ତି, ସେଥିପାଇଁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ମୋତେ ଏ ଯେଉଁ ସମ୍ମାନ ଦିଆଗଲା, ଏହାକୁ ମୁଁ ନମ୍ରତାର ସହିତ ଗ୍ରହଣ କରୁଛି ଓ ଯଥାବିଧି କର୍ତ୍ତବ୍ୟ ସଂପାଦନ କରିବା ପାଇଁ ଦୃଢ଼ପ୍ରତିଜ୍ଞ । ଈଶ୍ୱରଙ୍କର ଅପାର କରୁଣାରୁ ଆମ୍ଭେମାନେ ସ୍ୱାଧୀନତାପଥରେ ଆଗେଇଯିବାପାଇଁ ପ୍ରତ୍ୟେକ ସ୍ତରରେ ତାଙ୍କର ଆଶୀର୍ବାଦ ଲାଭ କରିଛୁ । ଲକ୍ଷ୍ୟସ୍ଥଳରେ ନିର୍ବିଘ୍ନରେ ଆମେ ଯେ ପହଞ୍ଚିପାରିବା ଏଥିରେ ସନ୍ଦେହ ନାହିଁ । ଅନୁକୂଳ ପରିବେଶ ମୋର ମନୋବଳକୁ ବୃଦ୍ଧି କରିବା ସହିତ ମୋର ଚିନ୍ତାଶକ୍ତିକୁ ତୀକ୍ଷ୍ଣ କରିବାରେ ସାହାଯ୍ୟ କରିଛି ।

"ବର୍ତ୍ତମାନ ଏକ ସଶସ୍ତ୍ର ସଂଗ୍ରାମ କରିବା ପାଇଁ ଉପଯୁକ୍ତ ସମୟ ଉପଗତ ହୋଇଛି । ନିଜର ମାତୃଭୂମି ପାଇଁ ଏକାନ୍ତ ଭାବରେ ବିଶ୍ୱସ୍ତ ହୋଇ ସାମରିକ ଅନୁଷ୍ଠାନରେ ଲାଗିପଡ଼ିଲେ ଆମେ ଆମର ଲକ୍ଷ୍ୟ ନିଶ୍ଚିତ ଭାବରେ ହାସଲ କରିପାରିବା ! ଏହି ସୁଦୂର ପ୍ରାଚ୍ୟ ଭୂଖଣ୍ଡରେ ଆପଣମାନେ ଏକ ପତାକାତଳେ ଏକତ୍ରିତ ହେବାପାଇଁ ମୁଁ ଆନ୍ତରିକ ନିବେଦନ କରେ । ପ୍ରଥମଥର ପାଇଁ ଆପଣ ଯେ ସର୍ବସମ୍ମତକ୍ରମେ ଏଠାରେ ଏକତ୍ରିତ ହୋଇପାରିଛନ୍ତି, ତାହା ଆପଣମାନଙ୍କର ଏକତାର ସୂଚନା ଦିଏ । × × × ଆମ୍ଭମାନଙ୍କୁ ଯେ ସଶସ୍ତ୍ର ସଂଗ୍ରାମ କରିବାକୁ ହେବ ଏଥିରେ କାହାର ଦ୍ୱିମତ ନାହିଁ । ଇଂରେଜମାନଙ୍କର କୌଶଳପୂର୍ଣ୍ଣ ପ୍ରତିଶ୍ରୁତିରେ ଭୁଲିଯାଇ ସେମାନଙ୍କ ସହିତ କିଛି ଗୋଟାଏ ବୁଝାମଣା ବା ଆପୋଷ ମିଳାମିଶାକୁ ପ୍ରଶ୍ରୟ ଦେଇ ବହୁମୂଲ୍ୟ ସମୟକୁ ଆଦୌ ନଷ୍ଟ କରିବା ଉଚିତ ନୁହେଁ । ଆତ୍ମୋତ୍ସର୍ଗ, ତ୍ୟାଗ ତଥା କର୍ତ୍ତବ୍ୟପାଳନ ପାଇଁ ଆମକୁ ପ୍ରସ୍ତୁତ ହେବାକୁ ହେବ ।

"ମିତ୍ରଶକ୍ତି ବ୍ରିଟେନ ଉପରେ ଆକ୍ରମଣ କରି ଆମ୍ଭମାନଙ୍କୁ ଏକ ସୁଯୋଗ ଦାନ କରିଛି ଲକ୍ଷ୍ୟପୂରଣ ପାଇଁ । ଆମେ ତାର ଯଥାର୍ଥ ବିନିଯୋଗ କରିବା ଉଚିତ । ସେମାନେ ଆମର ଶତ୍ରୁ ସହିତ ଲଢ଼ୁଛନ୍ତି—ଏହାହିଁ ଆମ ପାଇଁ ଏକ ବଡ଼ ସାହାଯ୍ୟ । ବର୍ମା ଓ ଫିଲିପାଇନ୍

ପ୍ରତି ଜାପାନ ଯେଉଁ ବନ୍ଧୁ ମନୋଭାବ ପ୍ରଦର୍ଶନ କରି ସେମାନଙ୍କର ମୁକ୍ତି ପାଇଁ ସାହାଯ୍ୟ କରୁଛି, ତାହା ଆମପାଇଁ ମଧ୍ୟ ଶିକ୍ଷାର ଏକ ନିଦର୍ଶନ । ସେମାନେ ନିଜର ପ୍ରତିଶ୍ରୁତିରେ ଯେ କେତେଦୂର ଅଟଳ ଏହା ତା'ର ପ୍ରମାଣ ।

"ପାଶ୍ଚାତ୍ୟ ଶକ୍ତିକୁ ପ୍ରତିହତ କରିବାଦିଗରେ ପ୍ରାଚ୍ୟ ଦେଶମାନଙ୍କ ମଧ୍ୟରୁ ଜାପାନ ହେଉଛି ପ୍ରଥମ ଦେଶ । ସେ ଏସିଆର କୌଣସି ଦେଶକୁ ପରାଧୀନ ଅବସ୍ଥାରେ ଦେଖିବାକୁ ଚାହେଁନାହିଁ । ବର୍ତ୍ତମାନ ସମୟ ଓ ପାରିବେଶିକ ପରିସ୍ଥିତି ଆମମାନଙ୍କ ପାଇଁ ଅନୁକୂଳ । ଦେଶବିଦେଶରେ ଥିବା ପ୍ରତ୍ୟେକ ଭାରତୀୟ ଜଣେ ନେତାଙ୍କ ନେତୃତ୍ୱ ତଳେ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଯିବା ଉଚିତ । ଇଂରେଜ ସାମ୍ରାଜ୍ୟକୁ ଧୂଳିସାତ୍ କରିବା ପାଇଁ ନିର୍ଦ୍ଦେଶ ମିଳିଲାକ୍ଷଣି ଅସ୍ତ୍ର ଉତ୍ତୋଳନ କରି ଉଦ୍ଦାମତାର ସହିତ ରଣାଙ୍ଗନକୁ ଲମ୍ଫ ଦେବା ଆବଶ୍ୟକ ।

"ସାଂପ୍ରତିକ ପରିସ୍ଥିତିରେ ମୁଁ ଏକ କାମଚଳା ସ୍ୱାଧୀନ ଭାରତ ସରକାର ଗଠନ କରିବାକୁ ଚାହେଁ । ସମସ୍ତ ଭାରତୀୟଙ୍କୁ ଦେଶବିଦେଶରେ ଏକତ୍ରିତ କରିବା ଦିଗରେ ଏହି ସରକାର ସହାୟକ ହେବ । ଏହାହିଁ ହେବ ଆମ୍ଭମାନଙ୍କର ଶକ୍ତିର ଉତ୍ସ ଓ ଭାରତର ସ୍ୱାଧୀନତା ବିପ୍ଳବକୁ ସଫଳ କରିବା ଦିଗରେ ଏହାର ଅବଦାନ ଅବିସ୍ମରଣୀୟ ହୋଇ ରହିବ । ଭାରତୀୟ ସଂଗ୍ରାମୀମାନଙ୍କୁ ସଶସ୍ତ୍ର କରିବା ଦିଗରେ ଏହି ସରକାର ସାହାଯ୍ୟ କରିବ ।

"ଭାରତରୁ ବ୍ରିଟିଶ ଶାସନ ଯେଉଁଦିନ ଲୋପ ପାଇବ, ଠିକ୍ ସେହି ମୁହୂର୍ତ୍ତରେ ଏହି କାମଚଳା ସରକାରର କର୍ତ୍ତବ୍ୟ ଶେଷ ହୋଇଯିବ ଓ ତା'ପରେ ଭାରତର ଲୋକମାନେ ତାଙ୍କର ବିଧିବଦ୍ଧ ସରକାର ଗଠନ କରିବେ । ଆମେ ଆମର ଜୀବନ ବିନିମୟରେ ଯଦି ସ୍ୱାଧୀନତାକୁ ହାସଲ କରିବୁ ତା'ହେଲେ ତାକୁ ରକ୍ଷାକରିବା ପାଇଁ ସର୍ବଦା ତତ୍ପର ହେବୁ ।

"ବନ୍ଧୁଗଣ ! ଆପଣମାନଙ୍କର ସହଯୋଗ ଓ ପ୍ରତିଶ୍ରୁତି ପାଇଁ ତଥା ମୋ ଉପରେ ଆସ୍ଥା ସ୍ଥାପନ କରାଯାଇଥିବାରୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ଆମର ଶତ୍ରୁ କେବଳ ସବଳ ଓ ଶକ୍ତିଶାଳୀ ନୁହେଁ; ସେ ମଧ୍ୟ ଅତି ନିଷ୍ଠୁର ଏବଂ ଚରମ ଅତ୍ୟାଚାରୀ । ଶତ୍ରୁତାର ମୁକାବିଲା ପାଇଁ ଆମକୁ ତୀବ୍ର ସଂଘର୍ଷ ତଥା କଠିନ ପରିସ୍ଥିତିକୁ ଲମ୍ଫ ଦେବାକୁ ପଡ଼ିବ । ମୋର ବିଶ୍ୱାସ, ଆପଣମାନେ ଏହି କଠିନ ପରୀକ୍ଷା ଭିତରେ ଗତିକରି ସଫଳତା ହାସଲ କରିପାରିଲେ ଏ ଦେଶ ନିଶ୍ଚୟ ତାର ଚିର ଇପ୍ସିତ ସ୍ୱାଧୀନତା ଲାଭ କରିପାରିବ ।"

ସେଦିନ ଥାଏ ୧୯୪୩ ମସିହା, ଜୁଲାଇ ପାଞ୍ଚ ତାରିଖ ।

ଯେଉଁ ସିଙ୍ଗାପୁର ଅଳ୍ପ କେତେଦିନ ପୂର୍ବରୁ ଇଂରେଜମାନଙ୍କର ଶାସକୀୟ ଚାରଣଭୂମି ଥିଲା, ତାହା ବର୍ତ୍ତମାନ ଜାପାନୀମାନଙ୍କ ହାତରେ । ସୁଭାଷ ଏହି ସଦ୍ୟମୁକ୍ତ ସହରରେ

'ଭାରତୀୟ ମୁକ୍ତିବାହିନୀ'କୁ ଜୀବନ୍ୟାସ ଦେଇ, ଅଗ୍ନିମୟୀ ଭାଷାରେ ଏହାର ସୈନିକଗଣଙ୍କୁ ଉଦ୍‌ବୋଧନ ଛଳରେ କହିଥିଲେ :

"ହେ ମୁକ୍ତିବାହିନୀର ସୈନିକଗଣ !

"କରୁଣାମୟ ଭଗବାନଙ୍କ ଅଶେଷ କୃପାରୁ ମୁଁ ଏହି ସମୟଟିରେ 'ଭାରତୀୟ ମୁକ୍ତି-ବାହିନୀ'ର ଜନ୍ମ ଘୋଷଣା କରୁଛି । ବିଶ୍ୱବାସୀ ଏହି ଆକସ୍ମିକ ଉଦ୍‌ଘୋଷଣରେ ନିଶ୍ଚୟ ଚମତ୍କୃତ ତଥା ଆନନ୍ଦିତ ହେବେ । ଏହା ଯେ କେବଳ ଭାରତକୁ ମୁକ୍ତିଦାନ କରିବ ତା' ନୁହେଁ, ଭାବୀ ସ୍ୱାଧୀନ ଭାରତର ଜାତୀୟବାହିନୀ ଗଠନ କରିବା ଦିଗରେ ଏହାର ବିଶେଷ ଅବଦାନ ରହିବ ଓ ସେହି ବହୁପ୍ରତୀକ୍ଷିତ ଐତିହାସିକ ମୁହୂର୍ତ୍ତ ଯେତେବେଳେ ଆସି ପହଞ୍ଚିବ, ସେତେବେଳେ ଏହା ଭାରତୀୟ ନେତୃତ୍ୱାଧୀନ ହୋଇ ରଣପ୍ରାଙ୍ଗଣରେ ଅବତୀର୍ଣ୍ଣ ହେବ ।

"ଯେଉଁ ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ହୁଏନି ଓ ତାହା ଚିରସ୍ଥାୟୀ ବୋଲି ଲୋକମାନଙ୍କର ଧାରଣା, ମୁଁ ତାହା ଗ୍ରହଣ କରେନାହିଁ । ବିଶ୍ୱରେ ଏପରି କୌଣସି ଶକ୍ତି ନାହିଁ, ଯାହାର ଅଭ୍ୟୁଦୟ ପରେ ପତନ ନ ହୁଏ । କେତେ ମହାନ୍ ଶକ୍ତିର ଅଭ୍ୟୁଦୟ ଓ ପତନ ହୋଇଛି, ଇତିହାସ ହିଁ ତାର ମୂକସାକ୍ଷୀ । ଚରମ ଶକ୍ତିସମ୍ପନ୍ନ ବ୍ରିଟିଶ ସାମ୍ରାଜ୍ୟର ଶ୍ମଶାନ ଉପରେ ଛିଡ଼ା ହୋଇ ଯେକୌଣସି ଶ୍ଳେଟପିଲି ବି କହିବ ଯେ ଇଂରେଜମାନଙ୍କର ପ୍ରତାପ ଆଉ ବେଶି ଦିନ ନୁହେଁ ।

"ଦିଲ୍ଲୀ ଚଲୋ, ଦିଲ୍ଲୀ ଚଲୋ' ଏହାହିଁ ଆମର ଆଜିର ଏକମାତ୍ର ସାମରିକ ସ୍ଲୋଗାନ୍ । ଆମକୁ କୌଣସିମତେ ଦିଲ୍ଲୀର ପବିତ୍ର ବୁକୁରେ ପହଞ୍ଚି ନିଜର ଅଧିକାରକୁ ସାବ୍ୟସ୍ତ କରିବାକୁ ହେବ । ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ଯୁଦ୍ଧୋତ୍ତର ଜୀବନଯାପନ କରିବାର ସୁଯୋଗ ପାଇବେ ମୁଁ କହିପାରିବିନାହିଁ, ତେବେ ମୁଁ ଏତିକି ଜାଣେ ଯେ; ଆମେ ନିଶ୍ଚୟ ବିଜୟ ହାସଲ କରିବା । ଯେପର୍ଯ୍ୟନ୍ତ ଇଂରେଜ ଶାସନର ଶ୍ମଶାନଭୂମି ଲାଲକିଲା ତଥା ରେଡ୍‌ଫୋର୍ଟରେ ଆମେ ବିଜୟ ଶୋଭାଯାତ୍ରା ନ ବାହାରିଛେ, ସେ ପର୍ଯ୍ୟନ୍ତ ଆମର ବିଶ୍ରାମନାହିଁ ।

"ମୁଁ ସ୍ପଷ୍ଟଭାବରେ ଅନୁଭବ କରିଛି ଯେ ଭାରତ ତା'ର ସ୍ୱାଧୀନତା ହାସଲ କରିବା ପାଇଁ ସବୁଦିଗରୁ ପରିପକ୍ୱ ହୋଇଥିଲେ ମଧ୍ୟ କେବଳ ସାମରିକ ଦିଗରେ ଏପର୍ଯ୍ୟନ୍ତ ସ୍ୱୟଂ-ସଂପୂର୍ଣ୍ଣ ହୋଇନାହିଁ । ତାର ଏକ ମୁକ୍ତିବାହିନୀ ନାହିଁ । ଇତିହାସରୁ ଆମେ ଜାଣିବା ଯେ ଯେଉଁ ମହାନ୍ ବୀରବୃନ୍ଦ ନିଜନିଜର ଦେଶକୁ ସ୍ୱାଧୀନ କରିବା ଦିଗରେ ସଫଳ ହୋଇଛନ୍ତି, ପ୍ରତ୍ୟେକଙ୍କ ପଛରେ ନିଶ୍ଚୟ ସୁସଜ୍ଜିତ, ସୁଶୃଙ୍ଖଳିତ ତାଲିମପ୍ରାପ୍ତ ସେନାବାହିନୀ ଅଛନ୍ତି । ଆପଣମାନେ ପ୍ରକୃତରେ ଭାଗ୍ୟବାନ୍ ଯେ ମାତୃଭୂମିର ସ୍ୱାଧୀନତା ପାଇଁ ଏଇ ପ୍ରଥମଥର ଆପଣମାନେ ଭାରତୀୟ ମୁକ୍ତିବାହିନୀ ଗଠନ କରୁଛନ୍ତି । ସ୍ୱାଧୀନତା ହାସଲ କରିବାପାଇଁ

ଆମର ଯେଉଁ ଏକମାତ୍ର ଯୋଗ୍ୟତାର ଅଭାବ ଥିଲା, ଆପଣମାନେ ତାହା ଯେ ପୂରଣ କରିପାରିଛନ୍ତି, ଏହା କମ୍ ଗୌରବର କଥା ନୁହେଁ ।

"ପ୍ରତ୍ୟେକ ସୈନିକଜୀବନରେ ତିନୋଟି ମହାମନ୍ତ୍ର ହେଲା ବିଶ୍ୱସ୍ତତା, କର୍ତ୍ତବ୍ୟପାଳନ ଓ ତ୍ୟାଗ । ଆପଣମାନଙ୍କୁ ନିଷ୍ଠାର ସହ ଏହା ଗ୍ରହଣ କରିବାକୁ ହେବ । ଜଣେ ପ୍ରକୃତ ସୈନିକର ସାମରିକ ତଥା ଆଧ୍ୟାତ୍ମିକ ଦିଗରେ ତାଲିମର ଆବଶ୍ୟକତା ରହିଛି । ଏହାବ୍ୟତୀତ ପ୍ରତ୍ୟେକଙ୍କ ମଧ୍ୟରେ ଗଭୀର ଆତ୍ମବିଶ୍ୱାସ ମଧ୍ୟ ସୃଷ୍ଟି ହେବା ଉଚିତ । ମୃତ୍ୟୁପ୍ରତି ନିର୍ଭୟ ହେବା ତାର ଅନ୍ୟତମ ବିଶେଷ ଗୁଣ । କୌଣସି ଏକ ସଙ୍କଟମୟ ପରିସ୍ଥିତିରେ ବିବେକାନୁମୋଦିତ ପନ୍ଥାରେ କାମ କରିବାପାଇଁ ଦୂରଦୃଷ୍ଟି ଥିବା ଉଚିତ । ଚଳିତ ବିଶ୍ୱ-ଯୁଦ୍ଧରେ ସୈନିକମାନେ କିପରି ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରର ବ୍ୟବହାର କରିଛନ୍ତି ଓ ସାହସର ସହିତ ଯୁଦ୍ଧକ୍ଷେତ୍ରରେ କାମ କରିଛନ୍ତି, ତାହା ସେମାନଙ୍କଠାରୁ ଶିଖିବା ଉଚିତ । ଆପଣମାନେ ନିଜକୁ ଏ ଦିଗରେ ତାଲିମ କରନ୍ତୁ ଏବଂ ମାତୃଭୂମି ପାଇଁ ଏକ ଅତ୍ୟାଧୁନିକ ସୈନ୍ୟବାହିନୀ ଗଠନ କରନ୍ତୁ । ଏ ଦିଗରେ ଉଚ୍ଚ ଅଫିସରମାନଙ୍କର ଦାୟିତ୍ୱ ଅଧିକ । × × ×

"ବନ୍ଧୁଗଣ ! ଆପଣମାନେ ସ୍ୱେଚ୍ଛାକୃତ ଭାବରେ ଏକ ମହାନ୍ ବ୍ରତ ବରଣ କରିଛନ୍ତି । ତାର ପରିପୂରଣ ପାଇଁ ଜୀବନ ବିନିମୟରେ ଯେକୌଣସି ତ୍ୟାଗ ସ୍ୱୀକାର କରାଯାଇପାରେ । ଭାରତୀୟ ଜାତୀୟ ସମ୍ମାନର ଆପଣମାନେ ହେଉଛନ୍ତି ରକ୍ଷକ ଏବଂ ଭାରତର ଆଶା-ଆକାଙ୍କ୍ଷାର ପ୍ରତୀକ । ଆପଣମାନେ ଏ ପ୍ରକାର ଆଦର୍ଶ ରଖିଯାଆନ୍ତୁ, ଯାହାଫଳରେ ଆପଣ ଦେଶବାସୀଙ୍କର ଆଶୀର୍ବାଦର ପାତ୍ର ହୋଇପାରିବେ ।

"ଆଜି ଦିନଟି ହେଉଛି ମୋ ପାଇଁ ସବୁଠାରୁ ବଳି ଗର୍ବର ଦିନ । ଦାସତ୍ୱବନ୍ଧନରେ ଥିବା ଲୋକ ପାଇଁ ମୁକ୍ତିବାହିନୀର ପ୍ରଥମ ସୈନିକ ହେବାଠାରୁ ବଳି ଆଉ କିଛି ଅଧିକ ଗର୍ବ ଓ ସର୍ବୋଚ୍ଚ ସମ୍ମାନ ନାହିଁ, କହିଲେ ଚଳେ । ମୁଁ ଆପଣମାନଙ୍କୁ ଏହି ମହାନ୍ ମଞ୍ଚରୁ ପ୍ରତିଶ୍ରୁତି ଦେଉଛି ଯେ ସୁଖ-ଦୁଃଖ, ଆଲୋକ ଓ ଅନ୍ଧକାରର ସାଥୀ ରୂପେ ମୁଁ ଆପଣଙ୍କ ପାଖେ ପାଖେ ରହିବି । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଆପଣମାନଙ୍କୁ ଦୁଃଖ, ଯନ୍ତ୍ରଣା, ପୀଡ଼ନା, ଏପରିକି ମୃତ୍ୟୁର ଉପହାର ଦେବା ବ୍ୟତୀତ ମୋ ପାଖରେ ଆଉ କିଛି ନାହିଁ । ଆପଣମାନେ ଯଦି ସୁଯୋଗ ଏବଂ ଦୁର୍ଯୋଗରେ ମଧ୍ୟ ମୋର ନେତୃତ୍ୱକୁ ଗ୍ରହଣ କରନ୍ତି, ତା' ହେଲେ ନିଶ୍ଚିତ ଭାବରେ ମୁଁ ଆପଣମାନଙ୍କୁ ବିଜୟ ତଥା ସ୍ୱାଧୀନତା ମାର୍ଗରେ ଆଗେଇ ନେଇ ପାରିବି । ଆମ୍ଭମାନଙ୍କ ମଧ୍ୟରୁ କିଏ ବଞ୍ଚି ରହି ଭାରତର ସ୍ୱାଧୀନତା ଲାଭ ଦେଖିବ, ତାହା ସେପରି କିଛି ବଡ଼ କଥା ନୁହେଁ—ସବୁଠାରୁ ବଡ଼ କଥା ହେଉଛି, ଭାରତର ସ୍ୱାଧୀନତା ହାସଲ କରିବା ଓ ମାତୃଭୂମିକୁ ବନ୍ଧନମୁକ୍ତ କରିବା ।

ଭଗବାନ ଆମର ସେନାବାହିନୀକୁ ଆଶୀର୍ବାଦ ଦିଅନ୍ତୁ ଓ ଆମେ ବିଜୟପଥରେ ଆଗେଇ-ଯାଉ, ଏହାହିଁ ଆଜିର ପୁଣ୍ୟଦିନରେ ମୋର ଏକମାତ୍ର କାମନା ।

ଇନ୍‌କିଲାବ ଜିନ୍ଦାବାଦ, ଆଜାଦ ହିନ୍ଦ୍ ଜିନ୍ଦାବାଦ ।"

ନେତାଜୀଙ୍କର ଏହି ଭାଷଣ ଥିଲା ଆବେଗମୟ । ଭାବପ୍ରବଣତା ଭିତରେ ସେ ଏତେ ମଗ୍ନ ହୋଇଥିଲେ ଯେ ତାଙ୍କର ମାନସିକ ପ୍ରତିକ୍ରିୟା ପ୍ରତ୍ୟେକ ଶ୍ରୋତାଙ୍କୁ ଗମ୍ଭୀର ଭାବରେ ପ୍ରଭାବିତ କରିଥିଲା ।

ସେ ପୂର୍ବ-ଏସିଆର ପ୍ରତ୍ୟେକ ଅଞ୍ଚଳ ବୁଲି ଲୋକମାନଙ୍କର ସଂସ୍ପର୍ଶରେ ଆସୁଥିଲେ । ତାଙ୍କୁ ବିପୁଳ ସମ୍ମାନ ତଥା ସମ୍ବର୍ଦ୍ଧନା ମିଳୁଥିଲା । ଯେଉଁ ପ୍ରବାସୀ ଭାରତୀୟମାନେ ତାଙ୍କର ସଂସ୍ପର୍ଶରେ ଆସୁଥିଲେ, ତାଙ୍କ ବ୍ୟକ୍ତିତ୍ୱର ମହନୀୟତାରେ ଏପରି ମହିକତ ହେଉଥିଲେ ଯେ, ଭାରତୀୟ ଜାତୀୟ ବାହିନୀରେ ଯୋଗଦେବାକୁ ଆଗ୍ରହର ସହିତ ଚାଲିଆସୁଥିଲେ । ସାହାଯ୍ୟ-ତଥା ସହଯୋଗର ସ୍ରୋତ ଅବାରିତ ଭାବରେ ପ୍ରବାହିତ ହେଉଥିଲା ।

ଅନେକଙ୍କ ମତରେ ସୁଭାଷ ବୋଷ ଏକ ସୈନ୍ୟବାହିନୀ ଗଠନ କରିବାକୁ ଯାଇ ମହାତ୍ମା ଗାନ୍ଧିଙ୍କ ପ୍ରଦର୍ଶିତ ଅହିଂସ ମାର୍ଗରୁ ବିଚ୍ୟୁତ ହୋଇଥିଲେ । ଅହିଂସା ଥିଲା ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ଆୟୁଧ । ମହାତ୍ମା ଗାନ୍ଧୀ ଅହିଂସମାର୍ଗର ପ୍ରବର୍ତ୍ତକ ହେଲେ ମଧ ସ୍ୱାଧୀନ ଭାରତର ସୁରକ୍ଷାପାଇଁ ଏକ ଜାତୀୟ ବାହିନୀର ଆବଶ୍ୟକତାକୁ ସେ ଅସ୍ୱୀକାର କରି ନଥିଲେ । ସେହିପରି ସୁଭାଷ ମଧ ଗାନ୍ଧିଜୀଙ୍କର ଅହିଂସାର ଅର୍ଥ ବ୍ୟକ୍ତିଗତ ହିଂସା, ଲୁଣ୍ଠତରାଜ, ଡକେଇତି, ହତ୍ୟା ଅପରାଧ ପ୍ରଭୃତିଠାରୁ ଦୂରେଇ ରହିବାର ମନୋଭାବକୁ ବୁଝୁଥିଲେ । ବ୍ୟାପକ ଅର୍ଥରେ ସେ ଯେ ମହାତ୍ମା ଗାନ୍ଧିଙ୍କର ଆଦର୍ଶକୁ ସମର୍ଥନ କରୁ ନ ଥିଲେ, ତା' ନୁହେଁ । ସୁଭାଷ ମଧ ଏ ପ୍ରକାର ହିଂସାର ପୂରା ବିରୋଧୀ । ହିଂସା ଶବ୍ଦର ଅର୍ଥକୁ କଦର୍ଥ କରାଯାଇ କନ୍ଦଳ ସୃଷ୍ଟି କରିବାର ସେ ପକ୍ଷପାତୀ ନୁହନ୍ତି । ଦେଶରକ୍ଷା ପାଇଁ ସୈନ୍ୟ-ବାହିନୀ ଗଠନ, ଦୁର୍ବଳକୁ ରକ୍ଷା କରିବାପାଇଁ ସଂଘର୍ଷ, ନିଜର ଆତ୍ମରକ୍ଷା ପାଇଁ ଆବଶ୍ୟକ ହେଲେ ରକ୍ତାକ୍ତ ବିଦ୍ରୋହ କରିବା, ସାହସ, ସାମର୍ଥ୍ୟ, ଶକ୍ତି ଓ ପରାକାଷ୍ଠାର ପରିଚୟ—ଏହାକୁ ହିଂସା ନାମରେ ନାମିତ କରି ଦୁର୍ଯୋଗକୁ ବରଣ କରିନେବାକୁ ଉଭୟ ନେତା ସମର୍ଥନ କରୁ ନଥିଲେ । ସେମାନଙ୍କ ଦୃଷ୍ଟିରେ ଅହିଂସାର ଅର୍ଥ ବୀରତ୍ୱ, ସାହସ ଓ ସାମର୍ଥ୍ୟର ମନୋମୟ ପ୍ରକାଶ ।

ମହାତ୍ମା ଗାନ୍ଧିଙ୍କୁ ଜାତିର ପିତା ଭାବରେ ସୁଭାଷ ସମ୍ବୋଧନ କରୁଥିଲେ । ତାଙ୍କର ମହାନ୍ ଲକ୍ଷ୍ୟର ପରିପୂରଣ ପାଇଁ ସେ ଦେଶ ବାହାରେ ସଂଗ୍ରାମ କରୁଛନ୍ତି ଓ ଗାନ୍ଧିଜୀ ଦେଶ ଭିତରେ ସଂଗ୍ରାମରତ ଅଛନ୍ତି ବୋଲି ସେ ଭାବୁଥିଲେ । ଲକ୍ଷ୍ୟ ହାସଲ ପାଇଁ ଉଭୟଙ୍କର ଅନୁସୃତ ପଥ ସାମାନ୍ୟ ଭିନ୍ନ ହେଲେ ବି ମତ ଓ ଉଦ୍ଦେଶ୍ୟ ଯେ ସମାନ, ଏଥିରେ ସନ୍ଦେହ ନାହିଁ ।

ସୁଭାଷଙ୍କ ପ୍ରତି କେବଳ ସ୍ୱଦେଶରେ ଯେ ସମ୍ମାନ ଥିଲା ତା ନୁହେଁ, ତାଙ୍କର ରେଡିଓ ଅଭିଭାଷଣ ଦେଶର ଅଗଣିତ ନରନାରୀଙ୍କୁ ଉଦ୍‌ବୁଦ୍ଧ କରୁଥିଲା । ଅଧିକାଂଶ ଅନୁଭବ କରୁଥିଲେ, ଯେପରି ସେପରି ସୁଭାଷ ଦେବଦୂତ ପରି ଆକାଶମାର୍ଗରୁ ସେମାନଙ୍କୁ ମାର୍ଗ ପ୍ରଦର୍ଶନ କରୁଛନ୍ତି !!

## ( ୧୧ )

ଜର୍ମାନୀରେ ଥିବାବେଳେ ସୁଭାଷ ବୋଷ ଘୋଷଣା କରିଥିଲେ ଯେ, ଜର୍ମାନ୍‌ମାନେ ଦେଉଥିବା ଅର୍ଥ ସେ ସାହାଯ୍ୟ ହିସାବରେ ଗ୍ରହଣ କଲେ ମଧ୍ୟ ତାର ପରିଶୋଧ କରାଯିବ । ସେମାନଙ୍କ ମନରେ ବିଶ୍ୱାସ ସୃଷ୍ଟିପାଇଁ ପୂର୍ବ-ଏସିଆର ପ୍ରବାସୀ ଭାରତୀୟମାନଙ୍କଠାରୁ ପାଉଥିବା ଅର୍ଥର ଅନେକ ଅଂଶ ସେ ପରିଶୋଧ କରିଦେଇଥିଲେ ।

ଜାପାନରେ ପହଞ୍ଚିବାପରେ, ସେ ଜାପାନ ସରକାରଙ୍କଠାରୁ ପାଉଥିବା ଆର୍ଥିକ ସାହାଯ୍ୟ ମଧ୍ୟ ପରିଶୋଧ କରିବେ ବୋଲି ଅଙ୍ଗୀକାରବଦ୍ଧ ଥିଲେ । ବିଦେଶୀ ଅର୍ଥବଳରେ ଭାରତ ସ୍ୱାଧୀନତା ଲାଭ କଲା କିମ୍ବା ବିଦେଶୀ ଅର୍ଥ ହିଁ ଭାରତୀୟ ସ୍ୱାଧୀନତାର ସମ୍ବଳ ବୋଲି ଯେପରି କେହି ଭବିଷ୍ୟତରେ, ପରୋକ୍ଷରେ କିମ୍ବା ପ୍ରତ୍ୟକ୍ଷରେ ନକହିବେ, ସେଥିପାଇଁ ସେ ସତର୍କ ଥିଲେ । ବିଦେଶଭୂମିରେ ଗଢ଼ିଉଠିଥିବା ବିଭିନ୍ନ ଅନୁଷ୍ଠାନକୁ ଚଳାଇବା ପାଇଁ ଯେଉଁ ଅର୍ଥର ଆବଶ୍ୟକତା ହେଉଥିଲା ତାହା ବଦାନ୍ୟ ବ୍ୟକ୍ତିମାନଙ୍କ-ଠାରୁ ମିଳିଯାଉଥିଲେ ମଧ୍ୟ, ଏହାକୁ ଯୋଗାଡ଼ କରିବା ନିମିତ୍ତ ବହୁ ପରିଶ୍ରମ କରିବାକୁ ପଡ଼ୁଥିଲା ।

'ହିକାରି କିକାନ୍' ହେଉଛି ଯୋଗସୂତ୍ର କାର୍ଯ୍ୟାଳୟ । ଜାପାନ ସରକାର ତଥା ସାମରିକମୁଖ୍ୟଙ୍କ ସହିତ ନେତାଜୀ ଏହା ମାଧ୍ୟମରେ ଯୋଗସୂତ୍ର ସ୍ଥାପନ କରିଥିଲେ । ତାଙ୍କୁ ସାହାଯ୍ୟ କରିବାପାଇଁ ତାଙ୍କ ପାଖରେ ନିଯୁକ୍ତ ହୋଇଥିଲେ ଜଣେ ଦ୍ୱିଭାଷୀ । ପି. ଏନ୍. ପିଲାଇ ଥିଲେ ରେଙ୍ଗୁନର ଭାରତୀୟ ସ୍ୱାଧୀନତା ଲିଗ୍ କାର୍ଯ୍ୟାଳୟରେ ତାଙ୍କର ବ୍ୟକ୍ତିଗତ ସେକ୍ରେଟାରୀ ଏବଂ ଗୋପନୀୟ ବିଭାଗରେ ତାଙ୍କର ଷ୍ଟେନୋ ଥିଲେ ଶ୍ରୀ ଭାସ୍କରନ୍ ।

ସୁଭାଷ ଜାପାନୀମାନଙ୍କର ଆର୍ଥିକ ସାହାଯ୍ୟକୁ ଅବ୍ୟାହତ ରଖାଇବା ନିମିତ୍ତ 'ହିକାରି କିକାନ୍'କୁ ଯେଉଁ ପତ୍ର ଲେଖିଥିଲେ, ତାହା ନିମ୍ନରେ ଦିଆଗଲା ।

Bangkok, 26th August
1943

Dear Sirs,

We are grateful for the material assistance in cash and in kind that we have received from time to time and that we are going to receive in future through the Hikari Kikan from the imperial Japanese Army Authorities. We desire very much to treat the above material assistance as a loan from a friendly power which the Government of Free India will duly honour and repay. I shall, therefore, feel, abliged if the above material assistance given to us is put under one account to be called the Indian Account and the interest thereon is duly calculated.

When the Provisional Government of Free India is formed and is recognised by the Imperial Japanese Government, the League, East-Asia, should be debited to the Provisional Government as a loan duly incurred—which the Government of Free India will honour and repay.

I shall be thankful if this arrangement is approved.

Yours truly
Subhas Chandra Bose
President,
Indian Independence League
East-Asia

ଏହାର ମୋଟାମୋଟି ଅର୍ଥ ହେଉଛି : "ଜାପାନ ସରକାର ଯେଉଁ ଆର୍ଥିକ ସହାୟତା ଦେଉଛନ୍ତି ତାର ବିଧିବଦ୍ଧ ହିସାବ ରହିବା ଉଚିତ । ଏହାକୁ ଜାପାନ ସରକାର ଏକ ବନ୍ଧୁ ରାଷ୍ଟ୍ରର ଅନ୍ୟ ଏକ ବନ୍ଧୁ ରାଷ୍ଟ୍ରକୁ ଋଣ ସ୍ୱଭାବରେ ପ୍ରଦାନ କରିବା ଉଚିତ । ଏହି ଋଣକୁ ସ୍ୱାଧୀନ ଭାରତର ଅସ୍ଥାୟୀ ସରକାର ସମ୍ମାନର ସହିତ ପରିଶୋଧ କରିବେ । ଏହା

‘ଭାରତ ହିସାବ’ ଶିରୋନାମାରେ ହିସାବ ରଖାଯିବ ଓ ପ୍ରତିବର୍ଷ ତାର ସୁଧ ମଧ୍ୟ କଷାଯାଇ ସେଥିରେ ଲିପିବଦ୍ଧ ରହିବ । ଯେତେବେଳେ ସ୍ୱାଧୀନ ଭାରତର କାମଚଳା ସରକାର ଗଠିତ ହେବ ଏବଂ ଜାପାନ ସରକାର ଦ୍ୱାରା ସ୍ୱୀକୃତ ହେବ, ସେତେବେଳେ ଭାରତର କାମଚଳା ସରକାର ତାହାକୁ ପରିଶୋଧ କରିବ ।”

ଜାପାନର ପ୍ରଧାନମନ୍ତ୍ରୀ ମିଃ ତୋଜୋ ତାହା ଗ୍ରହଣ କରିଥିଲେ । ପୁନର୍ଗଠିତ ଆଜାଦ୍ ହିନ୍ଦ୍ ଫୌଜର କାର୍ଯ୍ୟକଳାପ ତାଙ୍କ ଭିତରେ ବିଶ୍ୱାସ ସୃଷ୍ଟି କରିଥିଲା । ନେତାଜୀଙ୍କ ନେତୃତ୍ୱକୁ ସେ ଆନ୍ତରିକତାର ସହିତ ସମ୍ମାନ ଦେଉଥିଲେ ।

ନେତାଜୀ ସୁଭାଷ ବୋଷ ମାଲୟ, ଥାଇଲାଣ୍ଡ, ବର୍ମା ଆଦି ସ୍ଥାନରେ ବାସକରୁଥିବା ଭାରତୀୟମାନଙ୍କୁ ଭାରତର ମୁକ୍ତି-ଆନ୍ଦୋଳନରେ ସକ୍ରିୟ ଭାବରେ ଜଡ଼ିତ କରିବା ପାଇଁ ବିଭିନ୍ନ ଅଞ୍ଚଳ ଗସ୍ତ କରୁଥିଲେ । ତାଙ୍କର ସାନ୍ନିଧ୍ୟ ଲୋକମାନଙ୍କ ମଧ୍ୟରେ ଗଭୀର ଉତ୍ସାହ ଓ ଆନ୍ତରିକତା ସୃଷ୍ଟି କରୁଥିଲା । ଲୋକମାନେ ନେତାଜୀଙ୍କ ହୃଦୟଛୁଆଁ ଭାଷାରେ ଏପରି ଚହଲିଉଠୁଥିଲେ ଯେ ଭରା କଳସିର ଉତ୍ତରଣ ପରି ସେମାନଙ୍କର ସାହାଯ୍ୟ-ସହଯୋଗ ଓ ଆର୍ଥିକ ସହାୟତା ଅବାରିତ ଭାବରେ ତାଙ୍କ ପାଖକୁ ଛୁଟିଥିଲା । ଅଜସ୍ର ଯୁବକଯୁବତୀ ତାଙ୍କ ପାଖରେ ନିଜକୁ ଉତ୍ସର୍ଗ କରୁଥିଲେ ମୁକ୍ତି-ସଂଗ୍ରାମରେ ନିଜକୁ ଝାସଦେବାପାଇଁ । ନେତାଜୀ ସେମାନଙ୍କର ଆନ୍ତରିକତା ଅନୁଭବ କରୁଥିଲେ ଏବଂ ଆଜାଦ୍ ହିନ୍ଦ୍ ଫୌଜ, ଭାରତୀୟ ସ୍ୱାଧୀନତା ଲିଗ୍, ଝାନ୍ସିରାଣୀ ରେଜିମେଣ୍ଟରେ ସେମାନଙ୍କୁ ଅନ୍ତର୍ଭୁକ୍ତ କରୁଥିଲେ ।

ନେତାଜୀଙ୍କଦ୍ୱାରା ଭାରତୀୟ ସ୍ୱାଧୀନତା ଲିଗ୍ ପୁନର୍ଗଠିତ ହୋଇଥିଲା ଏବଂ ଏହାର କାର୍ଯ୍ୟଧାରା ବ୍ୟାପକ ତଥା ପ୍ରସାରିତ ହୋଇଥିଲା । ଲିଗ୍‌ର ସଦର କାର୍ଯ୍ୟାଳୟରେ ନିମ୍ନଲିଖିତ ବିଭାଗଗୁଡ଼ିକ କାର୍ଯ୍ୟ କରୁଥିଲା : ସର୍ବସାଧାରଣ ଅର୍ଥ ବିଭାଗ, ପ୍ରଚାର ବିଭାଗ, ଗୁପ୍ତଚର ବିଭାଗ, ନିଯୁକ୍ତିକରଣ ଓ ତାଲିମ ବିଭାଗ ପ୍ରଭୃତି । ନେତାଜୀ ଏହି ବିଭାଗଗୁଡ଼ିକୁ ସକ୍ରିୟ ଓ ଶକ୍ତିସମ୍ପନ୍ନ କରିବା ସହିତ ସେଥିରେ ଆଉ ସାତୋଟି ନୂତନ ବିଭାଗ ଯୋଗକଲେ : ୧ । ମହିଳା ବିଭାଗ, ୨ । ଜାତୀୟ ଶିକ୍ଷା ଓ ସଂସ୍କୃତି, ୩ । ସମାଜମଙ୍ଗଳ, ୪ । ପୁନର୍ଗଠନ, ୫ । ଯୋଗାଣ, ୬ । ବୈଦେଶିକ ବ୍ୟାପାର, ୭ । ଗୃହ ଓ ପରିବହନ ବିଭାଗ । ନେତାଜୀ ପ୍ରତ୍ୟେକ ବିଭାଗର ସୁନିୟନ୍ତ୍ରଣ ପାଇଁ ଯୋଗ୍ୟ ଲୋକମାନଙ୍କୁ ଦାୟିତ୍ୱ ଦେଇଥିଲେ ଓ ନିଜେ ସେସବୁର ପ୍ରତ୍ୟକ୍ଷ ତତ୍ତ୍ୱ ନେଉଥିଲେ । ଲିଗ୍ ଜୀବନ୍ୟାସ ନେଇ ପୁଣି ଥରେ ଶୀତଳ ସମାଧିରୁ ମୁଣ୍ଡ ଟେକିଲା । ନୂତନ କର୍ମପ୍ରେରଣା ସମସ୍ତଙ୍କୁ ଉଦ୍ଦୀପିତ କରିଥିଲା । ପ୍ରତ୍ୟେକ ବିଭାଗର କାର୍ଯ୍ୟ ଏପରି ଭାବରେ ନିୟନ୍ତ୍ରିତ ହେଉଥିଲା ଯେ ତାହା ସହରର ସେତୁ ରୂପେ କାମ କରୁଥିଲା; କୌଣସି ପ୍ରକାର ବିଭେଦ ଓ ବ୍ୟତିକ୍ରମ ସୃଷ୍ଟି ହେଉନଥିଲା ।

ମହିଳା ବିଭାଗର ଅକଳ୍ପନୀୟ କାମ ଯେ ଦେଖିନାହିଁ, କୌଣସି ଭାଷାର ବର୍ଣ୍ଣନାରେ ତାର ଚିତ୍ର ତାକୁ ଦିଆଯାଇପାରିବନାହିଁ । ଏ ବିଭାଗ ଥିଲା ଏକ ବିସ୍ମୟର ପ୍ରକାଶ । ଭାରତୀୟ

ନାରୀମାନେ ଏପରି ଅଭୂତପୂର୍ବ ଦେଶପ୍ରେମର ନିଶାରେ ପ୍ରମତ୍ତ ହୋଇ ନିଜକୁ ମାତୃଭୂମିର ମୁକ୍ତିପାଇଁ ଅର୍ପଣକରିବା ବିଶ୍ୱ-ଇତିହାସର ଏକ ଅଭିନବ ଘଟଣା । ଯେଉଁ ଭାରତୀୟ ନାରୀଙ୍କୁ ଲଜ୍ଜାଳତିକା ବୋଲି କୁହାଯାଏ, ଯେଉଁମାନେ ବିଶ୍ୱ ନିରକ୍ଷରତାର ଚରମ ପର୍ଯ୍ୟାୟରେ କୋଳାହଳ ସୃଷ୍ଟି କରନ୍ତି ବୋଲି ସମସ୍ତଙ୍କର ଧାରଣା, ଯେଉଁମାନେ ପରମ୍ପରା-ପ୍ରପୀଡ଼ିତ ଏବଂ କୌଣସି ନୂତନ ବ୍ୟତିକ୍ରମକୁ ଗ୍ରହଣ କରିବା ପାଇଁ ବିମୁଖ, ଘରର ଅନ୍ଧାରକୋଣ ଯେଉଁମାନଙ୍କର ସ୍ୱର୍ଗ, ସେମାନେ ସଂଗଠିତ ହୋଇ ବିଶ୍ୱର ଯେକୌଣସି ସଭ୍ୟ, ସାକ୍ଷର, ଅତ୍ୟାଧୁନିକ ନାରୀମାନଙ୍କଠାରୁ ନିଶ୍ଚିତ ଭାବରେ ଯେ ଊର୍ଦ୍ଧ୍ୱରେ ଅଛନ୍ତି ଏହା ସେମାନଙ୍କର କାର୍ଯ୍ୟଧାରା ମଧ୍ୟରେ ପ୍ରମାଣ କରିଦେଇଛନ୍ତି । ଡଃ. ଲକ୍ଷ୍ମୀ ସ୍ୱାମୀନାଥନ୍ ଏହି ବିଭାଗର ଦାୟିତ୍ୱରେ ଥିଲେ ଓ ପରେ ତାଙ୍କୁ ଝାନ୍ସି ରାଣୀ ରେଜିମେଣ୍ଟର କମାଣ୍ଡାଣ୍ଟ ଭାବରେ ନିଯୁକ୍ତି ଦିଆଯାଇଥିଲା ।

ନେତାଜୀ ଭାରତୀୟ ସ୍ୱାଧୀନତା ଲିଗ୍ ଓ ଆଜାଦ୍ ହିନ୍ଦ୍ ଫୌଜର ପୁନର୍ଗଠନ ପରର ପରିସ୍ଥିତିରେ ସନ୍ତୋଷ ପ୍ରକାଶ କରିଥିଲେ । ସେ ଅନୁଭବ କଲେ ଯେ ଏହି ଅନୁଷ୍ଠାନ ବର୍ତ୍ତମାନ ଦୃଢ଼ ତଥା ଶକ୍ତିସମ୍ପନ୍ନ ହୋଇଗଲାଣି ଏବଂ ଯେକୌଣସି ପ୍ରତିକୂଳ ପରିସ୍ଥିତିର ମୁକାବିଲା ପାଇଁ ସଂପୂର୍ଣ୍ଣ ସମର୍ଥ । ପୂର୍ବ-ଏସିଆର ଭାରତୀୟମାନଙ୍କର ଦେଶପ୍ରୀତି ଓ ସହଯୋଗ ତାଙ୍କ ଭିତରେ ଦୃଢ଼ ପ୍ରତ୍ୟୟ ସୃଷ୍ଟି କରିଥିଲା । ନୂତନ ପଦକ୍ଷେପ ଗ୍ରହଣ କରିବା ପାଇଁ ସେ ଏଥିରୁ ପ୍ରେରଣା ପାଇଥିଲେ ।

ଅନୁକୂଳ ପରିସ୍ଥିତିର ପ୍ରତିଶ୍ରୁତି ବହନକରି ସେ ତାଙ୍କର ବହୁ ଅଭିଳଷିତ କାମଚଳା ସରକାର ସ୍ଥାପନ କରିବାପାଇଁ ଐତିହାସିକ ନିଷ୍ପତ୍ତି ନେଲେ । ସେ ଅନୁଭବ କଲେ ଯେ ମୁକ୍ତି-ସଂଗ୍ରାମକୁ ତ୍ୱରାନ୍ୱିତ କରିବା ପାଇଁ ଏହାହିଁ ଏକମାତ୍ର ବିଧିବଦ୍ଧ ବ୍ୟବସ୍ଥା । ସମସ୍ତ ଯେତେବେଳେ ଶୁଭମସ୍ତୁ, ପରିସ୍ଥିତି ପ୍ରୀତିପୂର୍ଣ୍ଣ, ସହଯୋଗ-ସୌହାର୍ଦ୍ଦ୍ୟମୂଳକ, ଯେତେବେଳେ ଜୀବନର ସବୁଠାରୁ ବଳି ମୂଲ୍ୟବାନ୍ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବା ବିଜ୍ଞୋଚିତ କାର୍ଯ୍ୟ ।

ସେହି ପବିତ୍ରତମ ଦିନଟି ହେଉଛି ୧୯୪୩ ମସିହା ଅକ୍ଟୋବର ମାସ ୨୧ ତାରିଖ । ଭାରତୀୟ ସ୍ୱାଧୀନତା ଇତିହାସର ସର୍ବୋତ୍ତମ ବହୁ ଆକାଂକ୍ଷିତ ମୁହୂର୍ତ୍ତର ଜନ୍ମଲଗ୍ନ ସେ ବହନ କରିଥିଲା । ଏ ଦିନଟି ବିଶ୍ୱ-ଇତିହାସର ମଧ୍ୟ ଚମକପୂର୍ଣ୍ଣ ଅବିସ୍ମରଣୀୟ ଦିବସ । ମାନବପ୍ରତି ମାନବର ଅନାଚାର, ଅତ୍ୟାଚାର, ଅବିଚାରର ଅବସାନ ନିମିତ୍ତ ରାଜନୈତିକ ପ୍ରତିବାଦର ପୂର୍ଣ୍ଣକୁମ୍ଭ ସେଦିନ ସୁଭାଷ ବୋଷ ସ୍ଥାପନ କରିଥିଲେ । କେବଳ ଭାରତୀୟ କାହିଁକି, ବିଶ୍ୱର ଅଗଣିତ ନିହତ ବ୍ୟକ୍ତିଙ୍କ ମନରେ ଆଶ୍ୱାସନା ସଂସ୍ଫୁରିତ ହୋଇଥିଲା ।

ଅସ୍ଥାୟୀ କାମଚଳା ସରକାର ଭାରତ ବାହାରେ ସ୍ୱାଧୀନ ଭାରତ ପାଇଁ ପ୍ରତିଷ୍ଠା କରାଗଲା ।

ଏହାପରେ ଘଟଣାପ୍ରବାହର ଗତି ହେଲା କ୍ଷିପ୍ରତର । ସ୍ୱାଧୀନତା ସଂଗ୍ରାମ ଏକ ନୂତନ ମୋଡ଼ ନେଲା । ପ୍ରଥମଥର ପାଇଁ ବିଧିବଦ୍ଧ ଭାବରେ ରାଜନୈତିକ ଅବସ୍ଥାକୁ ରାଜନୈତିକ ଉପଲବ୍ଧିମାଧ୍ୟମରେ ସମାଧାନ କରିବା ପାଇଁ ବ୍ୟବସ୍ଥା ହେଲା ।

ଭାରତ ପାଇଁ ସିଙ୍ଗାପୁର ଥିଲା ଏକ ପବିତ୍ର ପୀଠ । ସ୍ୱାଧୀନ ଭାରତର ଏନ୍ତୁଡ଼ିଶାଳା ହେଉଛି ସିଙ୍ଗାପୁରର କ୍ୟାଥେ ଚଲଚ୍ଚିତ୍ର ଭବନ । ସେହିଠାରେ ଭାରତୀୟ ସ୍ୱାଧୀନତା ଲିଗ୍‌ର ବିଭିନ୍ନ ଅଞ୍ଚଳର ପ୍ରତିନିଧି ଓ ସମବେତ ବିପୁଳ ଜନସମାବେଶ ମଧ୍ୟରେ ନେତାଜୀ 'ଭାରତର କାମଚଲା ଅସ୍ଥାୟୀ ସରକାର' ପ୍ରତିଷ୍ଠାର ଐତିହାସିକ ଘୋଷଣା କଲେ । ଏକ ଉନ୍ମାଦନାମୟ ଗମ୍ଭୀର ପରିବେଶ ହଠାତ୍ ଉଜ୍ଜ୍ୱଳ ହର୍ଷଧ୍ୱନି ଓ କରତାଳିରେ ଉଦ୍‌ବେଳିତ ହୋଇଉଠିଲା । ଏ ସରକାରର ନାଁ ହେଲା 'ଆଜାଦ ହିନ୍ଦ୍ ସରକାର' । ଏହି ସରକାରକୁ ବିଧିବଦ୍ଧ ଭାବରେ ଜାପାନ, ଜର୍ମାନୀ, ଇଟାଲୀ, କ୍ରୋଟିଆ, ବର୍ମା, ଥାଇଲଣ୍ଡ, ଜାତୀୟବାଦୀ ଚୀନ, ମାଞ୍ଚୁରିଆ ତଥା ଫିଲିପାଇନ୍ ପ୍ରଭୃତି ସରକାର କୂଟନୈତିକ ସ୍ୱୀକୃତି ପ୍ରଦାନ କଲେ । ଆଜାଦ ହିନ୍ଦ୍ ସରକାର ହେଲା ବିଶ୍ୱର ଏକ ସ୍ୱୀକୃତ ସରକାର ଓ ଇଂରେଜମାନଙ୍କର ହୃତ୍‌କମ୍ପର କାରଣ ହେଲା । ସେମାନେ ଭାବି ନଥିଲେ ଯେ ସୁଭାଷ ବୋଷ ପରି ଜଣେ ସାଧାରଣ ବିପ୍ଳବୀ ନେତା ଏତେ ଅଳ୍ପ ସମୟ ମଧ୍ୟରେ ଏପରି ଏକ ବିସ୍ମୟକର କୂଟନୈତିକ କମ୍ପନ ସୃଷ୍ଟି କରିଦେଇପାରିବେ ।

ଭାରତରେ ଥିବା କଂଗ୍ରେସ ନେତାମାନେ ନେତାଜୀଙ୍କର ଏହି ଚରମ ପଦକ୍ଷେପରେ ଯେପରି ବିସ୍ମିତ ହୋଇଥିଲେ; ସେପରି ଚମତ୍କୃତ ହୋଇଥିଲେ ମଧ୍ୟ । ଗାନ୍ଧିଜୀଙ୍କର ସୁଭାଷଙ୍କ ନିଷ୍ଠା ଓ ତ୍ୟାଗପୂତ କର୍ମ ଉପରେ ଗଭୀର ଆସ୍ଥା ଥିଲା । ଭାରତ ତାର ଚିରଈପ୍‌ସିତ ସ୍ୱାଧୀନତାଲାଭ ପାଇଁ ସେ ଯେଉଁ ଅହିଂସ ମୁକ୍ତି-ଆନ୍ଦୋଳନ ଆରମ୍ଭ କରିଛନ୍ତି, ସୁଭାଷଙ୍କର ସଶସ୍ତ୍ର ବିପ୍ଳବ ତାର ପରିପନ୍ଥୀ ନୁହେଁ, ଏହା ସେ ଅନ୍ତରରେ ସହିତ ଅନୁଭବ କରିଥିଲେ । ସାଂପ୍ରତିକ ଘଟଣାପ୍ରବାହ ଭାରତର ଆସନ୍ନ ମୁକ୍ତିର ଏକ ଶୁଭ ସୂଚନା ବୋଲି ସମସ୍ତଙ୍କର ହୃଦ୍‌ବୋଧ ହୋଇଥିଲା ।

ନେତାଜୀ କାମଚଲା ସରକାର ଗଠନର ଅବ୍ୟବହିତ ପୂର୍ବରୁ ଯେଉଁ ଘୋଷଣା ବିଶ୍ୱ-ଦରବାରରେ ପ୍ରକାଶ କରିଥିଲେ ତାର କିଛି ଅଂଶ ଏଠାରେ ଦିଆଗଲା :

"ବନ୍ଧୁଗଣ !

୧୭୫୭ ମସିହାରେ ଯେତେବେଳେ ପ୍ରଥମ ଥର ପାଇଁ ଭାରତୀୟମାନେ ବଙ୍ଗଳାରେ ଇଂରେଜମାନଙ୍କ ସହିତ ଲଢ଼ି ପରାସ୍ତ ହୋଇଗଲେ, ତା' ପରଠାରୁ ଦୀର୍ଘ ଏକଶହ ବର୍ଷ ପର୍ଯ୍ୟନ୍ତ ସେମାନଙ୍କର ସଂଗ୍ରାମ ଥିଲା ଅତ୍ୟନ୍ତ ତୀବ୍ର ଓ ଅପ୍ରତିହତ । ସେତେବେଳେ ଭାରତୀୟ-ମାନଙ୍କର ବୀରତ୍ୱ ଓ ତ୍ୟାଗର ଦୃଷ୍ଟାନ୍ତ ଥିଲା ଅନନ୍ୟସାଧାରଣ ଓ ଅକଳ୍ପନୀୟ ।

"ବଙ୍ଗଳାର ସିରାଜ ଉଦ୍ଦୌଲ ଓ ମୋହନ ଲାଲ, ଦକ୍ଷିଣ-ଭାରତର ହାଇଦର ଅଲ୍ଲୀ, ଟିପୁ ସୁଲତାନ, ବେଲୁତାମ୍ପି, ମହାରାଷ୍ଟ୍ରର ଆପ୍ପା ସାହେବ ଭୋନ୍‌ସଲା, ପେଶଓ୍ୱା ବାଜି ରାଓ, ପଞ୍ଜାବର ଓଧର ବେଗମ, ସର୍ଦ୍ଦାର ଶ୍ୟାମ ସିଂହ ଅତରୀଓ୍ୱାଲ, ଝାନ୍‌ସିର ରାଣୀ ଲକ୍ଷ୍ମୀବାଇ, ତାନ୍ତିଆ ଟୋପି, ମହାରାଜ କୁନଓ୍ୱାର ସିଂହ ଏବଂ ନାନାସାହେବ ପ୍ରଭୃତି ବୀରବୃନ୍ଦଙ୍କର ନାଁ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି । ୧୮୫୭ ମସିହାରେ ବାହାଦୁର ଶାହଙ୍କ ନେତୃତ୍ୱରେ ଭାରତୀୟମାନେ ସ୍ୱାଧୀନ ନାଗରିକ ଭାବରେ ଶେଷଥର ପାଇଁ ଇଂରେଜମାନଙ୍କ ସହିତ ଲଢ଼ିଥିଲେ । ତା'ପରେ ସେମାନେ ଦୀର୍ଘ କେତେ ବର୍ଷ ପାଇଁ ନୀରବରେ ଇଂରେଜମାନଙ୍କର ନିଷ୍ଠୁର ନିର୍ଯାତନା ଭୋଗକରି ରହିବାକୁ ହେଲା ।

"୧୮୮୫ ମସିହାରେ ଭାରତର ଜାତୀୟ କଂଗ୍ରେସ ଜନ୍ମଲାଭକଲା । ଜାତୀୟ ଜୀବନରେ ଆରମ୍ଭ ହେଲା ନୂତନ ଉନ୍ମାଦନାର ଉତ୍ତାଳ ତରଙ୍ଗ । ଯେଉଁ ଭାରତୀୟମାନେ ପରାଧୀନତାକୁ ଭାଗ୍ୟର ବିଡ଼ମ୍ବନା ଭାବି ନୀରବରେ ତାହା ସହ୍ୟ କରିଯାଉଥିଲେ, ସେମାନେ ସ୍ୱାଧୀନତାର ନୂତନ ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ପୁଣି ଜାଗ୍ରତ ହୋଇଉଠିଲେ । ୧୮୮୫ଠାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ପର୍ଯ୍ୟନ୍ତ ଭାରତୀୟମାନେ ସେମାନଙ୍କର ସ୍ୱାଧୀନତାକୁ ଫେରାଇଆଣିବା ପାଇଁ ବହୁ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରିଥିଲେ । ଆନ୍ଦୋଳନ, ପ୍ରଚାର, ବିଦେଶୀ-ବର୍ଜନ, ଆତଙ୍କ ସୃଷ୍ଟି ପ୍ରଭୃତି ନାନା ପଦକ୍ଷେପ ଏହାର ଅନ୍ତର୍ଗତ । ଶେଷରେ ମଧ୍ୟ ସଶସ୍ତ୍ର ବିଦ୍ରୋହର ଆଶ୍ରୟ ନେବାକୁ ସେମାନେ ପଛେଇ ନଥିଲେ; କିନ୍ତୁ ଏସବୁ ଚେଷ୍ଟା ବିଫଳତାରେ ପରିଣତ ହୋଇଥିଲା ।

"ଭାରତୀୟମାନଙ୍କ ମଧ୍ୟରେ ଠିକ୍ ଯେଉଁ ମୁହୂର୍ତ୍ତରେ ନୈରାଶ୍ୟବୋଧ ଚରମକୁ ଯାଇଥିଲା, ସେପରି ଏକ ସଙ୍କଟମୟ ସମୟରେ ଭାରତର ରାଜନୈତିକ ଆକାଶରେ ଉଦିତ ହୋଇଥିଲା ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ତା' ହେଉଛି ୧୯୨୦ ମସିହାରେ କଂଗ୍ରେସରେ ମହାତ୍ମା ଗାନ୍ଧୀଙ୍କର ଆବିର୍ଭାବ । ସେ ଅସହଯୋଗ ଓ ଆଇନ-ଅମାନ୍ୟରୂପକ ଦୁଇଟି ଅତି ଶକ୍ତିଶାଳୀ ଅସ୍ତ୍ର ଭାରତୀୟମାନଙ୍କ ହାତରେ ଉପହାର ଦେଇଥିଲେ । ସ୍ୱାଧୀନତାଲାଭ ପାଇଁ ସଂଗ୍ରାମ କରିବାକୁ ଏହା ଅଭିପ୍ରେତ ଥିଲା । ସେହିଦିନଠାରୁ ପ୍ରାୟ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଭାରତୀୟମାନେ ଏକାନ୍ତ ଭାବରେ ଦେଶପ୍ରେମମୂଳକ କାର୍ଯ୍ୟରେ ଲିପ୍ତରହିଲେ । ପ୍ରତ୍ୟେକ ଭାରତୀୟଙ୍କର ହୃଦୟରେ ମୁକ୍ତିର ମହାନ୍ ମନ୍ତ୍ର ଝଂକୃତହେଲା । ମୁକ୍ତିବାର୍ତ୍ତା ପ୍ରତି ଘରେ ଘରେ ଯାଇ ପହଞ୍ଚିଲା । ସ୍ୱାଧୀନତା ଲଭପାଇଁ ବ୍ୟକ୍ତିଗତ ଭାବରେ ଲୋକମାନେ କିପରି ଅକଥନୀୟ ଦୁଃଖଯନ୍ତ୍ରଣା ବରଣକଲେ, ତାହାହିଁ ହେଲା ଅନ୍ୟମାନଙ୍କ ପାଇଁ ଆଦର୍ଶ ଓ ପ୍ରେରଣାର ଉତ୍ସ । ଏଥିରେ ଉଦ୍‌ବୁଦ୍ଧ ହୋଇ ଅସୁମାର ବ୍ୟକ୍ତି ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ କରିବାକୁ ଆଗେଇ ଆସିଲେ । ଚରମ ତ୍ୟାଗ ସ୍ୱୀକାର କରିବା ପାଇଁ ବହୁବ୍ୟକ୍ତି ପ୍ରସ୍ତୁତ ହୋଇଗଲେ । ସାରା ଭାରତରେ ପ୍ରତ୍ୟେକ ଲୋକ ଗୋଟିଏ ରାଜନୈତିକ ଅନୁଷ୍ଠାନର ସଭ୍ୟ ଭାବରେ ନିଜକୁ

ସାମିଲ କରିଥିଲେ । ଏହାଫଳରେ ସେମାନଙ୍କ ମଧ୍ୟରେ ରାଜନୈତିକ ଚେତନା ପୁଣି ଥରେ ଜାଗ୍ରତ ହୋଇଥିଲା । ରାଜନୈତିକ ସତ୍ତା ଯେ ମଉଳିଯାଇଥିଲା, ତାର ପୁନର୍ଜାଗରଣ ଆରମ୍ଭ ହେଲା । ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଲକ୍ଷ୍ୟର ପରିପୂରଣ ପାଇଁ ସେମାନେ ଏକସ୍ୱରରେ ନିଜର ଦାବୀ ଉପସ୍ଥାପନ କରିବା ଓ ଏକମନରେ ସେଥିପାଇଁ ସଂଘର୍ଷ କରିବାକୁ ସୁଯୋଗ ଲାଭ କଲେ । ୧୯୩୭ଠାରୁ ୧୯୩୯ ମସିହା ପର୍ଯ୍ୟନ୍ତ କଂଗ୍ରେସ ମନ୍ତ୍ରୀମାନେ ଆଠଟି ପ୍ରଦେଶରେ ଶାସନଭାର ଗ୍ରହଣ କରି ସେମାନଙ୍କର ଦକ୍ଷତାର ପ୍ରମାଣ ଦେଇଛନ୍ତି । ନିଜର ସମସ୍ୟାସବୁକୁ ନିଜେ ସମାଧାନ କରିବାଦିଗରେ ସେମାନେ କେତେ ତତ୍ପର ଓ ସମର୍ଥ ତା'ର ପ୍ରମାଣ ମଧ୍ୟ ମିଳିସାରିଛି ।

"ଭାରତକୁ ଶାସନ କରିବାର ନୈତିକ ଅଧିକାର ଇଂରେଜମାନଙ୍କର ନାହିଁ । ଭାରତୀୟମାନେ ସେମାନଙ୍କର ନିଜ ସମସ୍ୟା ନିଜେ ସମାଧାନ କରିବାଦିଗରେ ସମର୍ଥ ।

"ପ୍ରଥମଥର ପାଇଁ ଇତିହାସରେ ଏକ ଅଭିନବ ଘଟଣା ଘଟିଲା । ପ୍ରବାସୀ ଭାରତୀୟମାନେ ଭାରତର ମୁକ୍ତି ପାଇଁ ରାଜନୈତିକ ଦୃଷ୍ଟିକୋଣରୁ ସଂଘବଦ୍ଧ ତଥା ଜାଗ୍ରତ ହେଲେ । ସେମାନେ ବହୁଦୂରରେ ଥିଲେ ମଧ୍ୟ କେବଳ ଯେ ଦେଶବାସୀଙ୍କ ସହିତ ଚିନ୍ତା ତଥା ଭାବ-ବୋଧରେ ଆତ୍ମୀୟ ଏକତା ପ୍ରକାଶ କରିଛନ୍ତି ତା' ନୁହେଁ; ମୁକ୍ତିପଥରେ ଆଗେଇଯିବା ପାଇଁ ସେମାନେ ମଧ୍ୟ ତାଙ୍କ ସହିତ ପାଦମେଲାଇଛନ୍ତି । ବିଶେଷତଃ ପୂର୍ବ-ଏସିଆରେ ଦୃଢ଼ନିଷ୍ଠ ଭାରତୀୟ ବିଧିବଦ୍ଧ ଭାବରେ ସଂଗଠିତ ହୋଇ ଛିଡ଼ାହୋଇଛନ୍ତି ଓ ତାଙ୍କ ସମ୍ମୁଖରେ ଭାରତୀୟ ମୁକ୍ତି ସୈନିକମାନେ ଦଣ୍ଡାୟମାନ ହୋଇ "ଦିଲ୍ଲୀ ଚଲୋ" ଧ୍ୱନିରେ ଗଗନ-ପବନ ପ୍ରକମ୍ପିତ କରୁଛନ୍ତି । ଏହା ନିଶ୍ଚୟ ଏକ ଅଭୂତପୂର୍ବ ଘଟଣା ।

"ଇଂରେଜମାନେ ଭାରତୀୟମାନଙ୍କର ସର୍ବସ୍ୱ ଲୁଣ୍ଠନ କରି, ସେମାନଙ୍କୁ ନୈରାଶ୍ୟ ଭିତରକୁ ଠେଲିଦେଇ ଯେଉଁ ଦମନମୂଳକ ଶାସନ ଚଳାଇଛନ୍ତି, ତା ଫଳରେ ସେମାନଙ୍କୁ ଭାରତୀୟମାନଙ୍କର ଶୁଭେଚ୍ଛା ହରାଇବାକୁ ପଡ଼ିଛି । ସେମାନେ ବର୍ତ୍ତମାନ ଭାରତରେ ଶୋଚନୀୟ ସ୍ଥିତି ଭିତରେ ଅଛନ୍ତି । ପ୍ରତିବାଦର ସାମାନ୍ୟତମ ଝଲକରେ ସେମାନଙ୍କର ସେହି ଅପ୍ରୀତିକର ଅବାଞ୍ଛ ଶାସନର କୃଷ୍ଣ ପଦାଙ୍କ କୁଆଡ଼େ ଅଚିରେ ଲିଭିଯିବ । ଭାରତର ମୁକ୍ତ ସୈନିକମାନଙ୍କର ସର୍ବପ୍ରଥମ ତଥା ସର୍ବୋତ୍ତମ କାମ ହେଉଛି ସେହି ଆଲୋକ-ବର୍ତ୍ତିକାରେ ଅଗ୍ନିସଂଯୋଗ କରି ଏହାକୁ ଉଦ୍ଦୀପିତ କରିବା । ସେମାନଙ୍କ ପଛରେ ଅଛି ଭାରତର ପ୍ରତ୍ୟେକ ଲୋକଙ୍କର ଅକୁଣ୍ଠ ସମର୍ଥନ । ଇଂରେଜମାନଙ୍କର ଭାରତୀୟ ସୈନିକ-ମାନଙ୍କ ମଧ୍ୟରୁ ଅଧିକାଂଶ ଯେଉଁମାନେ କି ଆଜାଦ ହିନ୍ଦ୍ ଫୌଜରେ ସାମିଲ୍ ହୋଇଛନ୍ତି, ଅପରାହତ ଦୁର୍ଜୟ ମିତ୍ରଶକ୍ତିର. ସମର୍ଥନ ଓ ସହଯୋଗ ସେମାନଙ୍କ ପଛରେ ଅଛି । ଭାରତର ମୁକ୍ତି-ସୈନିକମାନେ ମୁକ୍ତି-ସଂଗ୍ରାମର ଐତିହାସିକ ଦାୟିତ୍ୱ ତୁଲାଇବାପାଇଁ ଦୃଢ଼ ଆତ୍ମବିଶ୍ୱାସର ଯେ ଅଧିକାରୀ ହୋଇଛନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

"ସ୍ୱାଧୀନତାର ସୂପ୍ରଭାତ ଆସନ୍ନ ପ୍ରାୟ । ସାଂପ୍ରତିକ ପରିସ୍ଥିତିରେ ଏକ କାମଚଲା ସରକାର ଗଠନ କରିବାର ଦାୟିତ୍ୱ ଭାରତର ଲୋକମାନଙ୍କ ଉପରେ ନିର୍ଭର କରେ । ତା'ହେଲେ ସେମାନେ ସେହି ସରକାର ତତ୍ତ୍ୱାବଧାନରେ ଶେଷ ମୁକ୍ତି-ସଂଗ୍ରାମ ଚଳାଇବାର ସୁଯୋଗ ପାଇପାରିବେ । ଭାରତ ଭିତରେ ଏକ କାମଚଲା ଅସ୍ଥାୟୀ ସରକାରଗଠନର ସମ୍ଭାବ୍ୟ ସୁଯୋଗ ନାହିଁ କହିଲେ ଚଳେ । କାରଣ ବର୍ତ୍ତମାନ ଭାରତର ପ୍ରାୟ ଅଧିକାଂଶ ଗଣ୍ୟମାନ୍ୟ ନେତା ଇଂରେଜ ସରକାରର କାରାଗାରରେ ବନ୍ଦୀ ଭାବରେ ଚରମ ନିର୍ଯାତନା ଭୋଗକରୁଛନ୍ତି । ଭାରତ ଭିତରେ ଏକ ସଶସ୍ତ୍ର ବିପ୍ଳବ ଆରମ୍ଭ କରିବାର ସୁଯୋଗ ମଧ୍ୟ ନାହିଁ । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ଭାରତୀୟ ସ୍ୱାଧୀନତା ଲିଗ୍‌ର କାମ ହେଉଛି, ଭାରତୀୟ ସ୍ୱଦେଶପ୍ରେମୀମାନଙ୍କର ସମର୍ଥନକ୍ରମେ ଏହି ପୂର୍ବ-ଏସିଆରେ ସ୍ୱାଧୀନ ଭାରତ ପାଇଁ ଏକ କାମଚଲା ସରକାର ଗଠନ କରିବା । ଏହି ସରକାରର ପ୍ରଥମ କାମ ହେବ ସ୍ୱାଧୀନତାଲାଭର ଅନ୍ତିମ ସଂଗ୍ରାମ ଆରମ୍ଭ କରିବା । ଆଜାଦ ହିନ୍ଦ୍ ଫୌଜ ବା ଭାରତୀୟ ଜାତୀୟ ସୈନିକ ଏହି ଦାୟିତ୍ୱ ସରକାରଙ୍କ ତରଫରୁ ତୁଲାଇବେ ।

"ପୂର୍ବ ଏସିଆରେ ଭାରତୀୟ ସ୍ୱାଧୀନତା ଲିଗ୍ ଦ୍ୱାରା ସ୍ୱାଧୀନ ଭାରତର ଅସ୍ଥାୟୀ ସରକାର ପ୍ରତିଷ୍ଠିତ ହେବା ଫଳରେ ଆମେ ଆମର କର୍ତ୍ତବ୍ୟ ସମ୍ପାଦନ କରିବାର ସୁଯୋଗ ପାଇ-ପାରିବା । ମାତୃଭୂମିର ମୁକ୍ତି ପାଇଁ ଆମେ ଯେଉଁ ସଂଗ୍ରାମ ଅବ୍ୟାହତ ରଖିଛେ, ତା'ର ସଫଳତା ନିମନ୍ତେ ଭଗବାନ ଆମକୁ ଆଶୀର୍ବାଦ ଦିଅନ୍ତୁ, ଏହାହିଁ ଆମର ଏକାନ୍ତ କାମନା । ଭାରତର ସ୍ୱାଧୀନତା ଓ ତାର ପ୍ରଗତି ପାଇଁ ତଥା ପୃଥିବୀର ପ୍ରଗତିପୂର୍ଣ୍ଣ ରାଷ୍ଟ୍ରମାନଙ୍କ ସହିତ ସମୁଦାୟରେ ସମକକ୍ଷ ହେବାପାଇଁ ଜୀବନ ଉତ୍ସର୍ଗ କରିବାକୁ ଆଜ ଏଠାରେ ଆମେ ଶପଥ ନେବା । ଭାରତମାଟିରୁ ଇଂରେଜମାନଙ୍କୁ ବହିଷ୍କାର କରିବା ପାଇଁ ଏହି ଅସ୍ଥାୟୀ ସରକାର ତାର ସଂଗ୍ରାମ ଚାଲୁରଖିବ। ସ୍ୱାଧୀନତା ଲାଭପରେ ସ୍ୱାଧୀନ ଭାରତରେ ଏକ ସ୍ଥାୟୀ ସରକାର ଗଠନଦିଗରେ ଏହା ମଧ୍ୟ ସହାୟକ ହେବ । ଭାରତର ଲୋକମାନଙ୍କର ଆସ୍ଥା-ଭାଜନ ତଥା ପୂର୍ଣ୍ଣ ସମର୍ଥନରେ ଏକ ସ୍ଥାୟୀ ସରକାର ପ୍ରତିଷ୍ଠିତ ହେବ । ଭାରତମାଟିରୁ ଇଂରେଜ ଶାସନ ମୂଳୋତ୍ପାଟିତ ହୋଇ ସ୍ୱାଧୀନ ଭାରତ ପାଇଁ ଏକ ସ୍ଥାୟୀ ସରକାର ଗଠିତ ହେବା ପର୍ଯ୍ୟନ୍ତ ଏହି ଅସ୍ଥାୟୀ କାମଚଲା ସରକାର ରାଷ୍ଟ୍ର-ପରିଚାଳନାର ପୂର୍ଣ୍ଣ ଦାୟିତ୍ୱ ବହନ କରିବ ।

"ଅସ୍ଥାୟୀ ସରକାର ଭାରତର ପ୍ରତ୍ୟେକ ନାଗରିକଙ୍କ ଉପରେ ତାର ଆଧିପତ୍ୟ ସାବ୍ୟସ୍ତ କରିବାପାଇଁ ହକ୍‌ଦାର ଓ ପ୍ରତ୍ୟେକଙ୍କର ଅନୁରକ୍ତି ମଧ୍ୟ ଦାବୀକରେ । ଏ ସରକାର ପ୍ରତ୍ୟେକ ଭାରତୀୟ ନାଗରିକଙ୍କୁ ଧର୍ମଗତ ସ୍ୱାଧୀନତା, ସମାନ ଅଧିକାର ଓ ସମାନ ସୁଯୋଗ ଦେବାକୁ ବଦ୍ଧପରିକର । ସାରା ଜାତିର ଉନ୍ନତି ତଥା ପ୍ରଗତି ପାଇଁ କାର୍ଯ୍ୟ କରିବାକୁ ଅଙ୍ଗୀକାରବଦ୍ଧ । ବିଦେଶୀ ସରକାର ଚତୁରତାର ସହିତ ଆମ ଭିତରେ ଯେଉଁ ବିଭେଦର

ବୀଜ ବପନ କରିଥିଲ, ତାହାକୁ ଦୂରକରି ସମଭାବନାର ସୂତ୍ରରେ ସମସ୍ତଙ୍କୁ ଆବଦ୍ଧ କରିବା ଏହାର ଲକ୍ଷ୍ୟ ।

"ଈଶ୍ୱରଙ୍କର ପବିତ୍ର ନାମରେ, ଅତୀତର ମହାନ୍ ବଂଶଧର ଯେଉଁମାନେ କି ଭାରତୀୟ ଲୋକମାନଙ୍କୁ ଏକ ଭାରତୀୟ ଜାତିରେ ପରିଣତ କରିଛନ୍ତି, ଅତୀତର ଦେଶପ୍ରେମୀ ବୀରଗଣ ଯେଉଁମାନେ କି ଆମ୍ଭମାନଙ୍କ ସମକ୍ଷରେ ତ୍ୟାଗ ଓ ବୀରତ୍ୱର ପରମ୍ପରା ରଚିଯାଇଛନ୍ତି, ସେମାନଙ୍କ ମହାନ୍ ନାମରେ ଆଜ ଭାରତର ନାଗରିକମାନଙ୍କୁ ଆହ୍ୱାନ ଦିଆଯାଉଛି ଯେ ସେମାନେ ଆମର ଏଇ ପବିତ୍ର ପତାକା ତଳେ ଭାରତର ମୁକ୍ତି ପାଇଁ ସଂଘବଦ୍ଧ ହୁଅନ୍ତୁ । ଅନ୍ତିମ ବିଜୟ ଉପରେ ଆସ୍ଥା ରଖି ଭାରତମାଟିରୁ ବିଦେଶୀମାନଙ୍କୁ ହଟାଇ ଭାରତକୁ ଏକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ପର୍ଯ୍ୟନ୍ତ ମୁକ୍ତିସଂଗ୍ରାମକୁ ଦୃଢ଼ତା ତଥା ଧୈର୍ଯ୍ୟର ସହିତ ଆଗେଇନେବା ଉଚିତ ।"

ଏହି ଘୋଷଣାଟି ସ୍ୱାଧୀନ ଭାରତର ଅସ୍ଥାୟୀ ସରକାରଙ୍କ ତରଫରୁ ନିମ୍ନଲିଖିତ ବ୍ୟକ୍ତିଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଥିଲ ।

ସୁଭାଷଚନ୍ଦ୍ର ବୋଷ—ରାଷ୍ଟ୍ରାଧିନାୟକ, ପ୍ରଧାନମନ୍ତ୍ରୀ ଏବଂ ପ୍ରତିରକ୍ଷା ତଥା ପରରାଷ୍ଟ୍ର ସଚିବ ।

କର୍ଣ୍ଣେଲ ଶ୍ରୀମତୀ ଲକ୍ଷ୍ମୀ ସ୍ୱାମୀନାଥନ୍—ଝାନ୍ସିରାଣୀ ବାହିନୀର ଅଧିନାୟିକା (ମହିଳାସଂଗଠନ)

ଏସ. ଏ. ଆୟାର—ପ୍ରଚାର ବିଭାଗ ।

ଲେଫଟନାଣ୍ଟ କର୍ଣ୍ଣେଲ ଏ. ସି. ଚାଟାର୍ଜି—ଅର୍ଥ ବିଭାଗ ।

ଲେ. କର୍ଣ୍ଣେଲ ଅଜିଜ୍ ମହମ୍ମଦ, ଲେ. କର୍ଣ୍ଣେଲ ଏନ୍. ଏସ. ଭଗତ, ଲେ. କର୍ଣ୍ଣେଲ ଜେ. କେ. ଭୋନ୍ସଲେ, ଲେ. କ. ଗୁଲଜାର ସିଂ, ଲେ. କ. ଏମ୍. ଜେଡ଼. କିଆନି, ଲେ. କ. ଏ. ଡ଼. ଲୋକନାଥନ୍, ଲେ. କ. ଏ. ହସାନ୍ କ୍ୱାଦର, ଲେ. କ. ସାହାନଓ୍ୱାଜ୍ ପ୍ରଭୃତି । ଏମାନଙ୍କ ବ୍ୟତୀତ ଏ. ଏମ୍. ସହାୟ ଥିଲେ ସମ୍ପାଦକ । ଏହି ପଦବୀଟି ମନ୍ତ୍ରୀପ୍ରାୟ ପଦବୀ ଥିଲ । ଶ୍ରୀଯୁକ୍ତ ରାସବିହାରୀ ବୋଷଙ୍କୁ ମୁଖ୍ୟ ପରାମର୍ଶଦାତା ହିସାବରେ ଗ୍ରହଣ କରାଯାଇଥିଲ । କରିମ୍ ଗ୍ୟାନି, ଦେବନାଥ ଦାସ, ଡ. ଏମ୍ ଖାଁ, ଏ. ୟାଲ୍ଲାପା, ଏ. ଜେ. ଥିଭି ଓ ସର୍ଦ୍ଦାର ଈଶାର ସିଂ ପରାମର୍ଶଦାତା ହିସାବରେ କାମ କରୁଥିଲେ । ଏ. ଏନ୍. ସରକାର ଆଇନ-ପରାମର୍ଶଦାତା, ଏହି ଐତିହାସିକ ଘୋଷଣାରେ ସ୍ୱାକ୍ଷର କରିଥିଲେ ।

ସିଙ୍ଗାପୁର, ତା ୨୧ । ୧୦ । ୧୯୪୩

ଆଜାଦ ହିନ୍ଦ ସରକାର ଗଠିତ ହେବାର ପରଦିନ ତା ୨୨।୧୦।୧୯୪୩ ମସିହାରେ ସେ ସିଙ୍ଗାପୁରରେ ଝାନ୍ସି ରାଣୀ ବାହିନୀର ଏକ ତାଲିମ ଶିବିର ଉଦ୍‌ଘାଟନ କରିଥିଲେ ।

ହଜାର ହଜାର ସଂଖ୍ୟାରେ ମହିଳାମାନେ ଆସି ଏହି ଶିବିରରେ ଯୋଗଦେଇଥିଲେ । ସ୍ୱାଧୀନତା ସଂଗ୍ରାମରେ ଏମାନେ ଝାସଦେବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ସେମାନଙ୍କୁ କୌଣସି ବାଧା-ବନ୍ଧନ ଅଟକାଇ ପାରିନଥିଲା । କେବଳ ଯେ ସୈନିକପରି ଯୁଦ୍ଧ କରିବାକୁ ସମସ୍ତେ ଯିବେ ତା ନୁହେଁ; ନିଜର ବୟସ, ସାମର୍ଥ୍ୟ, ଯୋଗ୍ୟତା, ପାରିପାର୍ଶ୍ୱିକ, ରୁଚି ପ୍ରଭୃତି ନେଇ ଯେ ଯେଉଁଥିପାଇଁ ଉପଯୁକ୍ତ, ସେ ସେହି କାର୍ଯ୍ୟ କରିବ ବୋଲି ନିଜକୁ ଦଳଭୁକ୍ତ କରିଥିଲେ । ସାମରିକ ପରିପ୍ରେକ୍ଷୀରେ ସମସ୍ତଙ୍କୁ ତାଲିମ ଦିଆଯାଉଥିଲା । ଯେଉଁମାନେ ସୈନ୍ୟଶ୍ରେଣୀଭୁକ୍ତ ହେଲେ ସେମାନଙ୍କୁ ବିଧିବଦ୍ଧ ସାମରିକ ତାଲିମ ଦିଆଗଲା ।

ତାଲିମ ଶିବିରରେ ଭାଷଣ ପ୍ରସଙ୍ଗରେ ସୁଭାଷ ବୋଷ ଏହି ସାମରିକ ମହିଳା ସଂଗଠନକୁ ଲକ୍ଷ୍ୟକରି କହିଥିଲେ : "ଭଉଣୀମାନେ ! ପୂର୍ବ-ଏସିଆରେ ଆମର ଅଗ୍ରଗତିର ଚିହ୍ନ ହେଉଛି ଏଠାରେ ଆମର ମହିଳାବାହିନୀର ଏକ ତାଲିମ ଶିବିର ଖୋଲିବା । ଆମେ ଆମ ଜାତିକୁ ଉନ୍ନତ କରିବାଦିଗରେ ନିଜକୁ ନିଯୁକ୍ତ କରିଛେ । ଆମର ନାରୀମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ସୃଷ୍ଟି କରିବା ବର୍ତ୍ତମାନ ଆମର କାମ ।

"ଆମର ଅତୀତ ଥିଲା ବିରାଟ ଓ ମହାନ୍ । ଏହାର ନିଦର୍ଶନସ୍ୱରୂପ ଝାନ୍‌ସି ରାଣୀ ଲକ୍ଷ୍ମୀବାଈଙ୍କ ପରି ବୀରାଙ୍ଗନା ଏହି ମାଟିରେ ଜନ୍ମଗ୍ରହଣ କରିଥିଲେ । ଅତୀତରେ ସେହିପରି ମୈତ୍ରେୟୀ, ମହାରାଷ୍ଟ୍ରର ଅହଲ୍ୟା ବାଈ, ବଙ୍ଗଳାର ରାଣୀ ଭବାନୀ ପ୍ରଭୃତି ମହୀୟସୀ ମହିଳାମାନେ ଆମକୁ ଅମ୍ଳାନ ଆଲୋକ ଦାନ କରିଯାଇଛନ୍ତି । ଭାରତରେ ବ୍ରିଟିଶ ଶାସନ ପ୍ରାକ୍‌କାଳରେ ରେଜିଆ ବେଗମ୍ ଓ ନୁରଜାହାନ୍‌ଙ୍କ ପରି ଯଶସ୍ୱିନୀ ପ୍ରଶାସିକା ଐତିହାସିକ ପ୍ରସିଦ୍ଧି ଲାଭକରିଥିଲେ । ଇତିହାସପୃଷ୍ଠାରେ ଆଜି ବି ସେମାନେ ଅମର ହୋଇ ରହିଛନ୍ତି । ଭାରତମାଟିର ମହତ୍ତ୍ୱ ଉପରେ ମୋର ଦୃଢ଼ ବିଶ୍ୱାସ ରହିଛି । ମୋର ମଧ୍ୟ ଅନୁରୂପ ଆତ୍ମପ୍ରତ୍ୟୟ ଅଛି ଯେ ଭାରତ ତାର ଅତୀତପରି ଆଜି ମଧ୍ୟ ଅନନ୍ୟସାଧାରଣ ନାରୀଙ୍କର ଅନିର୍ବାଣ ଦୀପଶିଖା ପ୍ରଜ୍ୱଳିତ କରିବ ।

"ଝାନ୍‌ସିର ରାଣୀ ମହିମାମୟୀ ଲକ୍ଷ୍ମୀବାଈଙ୍କ ବିଷୟରେ ମୁଁ ତୁମମାନଙ୍କୁ କିଛି କହିବାକୁ ଚାହେଁ । ସେ ଯେତେବେଳେ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ, ସେତେବେଳେ ତାଙ୍କର ବୟସ ଥିଲା ମାତ୍ର କୋଡ଼ିଏ ବର୍ଷ । ଏଇପରି ଏକ କୋମଳା କିଶୋରୀ ବୟସର ଆଦ୍ୟ ଉତ୍ସବରେ ମୁକ୍ତ-ରଣାଙ୍ଗନକୁ ଲମ୍ଫ ପ୍ରଦାନ କରି ଅଶ୍ୱାରୋହୀ ହୋଇ ଅସିଚାଳନ କରିବା କିପରି ବିସ୍ମୟପୂର୍ଣ୍ଣ, ତାହା ସହଜରେ ଅନୁମେୟ । ତାଙ୍କ ଭିତରେ କି ଅକଳ୍ପନୀୟ ସାହସ ଓ ଅଦମ୍ୟ ଶକ୍ତି ଥିଲା, ତାହା ତୁମମାନଙ୍କର ଅବବୋଧନଯୋଗ୍ୟ । ଯେଉଁ ଇଂରେଜ ସେନାପତି ତାଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ ତାଙ୍କ ଭାଷାରେ, 'ରାଣୀ ଲକ୍ଷ୍ମୀ ବାଈ ହେଉଛନ୍ତି ବିଦ୍ରୋହୀମାନଙ୍କ ମଧ୍ୟରେ ସର୍ବୋତ୍ତମ ଓ ଦୁଃସାହସୀ ।' ପ୍ରଥମେ ସେ ଝାନ୍‌ସି ଦୁର୍ଗରୁ ଯୁଦ୍ଧ କରୁଥିଲେ । ଯେତେବେଳେ ତାହା ଅବରୁଦ୍ଧ ହେଲା, ସେ ଚତୁରତାର ସହିତ ତାଙ୍କର କେତେ ଜଣ ବିଶ୍ୱସ୍ତଙ୍କୁ ନେଇ 'କଲ୍ପି' ପଳାଇଗଲେ ଓ

ସେଠାରୁ ପୁଣି ଯୁଦ୍ଧ ଆରମ୍ଭ କଲେ । ଯେତେବେଳେ ସେ ଏହି ଯୁଦ୍ଧରେ ଯୁଦ୍ଧଭୂମିରୁ ପଛଘୁଞ୍ଚା ଦେଲେ, ସେତେବେଳେ ତାନ୍ତିଆ ଟୋପିଙ୍କ ସହିତ ସମ୍ପର୍କ ସ୍ଥାପନ କରି ପୁଣି ଆକ୍ରମଣ ଚଳାଇ ଗ୍ୱାଲିଅର ଦୁର୍ଗକୁ ମୁକ୍ତ କରିଥିଲେ । ଏହି ଦୁର୍ଗକୁ ତାଙ୍କର ରଣମଞ୍ଚରୂପେ ଗ୍ରହଣକରି ସେ ଯୁଦ୍ଧ ପରିଚାଳନା କଲେ ଓ ସର୍ବଶେଷରେ ଯୁଦ୍ଧ କରୁ କରୁ ସେ ବୀରଗତି ଲାଭକଲେ । ଲକ୍ଷ୍ମୀ ବାଈଙ୍କର ମରଶରୀରର ଅବସାନ ହୋଇଥିଲେ ମଧ୍ୟ ସେ ତାଙ୍କର ବୀରତ୍ୱ ଓ ମହାନ୍ ଦେଶପ୍ରେମ-ଭାବ ପାଇଁ ଚିରଅମର ହୋଇ ରହିଛନ୍ତି ।

"ଭାରତଭୂମିରେ ପୁଣି ଥରେ ଝାନ୍ସୀ ରାଣୀଙ୍କର ଆବିର୍ଭାବ ହେବ । ଝାନ୍ସୀରାଣୀ-ବାହିନୀର ପ୍ରତ୍ୟେକଙ୍କ ଭିତରେ ମୁଁ ଲକ୍ଷ୍ମୀ ବାଈଙ୍କୁ ଦେଖିବାକୁ ପାଉଛି । ଈଶ୍ୱରଙ୍କର ମହାନ୍ ଆଶୀର୍ବାଦ ନେଇ ଆମେ ଆମର ବିଜୟପଥରେ ଆଗେଇଯିବା । ଆମର ନିଶ୍ଚିତ ବିଜୟ ହେବ ।"

ଏହି ଅଭିଭାଷଣ ପ୍ରତ୍ୟେକଙ୍କ ଭିତରେ ଶିହରଣ ସୃଷ୍ଟି କରିଥିଲା । ଉଲ୍ଲାସ ଉଚ୍ଛଳ କରତାଳିଧ୍ୱନି ତଥା 'ଆଜାଦ୍ ହିନ୍ଦ୍ ଜିନ୍ଦାବାଦ୍' ଧ୍ୱନିରେ ପରିବେଶ ପ୍ରକମ୍ପିତ ହୋଇଥିଲା । ନାରୀମାନେ ସାକ୍ଷାତ୍ ରାଣୀ ଲକ୍ଷ୍ମୀ ବାଈଙ୍କ ଅସ୍ତିତ୍ୱକୁ ନିଜ ଭିତରେ ଅନୁଭବ କରିଥିଲେ ।

ସେଦିନ ଥିଲା ୧୯୪୩ ମସିହା ଅକ୍ଟୋବର ୨୪ ତାରିଖ, ରାତି ବାରଟା ।

ସିଙ୍ଗାପୁରଠାରେ ସ୍ୱାଧୀନ ଭାରତର ଅସ୍ଥାୟୀ ସରକାରର ମନ୍ତ୍ରୀମାନଙ୍କ ବୈଠକ ବସିଥିଲା ନେତାଜୀ ସୁଭାଷ ବୋଷଙ୍କ ବାସଭବନରେ । ବିଶ୍ୱ ପରିସ୍ଥିତି ତଥା ଭାରତର ତତ୍କାଳୀନ ଅବସ୍ଥା ବିଷୟରେ ସେମାନେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥିଲେ ଏବଂ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ବହୁ ପ୍ରତୀକ୍ଷିତ ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଆସି ପହଞ୍ଚିଛି । ବ୍ରିଟେନ ତଥା ତାର ମିତ୍ରଶକ୍ତି ଯୁକ୍ତରାଷ୍ଟ୍ର ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଅସ୍ଥାୟୀ ସରକାରଙ୍କର କର୍ତ୍ତବ୍ୟ ବୋଲି ସେମାନେ ଅନୁଭବ କଲେ ।

ସୁଭାଷ ନିଜର ସହକର୍ମୀ ବନ୍ଧୁମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ, "ଆମ୍ଭମାନଙ୍କୁ ଏହି ମୁହୂର୍ତ୍ତରେ ଭାରତର ମୁକ୍ତିପାଇଁ ଆମର ଅଭିଯାନ ଆରମ୍ଭ କରିବାକୁ ହେବ । ଭାରତ-ମାଟିରେ ଆମର ପ୍ରଥମ ପଦଚିହ୍ନ ଅଙ୍କିତହେବା ମୁହୂର୍ତ୍ତରେ ଆମେ ଆମର ଜାତୀୟ ପତାକା ମୁକ୍ତ ଆକାଶରେ ଉଡ଼ାଇଦେବା ଓ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବା । ଏହି ବର୍ଷ ଶେଷସୁଦ୍ଧା ଆମେ ଯେକୌଣସି ମତେ ଭାରତରେ ପ୍ରବେଶ କରି ଜନ୍ମଭୂମିକୁ ବିଦେଶୀ ଶାସନକବଳରୁ ମୁକ୍ତ କରିବାକୁ ହେବ । ଭାରତର ସ୍ଥଳ ତଥା ନୌଶକ୍ତିକୁ କୌଣସି ମତେ ଆମର ଅକ୍ତିଆରକୁ ଆଣିବାକୁ ହେବ । ଆଗାମୀ ଯୁଦ୍ଧ ପାଇଁ ଆମର ଭାରତୀୟ ଜାତୀୟ ବାହିନୀକୁ ସଜାଗ ତଥା ପ୍ରସ୍ତୁତ ରହିବାକୁ ପଡ଼ିବ । ଜୀବନ ବିନିମୟରେ ଆମେ ଆମର ଲକ୍ଷ୍ୟ ପୂରଣ ଦିଗରେ ଆଗେଇଯିବା ।"

ଏ ଉଦ୍‌ବୋଧନ ଥିଲା ଯେତିକି ଆବେଗମୟ, ସେତିକି ଉନ୍ମାଦନାମୟ । ବିଦେଶ-ମାଟିରେ ନିଜର ସ୍ଥିତିକୁ ବଜାୟ ରଖି, ସମସ୍ତଙ୍କୁ ସୁ-ସଂହତ ତଥା ସୁ-ସଂଗଠିତ କରି ରାଜନୈତିକ ଧାରାରେ ବିଧିବଦ୍ଧ ଯୁଦ୍ଧ-ଯୋଜନା କରିବା କେତେ ଦୁଃସାଧ୍ୟ ତଥା ଦୁଷ୍କର, ତାହା ପ୍ରଣିଧାନଯୋଗ୍ୟ ।

ଆଜାଦ୍ ହିନ୍ଦ୍ ସରକାର ହାତରେ ପଦାତିକ ବାହିନୀ ଥିଲେ ମଧ୍ୟ ନୌବାହିନୀ କିମ୍ବା ଆକାଶବାହିନୀ ନଥିଲା । ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜ ବାହିନୀ ବିରୁଦ୍ଧରେ ଯୁଦ୍ଧ କରିବାକୁ ହେଲେ ଏ ଦିଗରେ ସ୍ୱାବଲମ୍ବୀ ହେବାକୁ ହେବ । ଏହି ,ଲକ୍ଷ୍ୟକୁ ଆଖି-ଆଗରେ ରଖି ସୁଭାଷ ବୋଷ ପ୍ରବାସୀ ଭାରତୀୟମାନଙ୍କ ମଧ୍ୟରୁ ଆଗ୍ରହୀ ଯୁବକମାନଙ୍କୁ ବାଛି ତାଲିମ ପାଇଁ ଜାପାନ ପଠାଇଥିଲେ ।

ଯୁଦ୍ଧ-ଘୋଷଣା ରେଡିଓ ମାଧ୍ୟମରେ ସାରା ବିଶ୍ୱକୁ ପ୍ରସାରିତ ହୋଇଥିଲା । ଭାରତର ଲୋକମାନେ ସିଙ୍ଗାପୁର ରେଡିଓରୁ ଏହି ଘୋଷଣା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । କଂଗ୍ରେସ ନେତାମାନଙ୍କ ମଧ୍ୟରେ ଏକ ତୀବ୍ର ଆଲୋଡ଼ନ ସୃଷ୍ଟି ହେଲା । ମହାତ୍ମା ଗାନ୍ଧୀ ଯୁଦ୍ଧକୁ ସମର୍ଥନ କରୁ ନଥିଲେ ମଧ୍ୟ ଭାରତୀୟ ଜାତୀୟ ବାହିନୀର ସାହସକୁ ପସନ୍ଦ କରିଥିଲେ । ଅସ୍ଥାୟୀ ସରକାର୍‌ର ଏହି ସାହସିକ ଚରମ ପଦକ୍ଷେପ ତାଙ୍କୁ ଅନ୍ତତଃ ଏତିକି ଧାରଣା ଦେଇଥିଲା ଯେ ଭାରତ ସ୍ୱାଧୀନତା ହାସଲ ପାଇଁ ଯେଉଁ ବହୁମୁଖୀ ପ୍ରଚେଷ୍ଟା ଚଳାଇଛି, ତା' ଭିତରେ ଏହା ଅନ୍ୟତମ ଓ ଇଂରେଜ ସରକାର ଆଉ ଅଧିକ ଦିନ ଭାରତମାଟିରେ ଯେ ତାର୍ ନିରଙ୍କୁଶ ଶାସନ ଚଳାଇପାରିବ ନାହିଁ, ଏହାହିଁ ତାର ପୂର୍ବାଭାସ ।

ଯୁଦ୍ଧ-ଘୋଷଣା କରାଯାଇଥିଲେ ମଧ୍ୟ ସବୁଦିଗରୁ ପ୍ରସ୍ତୁତ ହେବାପାଇଁ କିଛି ସମୟ ଲାଗିଥିଲା । ନେତାଜୀ ଯୁଦ୍ଧଖର୍ଚ୍ଚ ତୁଲାଇବା ପାଇଁ ସେଠାରେ ଥିବା ଭାରତୀୟମାନଙ୍କଠାରୁ ଅର୍ଥ-ସଂଗ୍ରହର ଅଭିଯାନ ଆରମ୍ଭ କରିଥିଲେ । ସେନାବାହିନୀକୁ ସୁଦୃଢ଼ କରିବାପାଇଁ ଯୁବକ-ଯୁବତୀମାନଙ୍କୁ ବିପୁଳ ସଂଖ୍ୟାରେ ସେନାବାହିନୀରେ ଯୋଗ ଦେବାକୁ ସୁଯୋଗ ଦେଇଥିଲେ । ନେତାଜୀଙ୍କର ଅଗ୍ନିମୟୀ ଭାଷଣରେ ଲୋକମାନେ ଉଦ୍‌ବୁଦ୍ଧ ହୋଇ ନିଜର ସର୍ବସ୍ୱ ଦାନ କରୁଥିଲେ । ଏପରି ମଧ୍ୟ ଅନେକ ହୀନତମ ଲୋକ ଥିଲେ ଯେଉଁମାନେ ଜୀବନକାଳର ଅର୍ଜିତ ସଞ୍ଚିତ ଅର୍ଥକୁ ମଧ୍ୟ ଦାନକରି ସେତୁବନ୍ଧଗଠନରେ ଗୁଣ୍ଡୁଚିମୂଷାର କର୍ତ୍ତବ୍ୟ ପରି ନିଜର କର୍ତ୍ତବ୍ୟ ସଂପାଦନ କରୁଥିଲେ ।

ନେତାଜୀଙ୍କ ଯୁଦ୍ଧପାଣ୍ଠିକୁ ସାହାଯ୍ୟ କରିବା ପାଇଁ ରେଙ୍ଗୁନରେ ମଧ୍ୟ ପ୍ରବଳ ପ୍ରତିଯୋଗିତା ଆରମ୍ଭ ହୋଇଥିଲା । ସେତେବେଳେ ରେଙ୍ଗୁନ୍‌ରେ ଜଣେ ଭାରତୀୟ ମୁସଲମାନ ବାସକରୁଥିଲେ । ତାଙ୍କର ଧନ ଓ ମନ ଉଭୟ ଥିଲା ବିପୁଳତାର ପ୍ରତୀକ । ତାଙ୍କ ନାଁ ହେଉଛି ମିଃ ହବିବ୍ । ସେ ଭାରତର ମୁକ୍ତି-ଅନ୍ଦୋଳନରେ ଏପରି ଉଦ୍‌ବୁଦ୍ଧ ହୋଇଥିଲେ ଯେ ନିଜର ସମସ୍ତ ସ୍ଥାବର-ଅସ୍ଥାବର ସମ୍ପତ୍ତି ନେତାଜୀଙ୍କ ଯୁଦ୍ଧପାଣ୍ଠିକୁ

ଉତ୍ସର୍ଗ କରିଦେଇଥିଲେ । ଏହିପରି ଭୂରି ଭୂରି ଉତ୍ସର୍ଗ ମହାନ୍ ତ୍ୟାଗର ଏକ ଅପ୍ରତିହତ ସ୍ରୋତରେ ପରିଣତ ହୋଇଥିଲା ।

ଅବଶ୍ୟ ଏପରି କେତେକ ବିତ୍ତଶାଳୀ ଲୋକ ଥିଲେ, ଯେଉଁମାନେ ଉତ୍ସର୍ଗର ଅଭିନୟ କରୁଥିଲେ ମଧ୍ୟ ଆନ୍ତରିକତାର ଅଭାବ ସେମାନଙ୍କ ମଧ୍ୟରେ ଲକ୍ଷ୍ୟ କରାଯାଇଥିଲା । ଏହି ଅଭିନୟ ମନୋଭାବକୁ ସୁଭାଷ ଆଦୌ ପସନ୍ଦ କରୁନଥିଲେ । ଆଚରଣ ସହିତ ମନୋଭାବର ଆତ୍ମିକ ମିଳନକୁ ସେ ପ୍ରାଧାନ୍ୟ ଦେଉଥିଲେ । ଧନୀ ଲୋକଙ୍କ ମଧ୍ୟରୁ ଯେଉଁମାନଙ୍କର ନେତାଜୀଙ୍କ ଆଦର୍ଶ ପ୍ରତି ଭିନ୍ନ ମନୋଭାବ ଥିଲା, ସେ ସେମାନଙ୍କୁ ଲକ୍ଷ୍ୟକରି କହିଥିଲେ :

"ଏଇ ଦେଖନ୍ତୁ, ଭାରତୀୟ ଜାତୀୟ ବାହିନୀରେ ଯେଉଁମାନେ ସ୍ୱତଃପ୍ରଣୋଦିତ ହୋଇ ଯୋଗଦାନ କରିଛନ୍ତି, ସେମାନେ ଜାଣନ୍ତି ନାହିଁ ଯେ ତାଙ୍କ ଭିତରୁ କେତେଜଣ ସ୍ୱାଧୀନ ଭାରତର ନବୀନ ସୂର୍ଯ୍ୟୋଦୟ ଜୀବନରେ ଦେଖିପାରିବେ ! ଏହି ନିଶ୍ଚିତତା ଓ ଅନିଶ୍ଚିତତା ଭିତରେ ବି ଆନନ୍ଦର ସହିତ ସେମାନେ ଯୁଦ୍ଧ ପାଇଁ ନିଜକୁ ପ୍ରସ୍ତୁତ କରୁଛନ୍ତି; ଫଳାଫଳ ପାଇଁ ସେମାନେ ଆଦୌ ଭ୍ରୂକ୍ଷେପ କରନ୍ତି ନାହିଁ । ମୁକ୍ତିଯୁଦ୍ଧରେ ନିଜର ଶେଷ ରକ୍ତବିନ୍ଦୁ ଢାଳିଦେବା ପାଇଁ ସେମାନେ ବଦ୍ଧପରିକର । ଫଳାଫଳ ଯାହା ହେଉନା କାହିଁକି, ପଶ୍ଚାତ୍‌ପଦର କିଛି କାରଣ ନାହିଁ ।

"ଯେତେବେଳେ ଆମର ଜାତୀୟ ବାହିନୀ ଅଭିଯାନ ତୋଳିଛନ୍ତି ଅଦମ୍ୟ ଉତ୍ସାହ ନେଇ, ସେତେବେଳେ ବହୁ ଧନୀ ବ୍ୟକ୍ତି ମୋ ସହିତ ନାନା ସର୍ତ୍ତମୂଳକ ପ୍ରଶ୍ନର ଆଲୋଚନା ପାଇଁ ଆଗେଇଆସୁଛନ୍ତି । ମୁକ୍ତିକାମୀ ସୈନିକମାନଙ୍କ ତ୍ୟାଗ ନିସର୍ତ୍ତ—ଏହା ସେମାନେ ବୁଝିବା ଉଚିତ ।

"ଅନେକ ଗରିବଶ୍ରେଣୀର ଲୋକ ମଧ୍ୟ ମୁକ୍ତିସଂଗ୍ରାମ ପାଇଁ ସେମାନଙ୍କର ସର୍ବସ୍ୱ ଦାନ କରିବାକୁ ଆଗେଇଆସୁଛନ୍ତି, ଏପରିକି ଦିନମଜୁରିଆ ମଧ୍ୟ ଏଥିରୁ ବାଦ୍ ପଡ଼ିନାହାନ୍ତି । ସେମାନଙ୍କ ମଧ୍ୟରୁ କେତେକ ସ୍ୱେଚ୍ଛାସେବୀ-ବାହିନୀରେ ମଧ୍ୟ ଯୋଗଦେବା ପାଇଁ ଆଗେଇ ଆସୁଛନ୍ତି ।

"ଏପରି ମଧ୍ୟ ଗରିବଶ୍ରେଣୀର କେତେକ ଲୋକ ଅଛନ୍ତି, ଯେଉଁମାନେ ତାଙ୍କର ଅନ୍ୟାନ୍ୟ ସମ୍ପତ୍ତି ସହିତ ନିଜର ପାସବୁକ୍ ମଧ୍ୟ ଦେଇଦେଇଛନ୍ତି । ମାଲୟରେ ଏପରି କଣ କେହି ଭାରତୀୟ ଧନୀ ଲୋକ ନାହାନ୍ତି, ଯେ କି ଅନୁରୂପ ଢଙ୍ଗରେ ନିଜର ଗଚ୍ଛିତ ଅର୍ଥକୁ ମୁକ୍ତି-ଆନ୍ଦୋଳନପାଇଁ ଦାନ କରିଦେଇ ପାରିବେ ?

"ଭାରତୀୟମାନେ ଗୋଟିଏ ଜାତି ହିସାବରେ ତ୍ୟାଗର ଆଦର୍ଶକୁ ବିଶ୍ୱାସ କରନ୍ତି । ହିନ୍ଦୁମାନଙ୍କ ମଧ୍ୟରେ ସନ୍ନ୍ୟାସୀ ଓ ମୁସଲମାନମାନଙ୍କ ମଧ୍ୟରେ ଫକିରମାନଙ୍କର ତ୍ୟାଗପୂତ ଆଦର୍ଶ ଭାରତୀୟମାନଙ୍କୁ ଯୁଗେ ଯୁଗେ ଉଦ୍‌ବୁଦ୍ଧ କରିଆସିଛି । ଭାରତର ଅଠିତିରିଶ

କୋଟି ଲୋକଙ୍କର ମୁକ୍ତିପାଇଁ ତ୍ୟାଗ ସ୍ୱୀକାର କରିବାଠାରୁ ବଳି ଆଉ କଣ କିଛି ମହାନ୍ ପୁଣ୍ୟ ଥାଇପାରେ ?''

ସୁଭାଷଙ୍କର ଆବେଗଭରା ଆଗ୍ନେୟ ଭାଷଣ ମାଳୟର ବହୁଲୋକଙ୍କୁ ଚହଲାଇଦେଇଥିଲା । ବହୁ ବିତ୍ତଶାଳୀ ବ୍ୟକ୍ତି ମୁକ୍ତି-ଆନ୍ଦୋଳନ ପାଇଁ ନିଜର ସର୍ବସ୍ୱ ଦାନ କରିଥିଲେ । ଆର୍ଥିକ ସଙ୍କଟ ନେଇ ପୂର୍ବରୁ ଯେଉଁ ଶୂନ୍ୟବୋଧ ସୁଭାଷଙ୍କ ମନରେ ସୃଷ୍ଟି ହୋଇଥିଲା, ତାହା ଦୂରେଇଗଲା । ଆଜାଦ୍ ହିନ୍ଦ୍ ବ୍ୟାଙ୍କ ଖୋଲାଗଲା ସଂଗଠନର ଅର୍ଥନୀତିକୁ ସୁଦୃଢ଼ କରିବା ପାଇଁ ।

ସେତେବେଳକୁ ଆଜାଦ୍ ହିନ୍ଦ୍ ବେତାର କେନ୍ଦ୍ର ପୂର୍ବ-ଏସିଆ ଓ ଜର୍ମାନୀର ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇସାରିଥାଏ । ସେହି ବେତାର କେନ୍ଦ୍ର ମାଧ୍ୟମରେ ସୁଭାଷଙ୍କ ଭାଷଣସବୁ ବିଭିନ୍ନ ଭାଷାରେ ପ୍ରଚାରିତ ହେଉଥାଏ । ଭାରତବାସୀ ରେଙ୍ଗୁନ ଓ ସିଙ୍ଗାପୁର କେନ୍ଦ୍ରରୁ ବିଭିନ୍ନ ଭାରତୀୟ ଭାଷାରେ ତାଙ୍କର ପ୍ରଚାରିତ ବାର୍ତ୍ତା ଶୁଣୁଥାନ୍ତି । ଲୋକମାନଙ୍କ ମଧ୍ୟରେ କି ଅପୂର୍ବ ଉନ୍ମାଦନା ! ଏହାକୁ ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ ।

ଅସ୍ଥାୟୀ ସରକାର ଗଠନର ପ୍ରାୟ ସପ୍ତାହକ ପରେ ସୁଭାଷ ବୋଷ ଟୋକିଓ ଯାଇଥିଲେ । ସେଠାରେ ବୃହତ୍ତର ପୂର୍ବ-ଏସିଆ ସମ୍ମିଳନୀ ଆରମ୍ଭ ହୋଇଥିଲା । ସେ ସେହି ସମ୍ମିଳନୀରେ ଯୋଗଦେଲେ । ଜାପାନର ପ୍ରଧାନମନ୍ତ୍ରୀ ମିଃ ତୋଜୋ ତାଙ୍କୁ ଜଣେ ରାଷ୍ଟ୍ରମୁଖ୍ୟ ଭାବରେ ଯଥାବିଧି ସମ୍ମାନ ଦେଇଥିଲେ । ସୁଭାଷ ତଥା ତାଙ୍କ ମନ୍ତ୍ରିମଣ୍ଡଳର ଅନ୍ୟାନ୍ୟ ସଭ୍ୟବୃନ୍ଦ ଏହି ସମ୍ମିଳନୀକୁ କେବଳ ପରିଦର୍ଶକ ଭାବରେ ନିମନ୍ତ୍ରିତ ହୋଇଥିଲେ । ନଭେମ୍ବର ମାସ ପାଞ୍ଚ ତାରିଖରେ ଏହି ସମ୍ମିଳନୀ ଆରମ୍ଭ ହୋଇ ଛଅ ତାରିଖ ଦିନ ଶେଷ ହୋଇଥିଲା । ଏଥିରେ ସ୍ୱାଧୀନ ବର୍ମାର ନୂତନ ସରକାରଙ୍କ ପ୍ରତିନିଧି, ଥାଇଲଣ୍ଡ, ଚୀନା, ଫିଲିପାଇନସ୍ ଓ ଜାପାନର ପ୍ରତିନିଧିମାନେ ଯୋଗ ଦେଇଥିଲେ ।

୧୯୪୧ ମସିହା ଡିସେମ୍ବର ମାସ ଆଠତାରିଖରେ ଜାପାନ ପ୍ରଥମଥରପାଇଁ ଇଂରେଜ ତଥା ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା । ୧୯୪୨ ମସିହା ଫେବୃଆରୀ ୧୫ ତାରିଖରେ ଜାପାନୀମାନେ ସିଙ୍ଗାପୁର ଦଖଲକଲେ । ତା ପୂର୍ବରୁ ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜ ଦଖଲ କରିଥିଲା ।

ପୂର୍ବ-ଏସିଆ ସମ୍ମିଳନୀରେ ଜାପାନର ପ୍ରଧାନମନ୍ତ୍ରୀ ମିଃ ତୋଜୋ ବିଶ୍ୱବାସୀଙ୍କୁ ଚମତ୍କୃତ କରି ଏକ ଐତିହାସିକ ଘୋଷଣାକଲେ । ଆଜାଦ ହିନ୍ଦ୍ ଅସ୍ଥାୟୀ ସରକାର ହାତରେ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜଦ୍ୱୟ ସଦିଚ୍ଛାର ଚିହ୍ନରୂପେ ଅର୍ପଣ କରିବାକୁ ଏଠାରେ ଘୋଷଣା କରାଗଲା । ନେତାଜୀ ସୁଭାଷ ଓ ଅସ୍ଥାୟୀ ସରକାରର ଅନ୍ୟାନ୍ୟ ସଭ୍ୟଗଣ ଏଥିରେ ଗଭୀର ସନ୍ତୋଷ ତଥା ଆନନ୍ଦ ପ୍ରକାଶ କରିଥିଲେ ।

ଏ ସମ୍ବାଦ ଯେତେବେଳେ ବିଶ୍ୱବାସୀ ଶୁଣିଲେ, ସେମାନେ ବି କମ୍ ବିସ୍ମିତ ହୋଇନାହାନ୍ତି । ଇଂରେଜମାନଙ୍କ ମଧ୍ୟରେ ଏହା ଏକ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା । ତାଙ୍କ ଅତ୍ୟାଚାର ଶାସନର କୃଷ୍ଣପର୍ଦ୍ଦାରେ ଯେ ଫାଟ ଆରମ୍ଭ ହୋଇଗଲାଣି, ସେମାନେ ତାହା ମର୍ମେ ମର୍ମେ ଅନୁଭବ କରୁଥିଲେ । ତାଳପକା ବ୍ୟବସ୍ଥାରେ ଶାସନ ତଥା ସାମ୍ରାଜ୍ୟର ଦୃଢ଼ତା ରକ୍ଷାକରିଯାଇପାରେନା—ଏହା ସେମାନେ ବେଶ୍ ଉପଲବ୍ଧି କରିଥିଲେ । ଭାରତ ଭିତରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସର ଗ୍ରୁପ ଏବଂ ଭାରତ ବାହାରେ ନେତାଜୀ ସୁଭାଷଙ୍କ ଦ୍ୱାରା ପରିଚାଳିତ ସ୍ୱାଧୀନ ଜାତୀୟ ସରକାରର ଶସ୍ତ୍ରଶସ୍ତ୍ର ସହାୟତାରେ ଆରମ୍ଭ କରିଥିବା ପ୍ରତିରୋଧ ଇଂରେଜମାନଙ୍କର ମନୋବଳ ତୁଟାଇ ଦେଇଥିଲା ।

'ସ୍ୱାଧୀନ ଜାତୀୟ ଅସ୍ଥାୟୀ ସରକାର' ସେହି ଦ୍ୱୀପ ଦୁଇଟି ଉପହାର ପାଇବାପରେ ତାର ନୂତନ ନାମକରଣ କରିଥିଲେ : 'ସହିଦ୍' ଓ 'ସ୍ୱରାଜ' । ଏହା ଥିଲା ସ୍ୱାଧୀନ ଭାରତର ପ୍ରଥମ ମୁକ୍ତ ଅଞ୍ଚଳ ।

ପୂର୍ବ-ଏସିଆ ସମ୍ମିଳନୀରେ ଯୋଗ ଦେଇଥିବା ପ୍ରତିନିଧିମାନଙ୍କର ଏକ ମିଳିତ ଘୋଷଣା ମଧ୍ୟ ପ୍ରକାଶ ପାଇଥିଲା । ଘୋଷଣାର ବିଷୟବସ୍ତୁ ଥିଲା, "ବୃହତ୍ତର ପୂର୍ବ-ଏସିଆର ଦେଶମାନେ ପରସ୍ପର ମଧ୍ୟରେ ସହଯୋଗ ପ୍ରତିଷ୍ଠାକରି ନିଜ ନିଜ ଅଂଚଳର ସ୍ଥିତିକୁ ସୁଦୃଢ଼ କରିବେ । ନ୍ୟାୟଭିତ୍ତିକ ଏକ ସର୍ବସମ୍ମତ ପ୍ରଗତିପୂର୍ଣ୍ଣ କାର୍ଯ୍ୟକ୍ରମ ମାଧ୍ୟମରେ ଲୋକମାନଙ୍କର ଉନ୍ନତି କରାଯିବ । କୌଣସି ଦେଶ ଅନ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବେ ନାହିଁ ଓ ପ୍ରତ୍ୟେକ ପ୍ରତ୍ୟେକର ସାର୍ବଭୌମତ୍ୱକୁ ସମ୍ମାନ ଦେବେ । କେହି କାହାର ସ୍ୱାଧୀନତା ଉପରେ ଆଞ୍ଚ ଆଣିବେନାହିଁ ଏବଂ ସାହାଯ୍ୟ ତଥା ସହଯୋଗ ଭିତ୍ତିରେ ମିତ୍ରତାର ବନ୍ଧନ ଦୃଢ଼ କରାଯିବ । ପ୍ରତ୍ୟେକ ଦେଶର ସଂସ୍କୃତି ଓ ପରମ୍ପରା ପ୍ରତି ଅନ୍ୟର ସମ୍ମାନ ରହିବ ଏବଂ ବୃହତ୍ତର ଏସିଆର ସଂସ୍କୃତିକୁ ବିକାଶ କରିବାପାଇଁ ଚେଷ୍ଟା କରାଯିବ । ସେମାନେ ସାରା ବିଶ୍ୱର ପ୍ରତ୍ୟେକ ଦେଶ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରକ୍ଷା କରିବେ ।"

ନେତାଜୀ ସୁଭାଷ ବୋଷ ଏହି ଘୋଷଣାକୁ ଅନ୍ତରର ସହିତ ଗ୍ରହଣ କରିଥିଲେ ଏବଂ ତାଙ୍କ ମତରେ ଏହାହିଁ ଥିଲା ଏସିଆ ପାଇଁ ଏକ ଆହ୍ୱାନ । ଏହି ପ୍ରକାରର ବହୁ ଘୋଷଣା ଇଉରୋପୀୟ ଦେଶମାନଙ୍କରେ ପୂର୍ବରୁ ଘୋଷିତ ହୋଇଥିଲା; କିନ୍ତୁ ପରସ୍ପରର ପରସ୍ପର ପ୍ରତି ଅବିଶ୍ୱାସ, ଘୃଣା, ଈର୍ଷା ମନୋଭାବ ଫଳରେ ଏହା ବିଫଳତାରେ ପର୍ଯ୍ୟବସିତ ହେଲା । ଏସିଆ ଆଜି ଯେଉଁ ନିଷ୍ପତ୍ତି ଗ୍ରହଣ କରିଛି, ତାହା ଯଦି ସେ ନିଷ୍ଠାର ସହ ପାଳନ କରିପାରିବ, ତା'ହେଲେ ଏହା ହେବ ପ୍ରାଚ୍ୟର ବିଜୟ । ପ୍ରାଚୀ ଆକାଶରୁ ଆଲୋକ ପ୍ଲାବିତ ହୁଏ ସାରା ବିଶ୍ୱକୁ—ସୃଷ୍ଟି ଆରମ୍ଭ ହେଲାଦିନୁ ଏହାହିଁ ହେଉଛି ପ୍ରକୃତିର ନିୟମ । ଆନ୍ତର୍ଜାତିକ ବନ୍ଧୁତା କ୍ଷେତ୍ରରେ ପ୍ରାଚୀ ଆକାଶରୁ ମଧ୍ୟ ଆଲୋକ ଝରିବ—ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ସୁଭାଷ ବୃହତ୍ତର ଏସିଆ ସମ୍ମିଳନୀ ଶେଷରେ ଚୀନ ଓ ଫିଲିପାଇନସ୍ ପ୍ରଭୃତି କେତେକ ଦେଶକୁ ଗସ୍ତରେ ଯାଇଥିଲେ । ୧୯୪୩ ଡିସେମ୍ବର ଶେଷଭାଗରେ ସେ ସିଙ୍ଗାପୁରକୁ ଫେରି ସେହି ମାସ ୩୧ ତାରିଖ ଦିନ ପ୍ରଥମଥର ପାଇଁ ସ୍ୱାଧୀନ ଭାରତର ପବିତ୍ରତୀର୍ଥ, ସେହି ସଦ୍ୟମୁକ୍ତ ଦ୍ୱୀପପୁଞ୍ଜରେ ପାଦଦେଲେ । ଉଚ୍ଛଳ ଉଚ୍ଛାସରେ ତାଙ୍କ ନୟନରୁ ଆନନ୍ଦାଶ୍ରୁ ନିର୍ଗତ ହେଲା । ସେ ସେହି ମହାନ୍ ମାଟିର ପବିତ୍ର ଧୂଳିକଣାକୁ ମଥାରେ ମାଖି ଭାରତମାତାଙ୍କୁ ନମସ୍କାର ଜଣାଇଲେ । ଭାରତର କେତେ ବୀର ସନ୍ତାନ ଏ ମାଟିରେ ଇଂରେଜ ସରକାରର ଅମାନୁଷିକ ଅତ୍ୟାଚାର ଭିତରେ ବନ୍ଦୀ ଭାବରେ ଜୀବନ ଦାନ କରିଛନ୍ତି, ତାର ପରିଚାନ୍ତର ନାହିଁ । ଏହି ଦ୍ୱୀପପୁଞ୍ଜକୁ ସ୍ୱାଧୀନ ଭାରତର ମୁକ୍ତିମନ୍ଦିର କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଣ୍ଡାମାନରୁ ସୁଭାଷ ବୋଷ ବ୍ୟାଙ୍କକ୍ ଦେଇ ବର୍ମା ଯାଇଥିଲେ ଏବଂ ସେଠାରେ ପହଞ୍ଚିବା ପରେ ଅସ୍ଥାୟୀ ସରକାର, ଭାରତୀୟ ସ୍ୱାଧୀନତା ଲିଗ୍ ତଥା ଭାରତୀୟ ଜାତୀୟ-ବାହିନୀ (I. N. A.)ର ସଦର କାର୍ଯ୍ୟାଳୟ ରେଙ୍ଗୁନରେ ସ୍ଥାପନ କଲେ । ବର୍ତ୍ତମାନ ଏ ସବୁର ଦୁଇଟି ସଦର କାର୍ଯ୍ୟାଳୟ ହେଲା : ଗୋଟିଏ ରେଙ୍ଗୁନ୍‌ଠାରେ ଓ ଅନ୍ୟଟି ସିଙ୍ଗାପୁରରେ ।

ବର୍ମା ଥିଲା ଭାରତର ସୀମାନ୍ତବର୍ତ୍ତୀ । ଏହି ବାଟଦେଇ ଭାରତମାଟିରେ ଭାରତୀୟ ଜାତୀୟ ବାହିନୀ ପ୍ରବେଶକରି ଇଂରେଜମାନଙ୍କ ସହିତ ଯୁଦ୍ଧ କରିବାକୁ ଶପଥ ନେଇଥିଲେ । ଏହି ସଦର କାର୍ଯ୍ୟାଳୟକୁ ସାମରିକ ପ୍ରସ୍ତୁତିର ଅଭିଯାନମଂଚ ରୂପେ ଗଢ଼ିତୋଳିବାକୁ ନେତାଜୀ ଆପ୍ରାଣ ଉଦ୍ୟମ କରିଥିଲେ ।

( ୧୨ )

୧୯୪୪ ମସିହା ଫେବୃଆରୀ ୪ଥ ତାରିଖ । ଭାରତୀୟ ସ୍ୱାଧୀନତା ଇତିହାସର ଏକ ଅଲିଭା ଅଧ୍ୟାୟ । ଆଜାଦ୍ ହିନ୍ଦ୍ ସରକାର ସାମ୍ରାଜ୍ୟବାଦୀ ଇଂରେଜମାନଙ୍କ ବିରୁଦ୍ଧରେ ଏହି ପ୍ରଥମଥର ପାଇଁ ସୁସଜ୍ଜିତ, ସୁସଂହତ ଓ ସଂଗଠିତ ସୈନ୍ୟବାହିନୀ ନେଇ ସାମରିକ ଅଭିଯାନ ଆରମ୍ଭ କଲା । ମୁକ୍ତିସଂଗ୍ରାମର ରଣଭୂମିରେ ପ୍ରଥମ ଥରପାଇଁ ଗୁଳି ଫୁଟିଲା ଶତ୍ରୁର ଜବାବ ଶସ୍ତ୍ରରେ ଦେବାପାଇଁ । ଭାରତୀୟ ଯବାନ୍‌ମାନେ ରକ୍ତର ମୂଲ୍ୟରେ ତାଙ୍କର ଅପହୃତ ସ୍ୱାଧୀନତାକୁ ହାସଲ କରିବେ ।

ଭାରତୀୟ ଜାତୀୟ ବାହିନୀ (I. N. A) ଆଜାଦ୍ ହିନ୍ଦ୍ ଫୌଜର ସମସ୍ତ ସୈନ୍ୟମାନଙ୍କୁ ନେଇ ସୁଭାଷଚନ୍ଦ୍ର ମାଳୟ ଓ ଥାଇଲାଣ୍ଡରୁ ବର୍ମାରେ ଥିବା ଭାରତୀୟ ସୀମାନ୍ତ ପର୍ଯ୍ୟନ୍ତ ସୈନ୍ୟଚାଳନା କଲେ । ତାଙ୍କ ଭିତରେ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି ହେଲା ଯେ ସେ କୌଣସିମତେ ଭାରତଭୂମିର ନିକଟବର୍ତ୍ତୀ ହୋଇପାରିଛନ୍ତି ଓ ସାମାନ୍ୟ ପରିଶ୍ରମରେ ଇଂରେଜମାନଙ୍କୁ ଯୁଦ୍ଧରେ ପରାହତ କରି ପବିତ୍ର ଜନ୍ମଭୂମିର କିଛି ଅଂଶ ନିଶ୍ଚୟ ଜୟ କରିବେ । ତା'ପରେ ଯେଉଁ ମାଟିରେ ଠିଆ ହୋଇ ସେ ଆଗକୁ ଆଗେଇଯିବେ ନିଜର ଅଂଚଳକୁ ବ୍ରିଟିଶ କବଳରୁ ଉଦ୍ଧାର କରିବା ପାଇଁ । ସେ ଦିଲ୍ଲୀ ପର୍ଯ୍ୟନ୍ତ ମାଡ଼ିଯିବା ପାଇଁ ଯେଉଁ ସ୍ୱପ୍ନ ଦେଖୁଛନ୍ତି ତାହା ନିଶ୍ଚୟ ସଫଳ ହେବ ।

ଜାପାନ ସରକାର ସହିତ ଚୁକ୍ତି କରାଗଲା, ଜାପାନୀ ସୈନ୍ୟ ଓ ଭାରତୀୟ ମୁକ୍ତିବାହିନୀର ମିଳିତ ଅଭିଯାନର ଫଳସ୍ୱରୂପ ଯେଉଁ ଭାରତୀୟ ଅଞ୍ଚଳ ମୁକ୍ତ ହେବ, ତାହା ହେବ ସଂପୂର୍ଣ୍ଣ ଭାବରେ ଆଜାଦ ହିନ୍ଦ୍ ସରକାରର କର୍ତ୍ତୃତ୍ୱାଧୀନ; ଜାପାନ ସରକାରଙ୍କର କୌଣସି ଅଧିକାର ତା ଉପରେ ସାବ୍ୟସ୍ତ ହୋଇ ପାରିବନାହିଁ । ଅଧିକୃତ ସ୍ୱାଧୀନ ଅଞ୍ଚଳରେ ଜାପାନୀ ସୈନ୍ୟମାନେ ରହିବେ ନାହିଁ ।

ଜାପାନୀ ସୈନ୍ୟମାନେ ଆଜାଦ ହିନ୍ଦ୍ ସୈନ୍ୟମାନଙ୍କ ସହିତ ଆରାକାନ୍ ଅଞ୍ଚଳକୁ ମାଡ଼ିଗଲେ । ସେଠାରେ ଇଂରେଜ ସୈନ୍ୟବାହିନୀ ସହିତ ସଂଘର୍ଷରେ ସେମାନେ ବିଜୟ ଲାଭକଲେ । ଏ ବିଜୟ ଥିଲା ଆଜାଦ ହିନ୍ଦ୍ ଫୌଜର ବିଜୟ, ଆଜାଦ ହିନ୍ଦ୍ ସରକାରର ବିଜୟ ଓ ସର୍ବୋପରି ଭାରତର ବିଜୟ । ଏହା ଭାରତୀୟ ମୁକ୍ତିବାହିନୀକୁ ଯଥେଷ୍ଟ ମନୋବଳ ଦେଇଥିଲା ।

ଘମାଘୋଟ ଯୁଦ୍ଧ ଚାଲିଲା । ଗୋଟାଏ ପାଖରେ ଇଂରେଜ ତଥା ଆମେରିକାର ସୈନ୍ୟବାହିନୀ ଓ ଅପରପକ୍ଷରେ ଆଜାଦ୍ ହିନ୍ଦ୍ ଫୌଜର ମୁକ୍ତିବାହିନୀ ଏବଂ ଜାପାନର ସୈନ୍ୟମାନେ । ଭାରତୀୟ ମୁକ୍ତିବାହିନୀର ପ୍ରାଣମୂର୍ଚ୍ଛା । ଉଦ୍ୟମ, କୌଣସି ମତେ ବର୍ମା-ଭାରତ ସୀମାନ୍ତ ଅତିକ୍ରମ କରି ଭାରତମାଟିରେ ପାଦ ଦେବାକୁ ହେବ; ଇଂରେଜମାନଙ୍କୁ କୌଣସିମତେ ଭାରତମାଟିରୁ ବହିଷ୍କାର କରିବାକୁ ହେବ ।

ଯେଉଁ ଅଞ୍ଚଳ ଦେଇ ସୈନ୍ୟବାହିନୀ ଅଗ୍ରସର ହେଉଥିଲେ ସେଠାରେ ଭାରତୀୟ ପତାକା ଗର୍ବର ସହିତ ଗଗନ-ପବନରେ ଶିହରିତ ହେଉଥିଲା । ମୁକ୍ତ ଅଞ୍ଚଳଗୁଡ଼ିକ ଆଜାଦ୍ ହିନ୍ଦ୍ ସରକାରଙ୍କ କର୍ତ୍ତୃତ୍ୱାଧୀନ ହେଲା । ସେ ସବୁ ଅଞ୍ଚଳରେ ଜାତୀୟ ସରକାରର ଶାସନ ବ୍ୟବସ୍ଥା ଆରମ୍ଭ ହେଲା । ପୂର୍ବ-ଏସିଆରେ ବସବାସ କରୁଥିବା ସମସ୍ତ ଭାରତୀୟ ଜାତୀୟ ସରକାରର ଅଧୀନରେ ରହିଲେ । ଭାରତୀୟମାନଙ୍କ ପାଇଁ ସମସ୍ତ ସୁବିଧା-ସୁଯୋଗକୁ ଅସ୍ଥାୟୀ ସରକାର ବ୍ୟବସ୍ଥା କଲେ ।

ସଂଘର୍ଷ ହେଲା ଭୂମିଳତର । ଆଜାଦ ହିନ୍ଦ୍ ଫୌଜର ଯବାନ ତଥା ଝାନ୍ସି ରାଣୀ ମହିଳା-ବାହିନୀର ସୈନିକମାନଙ୍କର ଯୁଦ୍ଧକୌଶଳ ଥିଲା ପ୍ରକୃତରେ ବିସ୍ମୟକର । ମୁକ୍ତିବାହିନୀ ଭାରତମାଟିରେ ମାଡ଼ିଚାଲିଲା ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ।

୧୯୪୪ ମସିହା ମାର୍ଚ୍ଚ ମାସ ୧୮ ତାରିଖ ।

ଏ ଦିବସଟି ଆଜାଦ ହିନ୍ଦ୍ ଫୌଜର ସ୍ମରଣୀୟ ଦିବସ; ନେତାଜୀଙ୍କ ଦୀର୍ଘ ସାଧନାର ସିଦ୍ଧି ଦିବସ; ସ୍ୱାଧୀନ ଭାରତର ପୁଣ୍ୟମୟ ଦିବସ । ଏହି ଦିବସର ପୁଣ୍ୟତିଥିରେ ମୁକ୍ତି-ବାହିନୀ ବର୍ମା ସୀମାନ୍ତ ଅତିକ୍ରମ କରି ଭାରତର ପବିତ୍ର ପୀଠରେ ନିଜର ପଦାଙ୍କ ଅଙ୍କନ କଲେ । ଶତ୍ରୁ ସେନାର ବୁକୁ ଚହଲାଇ ଭାରତୀୟ ମୁକ୍ତିବାହିନୀର ତୋପଧ୍ୱନି ଦିଗ୍‌ଦିଗନ୍ତ ପ୍ରକମ୍ପିତ କଲା । ଆକାଶମାର୍ଗରୁ ଇଂରେଜମାନଙ୍କଦ୍ୱାରା ଅବିଶ୍ରାନ୍ତ ବୋମାବର୍ଷଣ ଚାଲିଥାଏ । ତଥାପି ମଧ୍ୟ ଭାରତୀୟ ମୁକ୍ତିବାହିନୀର ଅଗ୍ରସର ଥିଲା ଅପ୍ରତିହତ…କୌଣସି ମତେ ଦିଲ୍ଲୀରେ ପହଞ୍ଚିବାକୁ ପଡ଼ିବ ।

ଭାରତୀୟ ମୁକ୍ତିବାହିନୀ ବର୍ମା-ଭାରତ ସୀମାନ୍ତରେ ସେତେବେଳେ ଆଠଟି ସେକ୍ଟରରେ ଯୁଦ୍ଧ କରୁଥିଲା । ଅଳ୍ପ କିଛି ସମୟ ମଧ୍ୟରେ ଇମ୍ଫାଲ ଭାରତର ମୁକ୍ତିବାହିନୀ ହାତରେ ପଡ଼ିଯିବାର ସମ୍ଭାବନା ଥିଲା । ଇଂରେଜ ଓ ଆମେରିକାର ମିତ୍ରଶକ୍ତି-ଶିବିରରେ ନୈରାଶ୍ୟର ଛାୟା ଖେଳିଗଲା…ସତେ ଯେପରି ଏହା ଥିଲା ସେମାନଙ୍କ ପାଇଁ ଏକ ସତର୍କ ଘଣ୍ଟି । ପୃଥିବୀର ଦୁଇଟି ଅତ୍ୟାଧୁନିକ ବୃହତ୍ ସାମରିକ ଶକ୍ତିକୁ ଦୋହଲାଇଦେଇଛି ଭାରତର ଜାତୀୟ ମୁକ୍ତିବାହିନୀ ଆଜାଦ ହିନ୍ଦ୍ ଫୌଜ । ଏ ବିଜୟ ଭାରତୀୟ ସୈନ୍ୟମାନଙ୍କ ହୃଦୟରେ ଗଭୀର ଆତ୍ମବିଶ୍ୱାସ ସୃଷ୍ଟି କରିଥିଲା ।

୧୯୪୪ ମସିହା ମାର୍ଚ୍ଚ ମାସ ୨୧ ତାରିଖ ।

ନେତାଜୀ ସୁଭାଷ ଭାରତୀୟ ଜାତୀୟ ବାହିନୀର ଯୁଦ୍ଧଭୂମିରେ ଅବତୀର୍ଣ୍ଣ ତଥା ବର୍ମା-ଭାରତ ସୀମାନ୍ତରେ ଇମ୍ଫାଲର ନିକଟବର୍ତ୍ତୀ ଅଞ୍ଚଳ ଦଖଲ ବିଷୟରେ ଏକ ଐତିହାସିକ ଘୋଷଣା ରେଡିଓ ମାଧ୍ୟମରେ ପ୍ରଚାର କରିଥିଲେ ଓ ଏହା ସାରା ବିଶ୍ୱକୁ ବିସ୍ମିତ କରିଥିଲା । ଏହି ଦିନଟି ଆଜାଦ ହିନ୍ଦ୍ ଫୌଜର ସ୍ମୃତିମୟ ଦିବସ । ୧୯୪୩ ମସିହା ଅକ୍ଟୋବର ଏକୋଇଶ ତାରିଖରେ ଆଜାଦ ହିନ୍ଦ୍ ସରକାର ପ୍ରଥମ ଥର ପାଇଁ ଗଠିତ ହୋଇଥିଲା । ଏକୋଇଶ ତାରିଖ ଥିଲା ସତେ ଯେପରି ଶୁଭଙ୍କର ।

ଅପ୍ରେଲ ପାଞ୍ଚ ତାରିଖ ଦିନ ନେତାଜୀ ସୁଭାଷ ଆଜାଦ ହିନ୍ଦ୍ ଜାତୀୟ ବ୍ୟାଙ୍କ ପ୍ରଥମକରି ପ୍ରତିଷ୍ଠାକଲେ ରେଙ୍ଗୁନରେ । ଅର୍ଥ ବିନିମୟ କ୍ଷେତ୍ରରେ ଏହି ଜାତୀୟ ବ୍ୟାଙ୍କର ଭୂମିକା ଥିଲା ସର୍ବୋପରି । ଅସ୍ଥାୟୀ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ଜାପାନର ବ୍ୟାଙ୍କ ଏହି ଜାତୀୟ ବ୍ୟାଙ୍କର ନୀତିକୁ ମାନିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରିଗଲା । ଯେଉଁ ଅଞ୍ଚଳ

ଇଂରେଜମାନଙ୍କ ଦଖଲରୁ ମୁକ୍ତ କରାଯିବ ସେ ଅଞ୍ଚଳରେ ଜାତୀୟ ବ୍ୟାଙ୍କର ନିର୍ଦ୍ଦେଶକୁ ପ୍ରତ୍ୟେକ ବ୍ୟାଙ୍କ ମାନିବାକୁ ବାଧ୍ୟ । ସ୍ୱାଧୀନ ଜାତୀୟ ସରକାର ତା ନିଜର ଡାକଟିକଟ ପ୍ରଚଳନ କରିବା ପାଇଁ ଡାକଟିକଟ ଛପାଗଲା । ନିଜ ଅଞ୍ଚଳ ପାଇଁ ଜାତୀୟ ସରକାରର ମୁଦ୍ରା ମଧ୍ୟ ପ୍ରଚଳନ କରାଗଲା । ଏହା ଥିଲା ମହାନ୍ ସାଫଲ୍ୟର ଅନ୍ୟ ଏକ ଅଧ୍ୟାୟ । ମେଜର୍ ଜେନେରାଲ ଏ. ସି. ଚାଟାର୍ଜୀ ସ୍ୱାଧୀନ ଅଞ୍ଚଳର ହେଲେ ଗଭର୍ଣ୍ଣର । ଅସ୍ତଗାମୀ ସୂର୍ଯ୍ୟ ପଶ୍ଚିମ ଆକାଶରେ ମୁଠା ମୁଠା ଅବିର ବୁଣୁଥିଲେ । ଅପଲକ ନୟନରେ ସୁଭାଷ ଚାହିଁଥିଲେ ସେହି ପ୍ରାକୃତିକ ଦୃଶ୍ୟ ଆଡ଼କୁ । ବିଶ୍ୱ-ପ୍ରକୃତିର ପ୍ରତ୍ୟେକଟି ନିୟମ ଶାଶ୍ୱତ ଓ ଏହାର ବହିଃ ପ୍ରକାଶ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଦୃଶ୍ୟର ଆଲେଖ୍ୟ ବହନ କରେ । ପ୍ରକୃତି ପାଇଁ ଅପରିବର୍ତ୍ତନୀୟ ଗୋଟିଏ ଲକ୍ଷ୍ୟ ଗୋଟିଏ ଅର୍ଥର ଅବୟବ ଧାରଣକଲେ ମଧ୍ୟ ମନୁଷ୍ୟ ତା ପରିବେଶ, ପରିସ୍ଥିତି ଓ ମାନସିକ ଆଭିମୁଖ୍ୟ ନେଇ ଅର୍ଥ-ଅର୍ଥାନ୍ତର କରିଥାଏ । ସେଇ ମାନସିକ ବିଶ୍ଳେଷଣର ଉତ୍ତରଣ ଚାଲିଥାଏ ସୁଭାଷଙ୍କ ମନ ମଧ୍ୟରେ । ସତେ କଣ ସବୁ ଦିବାସ୍ତ ସହିତ ଏ ଲାଲିମାର ନିତ୍ୟ ସମ୍ପର୍କ ନିହିତ ଅଛି । ପ୍ରଚଣ୍ଡ ସୂର୍ଯ୍ୟର ଆଭାସ ନେଇ ଯେଉଁ ବ୍ରିଟିଶ-ଶାସନର ଆଲୋକ ଉତ୍ସବ ଏ ବିଶ୍ୱରେ ଚାଲିଥିଲା, ତାର ଅସ୍ତ ଆହୁତି ଆରମ୍ଭ ହୋଇଛି ଏଇ ପ୍ରଥମଥର ପାଇଁ ! ସେ ଆହୁତିର ଲାଲ ଶିଖା ଆକାଶକୁ ଫଗୁଲ କରିଛି । ସେ ଆହୁତିକୁ ସେ ପ୍ରଜ୍ୱଳିତ କରିବେ; ବ୍ରିଟିଶ ଶାସନର ପୂର୍ଣ୍ଣାହୁତି ଦେବେ ।

ସମ୍ବାଦ ଆସି ପହଞ୍ଚିଲା, ଆଜାଦ୍ ହିନ୍ଦ୍ ଫୌଜ ସଦର୍ପରେ ଆଗେଇ ଚାଲିଛି । ସୀମାନ୍ତ ଅଞ୍ଚଳରେ ଘମାଘୋଟ ଲଢ଼େଇ ଚାଲିଛି । ଉପରୁ ବୋମାବର୍ଷଣ ହେଉଥିଲେ ମଧ୍ୟ ଜାପାନୀ ସୈନ୍ୟ ତଥା ଆଜାଦ ହିନ୍ଦ୍ ଫୌଜର ଯବାନମାନଙ୍କର ରଣକୌଶଳ ତାକୁ ପ୍ରତିରୋଧ କରିପାରୁଛି । ଘଞ୍ଚ ବଣ, ପାହାଡ଼, ନଦୀ, ନାଳ ଅତିକ୍ରମ କରି ଇଂରେଜ ସୈନ୍ୟମାନେ ଭାରତୀୟ ଜାତୀୟ ବାହିନୀକୁ ପ୍ରତିରୋଧ କରିବା ସମ୍ଭବ ହେଉନି । ସେମାନଙ୍କର ଏକମାତ୍ର ଅଶ୍ୱାସନା ହେଉଛି ଆକାଶଯୁଦ୍ଧ । ଜାପାନ ସୈନ୍ୟମାନଙ୍କର ଆକାଶୀ ଆକ୍ରମଣ ଏହାକୁ ଯେ ବାଧା ଦେଉନାହିଁ ତା' ନୁହେଁ, ତଥାପି ଇଂରେଜମାନଙ୍କର ଆକାଶଯୁଦ୍ଧ ଅନେକ ଦିଗରେ ଉନ୍ନତତର ।

ସ୍ୱାଧୀନ ଭାରତର ଜାତୀୟ ବାହିନୀ ଆଗେଇ ଚାଲିଛି ଇମ୍ଫାଲକୁ କବ୍ଜାଗତ କରିବ ବୋଲି । ଏପାଖେ ମଣିପୁରର ମୋଇରାଙ୍ଗ ଉପରେ ଭାରତର ତ୍ରିରଙ୍ଗା ପତାକା ଆକାଶରେ ଫରଫର ହୋଇ ଉଡ଼ୁଛି । ଭାରତମାଟିରେ ପ୍ରବେଶ କରିଛନ୍ତି ତାର ବୀର ଯବାନ୍‌ମାନେ । ମା' କୋଳର ସ୍ପର୍ଶରେ ସେମାନେ ନବଜୀବନର ନୂତନ ଉନ୍ମାଦନା ଲାଭ କରିଛନ୍ତି । ମୋଇରାଙ୍ଗ ସ୍ୱାଧୀନ ଭାରତର ପୁଣ୍ୟ ତୀର୍ଥ । ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଏ ମାଟି ମୁକ୍ତିର ଉପାଦାନ ନେଇ ମୁଣ୍ଡ ଟେକିଛି । ଭାରତର ଭବିଷ୍ୟତ ବଂଶଧରଙ୍କ ପାଇଁ ସ୍ୱାଧୀନ ଭାରତର ପୁଣ୍ୟ ମନ୍ଦିର ମଣିପୁରର ମୋଇରାଙ୍ଗ ।

ନେତାଜୀଙ୍କ ମନରେ ଅଦମ୍ୟ ଆଶା । ବାଧା-ବନ୍ଧନର କଠିନ ଗ୍ରନ୍ଥି ଛିନ୍ନ ହୋଇଛି । ତାଙ୍କର ସ୍ୱପ୍ନ ସାର୍ଥକ ହୋଇଛି । ଏତେଦିନର ଶ୍ରମସାଧନା ପରେ ସେ ତାଙ୍କର ମା' ମାଟିର ପବିତ୍ର କୋଳରେ ଅଭିଷିକ୍ତ ହୋଇଛନ୍ତି । ସେ ନିଶ୍ଚୟ ଆଗେଇଯିବେ । ଇମ୍ଫାଲ ଅଧିକାର କଲେ ଆସାମ, ବେଙ୍ଗଲ, ଓଡ଼ିଶା ଭିତରକୁ ପ୍ରବେଶକରିବା ବିଶେଷ କିଛି ଅସୁବିଧା ହେବନି । ଦିଲ୍ଲୀର ରାସ୍ତା ତାଙ୍କ ପାଇଁ ବର୍ତ୍ତମାନ ଉନ୍ମୁକ୍ତ । ଈଶ୍ୱରଙ୍କର ଆଶୀର୍ବାଦ ତାଙ୍କ ପାଇଁ ରହିଛି···ଭାରତମାତାଙ୍କୁ ସେ ଦାସତ୍ୱ-ବନ୍ଧନରୁ ମୁକ୍ତ କରିବାକୁ ସମର୍ଥ ହେବେ ।

ଭାରତର ଜାତୀୟ ମୁକ୍ତିବାହିନୀ ଯେତେବେଳେ ଅନନ୍ଦ ଉଲ୍ଲାସରେ ତାଙ୍କର ବିଜୟ ପଥରେ ଆଗେଇ ଚାଲିଥିଲେ, ନେତାଜୀ ସୁଭାଷ ମହାତ୍ମା ଗାନ୍ଧୀଙ୍କୁ ଏ ଶୁଭ ସମ୍ବାଦ ଦେବା ପାଇଁ ଆଜାଦ ହିନ୍ଦ୍ ରେଡ଼ିଓରେ ୧୯୪୪ ମସିହା ଜୁଲାଇ ୬ ତାରିଖରେ ତାଙ୍କର ଆନ୍ତରିକ ବାର୍ତ୍ତା ପଠାଇଥିଲେ । ସେ କହିଥିଲେ : "ଶ୍ରୀମତୀ କସ୍ତୁରୀ ବାଇ ବ୍ରିଟିଶ କବଳରେ ରହି ଶେଷନିଃଶ୍ୱାସ ତ୍ୟାଗ କଲେ । ଏହା ଦେଶବାସୀଙ୍କ ପାଇଁ ଯେପରି ମର୍ମନ୍ତୁଦ, ଆପଣଙ୍କ ପାଇଁ ମଧ୍ୟ ସେପରି ଏକ ଦାରୁଣ ଆଘାତ । ଆପଣଙ୍କର ଏକ ଦୀର୍ଘ ନିରାମୟ ଜୀବନ ପାଇଁ ମୁଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି ।

"ଆପଣ ହେଉଛନ୍ତି ଦେଶରେ ସୃଷ୍ଟି ହୋଇଥିବା ଅଭୂତପୂର୍ବ ନବଜାଗରଣର ସ୍ରଷ୍ଟା । ଆଜି ଭାରତୀୟ ଜାତୀୟ କଂଗ୍ରେସର ଏକମାତ୍ର ଲକ୍ଷ୍ୟ ହେଉଛି ଭାରତର ସ୍ୱାଧୀନତା । ୧୯୪୨ ମସିହାରେ ଆପଣ ଯେତେବେଳେ 'ଭାରତଛାଡ଼' ଆନ୍ଦୋଳନର ଡାକରା ଦେଲେ, ଭାରତର ସ୍ୱାଧୀନତା ପାଇଁ ପୃଥିବୀବାସୀ, ଯେଉଁମାନେ ସହାନୁଭୂତିଶୀଳ, ସେମାନଙ୍କ ପାଖରେ ଓ ବିଦେଶୀ ଭାରତୀୟଙ୍କ ନିକଟରେ ଆପଣଙ୍କର ସମ୍ମାନ ଓ ଭାବମୂର୍ତ୍ତି ବହୁଗୁଣିତ ହେଲା । ସେମାନଙ୍କ ସମକ୍ଷରେ ଆପଣହିଁ ହେଉଛନ୍ତି ଭାରତୀୟ ସ୍ୱାଧୀନତାର ପ୍ରତୀକ ।

"ବ୍ରିଟିଶ ସରକାରର ଦୋଷପାଇଁ ବ୍ରିଟିଶ ଲୋକମାନଙ୍କୁ ଭିନ୍ନ ଚକ୍ଷୁରେ ଦେଖିବାର କୌଣସି କାରଣ ନାହିଁ ବୋଲି ଯେ ଆପଣ କହୁଛନ୍ତି, ସେଥିରେ ମୁଁ ଏକମତ ନୁହେଁ । ହୁଏତ ସେମାନଙ୍କ ମଧ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଆଦର୍ଶବାଦୀ ହୋଇପାରନ୍ତି; କିନ୍ତୁ ବୃହତ୍ତର ରାଜନୈତିକ ସ୍ୱାର୍ଥଦୃଷ୍ଟିରୁ ସମସ୍ତଙ୍କର ଦୃଷ୍ଟିକୋଣ ପ୍ରାୟ ସମାନ । ସେମାନଙ୍କର କ୍ଷୀଣ ସ୍ୱର ଶାସକର ହୃଦୟ ପରିବର୍ତ୍ତନ କରିପାରିବନାହିଁ । ଭାରତ ବିଷୟରେ ସେମାନେ ସମସ୍ତେ ଏକଭାବାପନ୍ନ । ରାଜନୈତିକ ମତବାଦର ଭିନ୍ନତା ନାହିଁ କହିଲେ ଚଳେ । ଆମେରିକା ଓ ଇଂଲଣ୍ଡ ଏ ଦିଗରେ ପ୍ରାୟ ଏକ ମନୋଭାବ ପୋଷଣ କରନ୍ତି । ବ୍ରିଟିଶ ଲୋକମାନେ କହନ୍ତି, ବର୍ତ୍ତମାନ 'ଆମେରିକା ଯୁଗ' ପୃଥିବୀରେ ଚାଲିଛି ।

"ଭାରତକୁ ବ୍ରିଟିଶ କବଳରୁ ମୁକ୍ତ କରିବାପାଇଁ ମୁଁ ଯେଉଁ କଷ୍ଟକର ପଥ ବାଛିନେଇଛି ତାହା ଆପଣ ଅନୁମୋଦନ କରିନାହାନ୍ତି । ବହୁଦିନର ସୁଚିନ୍ତିତ ବିନ୍ୟାସର ପରିଣତି

ହେଉଛି ମୋର ଏହି ଭିନ୍ନ ପଥ ଗ୍ରହଣ । ଯୁଦ୍ଧବନା ବିଶ୍ୱରେ କୌଣସି ଜାତି ମୁକ୍ତିଲାଭ କରିନି । ମୁକ୍ତିର ମୂଲ୍ୟ ହେଉଛି ରକ୍ତ ।

"ମୁଁ ଭାରତରୁ ଚାଲିଆସିବାଟା, ବିଶେଷତଃ ସଙ୍କଟମୟ ପରିସ୍ଥିତିରେ, ଆଦୌ ସମୀଚୀନ ହୋଇନି ବୋଲି ଆପଣଙ୍କର ଧାରଣା । ମୋର କିନ୍ତୁ ଅନ୍ୟ ପଥ ନଥିଲା । ଦେଶ ଭିତରେ ସାମରିକ ବିପ୍ଳବ ସୃଷ୍ଟି କରିବା ସମ୍ଭବ ନହେବାରୁ ବିଦେଶକୁ ମୁଁ ଚାଲିଆସିଲି । ମୋ ଲକ୍ଷ୍ୟ ଏଠାରେ ପୂରଣ ହୋଇଛି; ଆଜାଦ୍ ହିନ୍ଦ୍ ଫୌଜ ଗଠିତ ହୋଇଛି । ଏଥିରେ ଅନୁଗତ ଦେଶପ୍ରେମୀ ଅଂଶଗ୍ରହଣ କରିଛନ୍ତି । ଆମେ ବିଦେଶମାଟିରୁ ଇଂରେଜମାନଙ୍କ ବିରୁଦ୍ଧରେ ସାମରିକ ବିଦ୍ରୋହ ଆରମ୍ଭ କରିଛୁ । ଭାରତୀୟ ଜାତୀୟ ମୁକ୍ତିବାହିନୀ ଚରମ ସଫଳତା ମଧ୍ୟରେ ବିଜୟପଥରେ ଆଗେଇ ଚାଲିଛି । ଇଂରେଜ ତାର ମିତ୍ରବାହିନୀକୁ ନେଇ ଭାରତୀୟ ବାହିନୀର ମୁକାବିଲା କରିବାକୁ ସମର୍ଥ ହୋଇପାରୁନାହିଁ । ଜାପାନ ସୈନ୍ୟମାନେ ଆମ ସହିତ ସହଯୋଗ କରୁଛନ୍ତି । ଜାପାନର ନିସର୍ତ୍ତ ସାହାଯ୍ୟ ବନ୍ଧୁରାଷ୍ଟ୍ରର ସାହାଯ୍ୟ ପରି ଗ୍ରହଣ କରାଯାଇଛି ।

"ଏଠାରେ 'ଆଜାଦ୍ ହିନ୍ଦ୍' ଅସ୍ଥାୟୀ ସରକାର ଗଠନ କରାଯାଇଛି । ଏହା ହେଉଛି ମୁକ୍ତ ଭାରତର ପ୍ରଥମ ସରକାର । ଏ ସରକାରର ଏକମାତ୍ର ପୁରସ୍କାର ହେଉଛି ଭାରତର ସ୍ୱାଧୀନତା । ଏହା ମିଳିଗଲା ପରେ ଅସ୍ଥାୟୀ ସରକାରର କାମ ମୁକ୍ତ ଭାରତର ସ୍ଥାୟୀ ସରକାର ହସ୍ତକୁ ହସ୍ତାନ୍ତରିତ ହେବ । ଆମ ଭିତରେ ଅନେକ ଅଛନ୍ତି, ଯେଉଁମାନେ ସ୍ୱାଧୀନତା ଲାଭ ପରେ ସକ୍ରିୟ ରାଜନୀତିରୁ ସାରାଜୀବନ ପାଇଁ ବିଦାୟ ନେବାକୁ ଚାହାନ୍ତି ।

"ଆଜି ଆଜାଦ୍ ହିନ୍ଦ୍ ଫୌଜ ସାହସର ସହିତ ଭାରତର ମୁକ୍ତିଯୁଦ୍ଧ ପରିଚାଳନା କରୁଛି । ହେ ଜାତିର ପିତା, ଆପଣ ଆପଙ୍କର ଶୁଭ ଆଶୀର୍ବାଦ ଆମ୍ଭମାନଙ୍କୁ ଦିଅନ୍ତୁ···ତାହାହିଁ ଆମ ବିଜୟପଥର ପାଥେୟ ହେବ ।"

ମୁକ୍ତିବାହିନୀ ଆଗେଇଚାଲିଲା । ଇମ୍ଫାଲ ଆଉ ତିନି ମାଇଲ ଆଗରେ ।

ପ୍ରକୃତି ବୋଧହୁଏ ଆଜାଦ୍ ହିନ୍ଦ୍ ଫୌଜର ଏ ଦର୍ପ ସହ୍ୟ କରିପାରିଲା ନାହିଁ । ତଥାପି ମଧ୍ୟ ଭଗବାନ ଧୈର୍ଯ୍ୟ ପରୀକ୍ଷା କରିବାକୁ ପଛେଇନାହାନ୍ତି । ଜୁନ୍ ମାସ ଆରମ୍ଭ ହୋଇଛି । ଭୟଙ୍କର ବର୍ଷା ଆରମ୍ଭ ହେଲା । ବଣଜଙ୍ଗଲ ହେଲା କର୍ଦ୍ଦମାକ୍ତ । ନଈନାଳ ପୂର୍ଣ୍ଣଗର୍ଭା । ସୀମାନ୍ତ ଅଞ୍ଚଳରେ ଯୁଦ୍ଧ କରୁଥିବା ସୈନ୍ୟମାନେ ବର୍ଷା ବିଦ୍ୟୁତ୍ ମଧ୍ୟରେ ଆଉକୁ ଆଗେଇ ପାରୁନାହାନ୍ତି । ଶିବିରକୁ ଫେରିଯିବା ପାଇଁ ବନ୍ୟାପ୍ଳାବିତ ଅଞ୍ଚଳରେ ସୁଯୋଗ ମିଳୁନି । ଜଳଭରା ନଦୀନାଳ ପାରହେବାର ସୁଯୋଗ ନାହିଁ । ଭାରତୀୟ ମୁକ୍ତିବାହିନୀର ସୈନିକମାନେ ଦେଖୁଛନ୍ତି, ଆକାଶରେ ବଜ୍ର ବାଦଲର ବିପ୍ଳବ, ଶତ୍ରୁସେନାର ଅବିଶ୍ରାନ୍ତ ବୋମାବର୍ଷଣ, ସମ୍ମୁଖରେ ପାହାଡ଼ୀ ନଈର ନିର୍ମମ ନିର୍ଯାତନା, ବନ୍ଧୁର ଚଲାପଥରେ

ପିଚ୍ଛଳତା । ଶ୍ରାନ୍ତ-କ୍ଳାନ୍ତ-ଅବଶ ପାଦ ଆଗକୁ ଆଗେଇପାରୁନ ଜଠରରେ କ୍ଷୁଧାର ଅନଳ ନେଇ ।

କାନରେ ଝଂକୃତ ହେଉଛ ତାଙ୍କର ମହାନ ନେତା ନେତାଜୀଙ୍କ ଉଦ୍‌ବୋଧନୀ । "ଭାରତୀୟ ମୁକ୍ତ ସୈନିକ ମୃତ୍ୟୁକୁ ଭୟ କରେନା । ସେ ହିମାଳୟ ପରି ଅଜେୟ ଓ ଅଟଳ । ସେ ହେଉଛ ମୃତ୍ୟୁର ମୃତ୍ୟୁ । ଦୁଃଖ, ଯାତନା ହିଁ ତାର ଚନ୍ଦନ । ସେ ଆତ୍ମସମର୍ପଣ ଶିଖିନି; ଶିଖିଛି ରକ୍ତ-ତର୍ପଣ । ମାତୃଭୂମିର ମୁକ୍ତି ପାଇଁ ସେ ମାଣବ କମ୍ପା ମରିବ ।"

ଇଂରେଜମାନଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମ ଇମ୍ଫାଲକୁ କୌଣସିମତେ ରକ୍ଷାକରିବାକୁ ହେବ । ଆଜାଦ ହିନ୍ଦ୍ ଫୌଜ ହାତରେ ଇମ୍ଫାଲ ପଡ଼ିବା ଅର୍ଥ ଇଂରେଜମାନଙ୍କ ପାଇଁ ଏହା ଏକପ୍ରକାର ନିର୍ବାସନର ଅାଦ୍ୟ ଅଧ୍ୟାୟ ବୋଲି ଗ୍ରହଣ କରିବାକୁ ହେବ । ଇଂରେଜ ଓ ମିତ୍ରବାହିନୀର ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ସୈନ୍ୟଗଣ ଇମ୍ଫାଲ ପ୍ରତିରୋଧ କରିବାପାଇଁ ଜୀବନମୂର୍ଚ୍ଛା ଆକ୍ରମଣ ଆରମ୍ଭ କରିଛନ୍ତି । ଜାପାନୀ ସୈନ୍ୟ ଓ ଭାରତୀୟ ମୁକ୍ତିବାହିନୀ ମଧ୍ୟରେ ଘମାଘୋଟ ଲଢ଼େଇ । ଇମ୍ଫାଲ ଉଭୟଙ୍କ ପାଇଁ ମର୍ଯ୍ୟାଦାର ସ୍ଥାନ ହୋଇଛି ।

ଯୋଗାଯୋଗ ବିଚ୍ଛିନ୍ନ ହୋଇଗଲା । ଖାଦ୍ୟ-ସରଞ୍ଜାମ ଠିକ୍ ଭାବରେ ସୈନ୍ୟମାନଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । କ୍ଷୁଧାତୁର ସୈନ୍ୟମାନେ ବଣଜଙ୍ଗଲର ଫଳମୂଳ ଭକ୍ଷଣ କରି ସୁଯୋଗର ଅପେକ୍ଷାରେ ରହିଲେ । ଅନେକେ ମେଲେରିଆ, ଝାଡ଼ା ଓ ଜ୍ୱରରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଲେ । ଅନେକ ପୀଡ଼ିତ ହେଲେ । ସେମାନଙ୍କର ମନୋବଳ କମିଗଲା । ନେତାଜୀ ସୁଭାଷ ଦେଖିଲେ, ମିତ୍ରଶକ୍ତିର ପ୍ରବଳ ଆକ୍ରମଣକୁ ପ୍ରତିହତ କରିବାର ସାମର୍ଥ୍ୟ ବର୍ତ୍ତମାନ ମୁକ୍ତିବାହିନୀର ନାହିଁ । ଅନିଶ୍ଚିତତା ପଛରେ ଅନୁସରଣ କରି ତାଙ୍କର ସୀମିତ ସମ୍ବଳ ଓ ସୈନ୍ୟବଳକୁ ଆଉ ଅଧିକ ଦୁର୍ବଳ କରିବା ବିଜ୍ଞୋଚିତ ହେବନାହିଁ । ସୁଭାଷ ନିର୍ଦ୍ଦେଶ ଦେଲେ ସେଠାରୁ ପ୍ରତ୍ୟାବର୍ତ୍ତନ ପାଇଁ । ସେ ଉଦାତ୍ତକଣ୍ଠରେ ସେମାନଙ୍କୁ ଅନୁରୋଧ କରିଥିଲେ, "ବନ୍ଧୁଗଣ ! ଏ ପ୍ରତ୍ୟାବର୍ତ୍ତନ ପରାଜୟର ପଛଘୁଞ୍ଚା ନୁହେଁ । ବିଜୟ ପାଇଁ ପୁନର୍ବାର ଶକ୍ତି ସଞ୍ଚୟ କରିବା ନିମିତ୍ତ ଏହା ଏକ ସାମୟିକ ବିରତି । ପ୍ରତ୍ୟାବର୍ତ୍ତନ ପଥରେ ଯଦି ତୁମେମାନେ ଶତ୍ରୁସେନା-କବଳିତ ହେବ ତା'ହେଲେ ଅଦୌ ଆତ୍ମ-ସମର୍ପଣ କରିବ ନାହିଁ; ତାହା ବୀରୋଚିତ ନୁହେଁ । ଭାରତୀୟ ମୁକ୍ତିବାହିନୀର ମର୍ଯ୍ୟାଦା-ସମ୍ପନ୍ନ ଯବାନମାନଙ୍କର ଆଦର୍ଶର ଏହା ପରିପନ୍ଥୀ । ଶେଷନିଃଶ୍ୱାସ ପ୍ରବାହିତ ହେଉଥିବା ପର୍ଯ୍ୟନ୍ତ ତୁମେ ହାତରେ ତ୍ରିରଙ୍ଗୀ ପତାକା ଉତ୍ତୋଳନ କରି ଅଟଳ ରହିବ । ହେ ଭାଇଭଉଣୀମାନେ ! ଅଟଳତାରେ ମୃତ୍ୟୁ ହେଲେ ମୃତ୍ୟୁ ହିଁ ମୃତ୍ୟୁ ହୁଏ—ବୀର ସୈନିକ ବୀରଗତି ଲଭକରେ ।

ତା'ପରର ଘଟଣା । ଭାରତର ମୁକ୍ତିବାହିନୀକୁ ପ୍ରତିହତ କରିବା ପାଇଁ ଇଂରେଜ ଓ ଆମେରିକା ସୈନ୍ୟମାନଙ୍କୁ ସେମାନେ ଅତ୍ୟାଧୁନିକ ଓ ଅତ୍ୟନ୍ତ ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କଲେ । ଆକାଶବାହିନୀକୁ ଅଧିକ ଦୃଢ଼ ଓ ଶକ୍ତିଶାଳୀ କରାଗଲା । ମିତ୍ରଶକ୍ତିର ଉନ୍ନତ ରଣକୌଶଳ, ମାରଣାସ୍ତ୍ର ପରିସ୍ଥିତିର ମୁକାବିଲା ଦିଗରେ ସୁସଂହତ ଭାବରେ ପ୍ରୟୋଗ କରାଗଲା । ଜାପାନ ସୈନ୍ୟ ଓ ଭାରତର ଜାତୀୟ ମୁକ୍ତିବାହିନୀ ପଛଘୁଞ୍ଚା ଦେଲେ; କିନ୍ତୁ ଆତ୍ମସମର୍ପଣ କଲେନାହିଁ । ରେଙ୍ଗୁନ୍ ଫେରିଆସିବା ପାଇଁ ବାହୁଡ଼ା-ଯାତ୍ରା ଆରମ୍ଭ ହେଲା । ନେତାଜୀ ସୈନ୍ୟବାହିନୀ ନେଇ ପ୍ରତ୍ୟାବର୍ତ୍ତନ କଲେ । ଲକ୍ଷ୍ୟ ଥିଲା, ବର୍ଷା ପରେ ପରେ ଅନୁକୂଳ ପାଗ ଆରମ୍ଭ ହେଲେ ପୁଣିଥରେ ଆକ୍ରମଣ ଚାଲିବ ।

ରେଙ୍ଗୁନରେ ସେତେବେଳେ 'ନେତାଜୀ ସପ୍ତାହ' ପାଳନ କରାଯାଉଥାଏ । ନେତାଜୀଙ୍କ ପ୍ରତି ଆବାଳବୃଦ୍ଧବନିତା ସମସ୍ତଙ୍କର ଉଚ୍ଛ୍ୱସିତ ସମ୍ମାନ । ସମସ୍ତେ ଉଦ୍‌ବୁଦ୍ଧ···ସ୍ୱାଧୀନତାର ମନ୍ତ୍ରରେ ସମସ୍ତ ଭାରତୀୟ ଅଭିମନ୍ତ୍ରିତ । ଭାରତୀୟ ଜାତୀୟବାହିନୀ ଓ ଝାନ୍ସି ରାଣୀ ବାହିନୀକୁ ସାହାଯ୍ୟ କରିବା ପାଇଁ ଗଠିତ ହେଲା ଏକ ବାଲସେନାବାହିନୀ । ସେଥିରେ ନବୀନ କିଶୋରକିଶୋରୀମାନେ ଅନ୍ତର୍ଭୁକ୍ତ ହେଲେ । ସେମାନଙ୍କର କାମ ହେଲା ଜାତୀୟ-ବାହିନୀ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା । ସେମାନଙ୍କୁ ପ୍ରେରଣା ଦେବା, ସେମାନଙ୍କ ପାଇଁ ଏକ ମନସ୍ତାତ୍ତ୍ୱିକ ଭିତ୍ତିଭୂମି ପ୍ରସ୍ତୁତ କରିବା । ଆବଶ୍ୟକ ପଡ଼ିଲେ ସେମାନଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ କରିବା ।

ଆଜାଦ ହିନ୍ଦ୍ ସରକାର ଏକ 'ସମର ପରିଷଦ' ଗଠନ କଲେ । ସେଥିରେ ମେଜର ଜେନେରାଲ ଶାହନଓ୍ୱାଜ ଖାଁଙ୍କୁ ମୁଖ୍ୟ ସ୍ଥାନ ଦିଆଗଲା । ତାଙ୍କର ଅଧିନାୟକତ୍ୱରେ ସେନାବାହିନୀ ପରିଚାଳିତ ହେବାପାଇଁ ସ୍ଥିର ହେଲା ।

୧୯୪୪ ମସିହା ଅଗଷ୍ଟ ୧୩ ତାରିଖ ।

ନେତାଜୀ ସୁଭାଷଚନ୍ଦ୍ର ଭାରତୀୟ ଜାତୀୟ ବାହିନୀ ବାହିନୀ ଇମ୍ଫାଲର ରଣଭୂମିରୁ ପ୍ରତ୍ୟାବର୍ତ୍ତନ କଲେ ସେ ପ୍ରସଙ୍ଗରେ ଏକ ଭାଷଣ ଦେବାକୁ ଯାଇ କହିଲେ :

"ବନ୍ଧୁଗଣ ! ଆମେ ଆମର ଅଭିଯାନ ଆରମ୍ଭ କରିବାରେ ବିଳମ୍ବ ହୋଇଗଲା । ମୌସୁମୀ ବର୍ଷା ଥିଲା ଆଗତପ୍ରାୟ । ବର୍ଷା ଆରମ୍ଭ ହେବା ଫଳରେ ଆମକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ଆମେ ଯେଉଁ ପଥଦେଇ ଅଗ୍ରସର ହୋଇଥିଲୁ ତାହା ଜଳମଗ୍ନ ହୋଇଗଲା । ନଦୀ ନାଳର ପ୍ରଖର ସ୍ରୋତକୁ ଅତିକ୍ରମ କରିବା ପାଇଁ ଆମେ ଯଥେଷ୍ଟ ସୁଯୋଗ ତଥା ସୁବିଧା ପାଇଲୁ ନାହିଁ । ସ୍ରୋତର ପ୍ରତିକୂଳତା ଆମକୁ ବାଧା ଦେଲା ।

"ଶତ୍ରୁ ସେନାବାହିନୀ ପାଇଁ ପରିସ୍ଥିତି ଥିଲା ଆମ ଅପେକ୍ଷା ଅନୁକୂଳ । ଆମ ରାସ୍ତା ଅପେକ୍ଷା ସେମାନଙ୍କର ରାସ୍ତା ଥିଲା ଯଥେଷ୍ଟ ଉନ୍ନତ । ବର୍ଷା ଦ୍ୱାରା ଯୋଗାଯୋଗ

ସେମାନଙ୍କର ବ୍ୟାହତ ହେଉନାହିଁ । ସେମାନଙ୍କ ପାଖରେ ଠିକ୍ ସମୟରେ ଆବଶ୍ୟକ ରସଦ୍ ଯାଇ ପହଞ୍ଚିପାରୁଥିଲା । କ୍ଷୁଧା-ତୃଷ୍ଣାର ତାଡ଼ନା ସେମାନଙ୍କୁ ଭୋଗ କରିବାକୁ ପଡ଼ିଲା ନାହିଁ । ପ୍ରକୃତିର ପ୍ରତିକୂଳତା ସେମାନଙ୍କର ପ୍ରସ୍ତୁତିକୁ ପ୍ରତିହତ କରି ପାରିଲା ନାହିଁ ।

"ବର୍ଷା ଆସିଯିବା ପୂର୍ବରୁ ଆମେ ଇମ୍ଫାଲ ଜୟ କରି ପାରିବୁ ବୋଲି ଦୃଢ଼ ସଂକଳ୍ପ ପୋଷଣ କରିଥିଲୁ । ତାହା କିନ୍ତୁ ସମ୍ଭବ ହେଲ ନାହିଁ । ଆମ ହାତରେ ଉନ୍ନତ ଅସ୍ତ୍ରଶସ୍ତ୍ର, ଯାନସରଞ୍ଜାମ ଓ ଆକାଶବାହିନୀ ଥିଲେ ଆମେ ନିଶ୍ଚୟ ଲକ୍ଷ୍ୟ ପୂରଣ କରିପାରିଥାନ୍ତୁ । ଇଂରେଜ ସରକାର ଇମ୍ଫାଲକୁ ଆମ ହାତରୁ ରକ୍ଷା କରିବା ପାଇଁ ତାର ସମସ୍ତ ଶକ୍ତି ସେଠାରେ ଠୁଳ କରିଥିଲା ।

"ବର୍ଷା ସମୟ ବ୍ୟତୀତ ଆମେ ଯଦି ଅନ୍ୟ କୌଣସି ମାସରେ ଏହି ଅଭିଯାନ ଆରମ୍ଭ କରିଥାନ୍ତୁ ତା'ହେଲେ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଆମକୁ ପଡ଼ିନଥାନ୍ତା ଓ ଆମେ ନିଶ୍ଚୟ ଜୟଲାଭ କରିଥାନ୍ତୁ । ଆମର ବର୍ତ୍ତମାନ ୮ଟି ସେକ୍ଟରରେ ଯୁଦ୍ଧ ଚାଲିଛି । ପ୍ରକୃତିର ଆଶୀର୍ବାଦ ମିଳିଥିଲେ ଆମେ ହୁଏତ ଶତ୍ରୁମାନଙ୍କର ଅଗ୍ରଗତିକୁ ରୋକିଦେଇ-ପାରିଥାନ୍ତୁ କିମ୍ବା ସେମାନଙ୍କୁ ପରାସ୍ତ କରି ଆଗେଇ ଯାଇପାରିଥାନ୍ତୁ । ଆରାକାନ୍ ସେକ୍ଟରରେ ଶତ୍ରୁସେନାଙ୍କର ଅଗ୍ରଗତି ରୋକାଯାଇପାରିଥିଲା । କାଲାଜାନ୍ ସେକ୍ଟରରେ ଆମେ ଶତ୍ରୁ-ସେନାଙ୍କୁ ଅତିକ୍ରମ କରି ଆଗେଇଯାଇଥିଲୁ । ଟିଡମ୍ ସେକ୍ଟରରେ ମଧ୍ୟ ଆମର ଅଗ୍ରଗତି ଥିଲା ସନ୍ତୋଷଜନକ । ପଲେଲ୍ ଏବଂ କୋହିମା ସେକ୍ଟରରେ ଆମେ ଆଗେଇଥିଲୁ । ହାକା ସେକ୍ଟରରେ ଆମେ ଶତ୍ରୁସେନାଙ୍କୁ ପ୍ରତିରୋଧ କରିଥିଲୁ । ଶତ୍ରୁପକ୍ଷ ସମସ୍ତ ସୁବିଧା ସୁଯୋଗ ପାଇ ମଧ୍ୟ ସେମାନଙ୍କର ସ୍ଥିତି ଥିଲା ଶୋଚନୀୟ ।

"ବର୍ଷା ଫଳରେ ଆମେ ଯେଉଁ ଦୁର୍ଯୋଗର ସମ୍ମୁଖୀନ ହେଲୁ, ସେହି ଦୃଷ୍ଟିରୁ ଇମ୍ଫାଲ ଅଧିକାର କରିବାର ଯୋଜନା ଆମର ବ୍ୟାହତ ହେଲା । ଶତ୍ରୁପକ୍ଷ ଇମ୍ଫାଲ-କୋହିମା ରାସ୍ତା ଅବରୁଦ୍ଧ କରିଦେବାର ସୁଯୋଗ ପାଇଲେ । ସେ ପରିସ୍ଥିତିରେ ଆମକୁ ହୁଏତ ବିଷନପୁର-ପଲେଲ୍ ଲାଇନ୍ ଅବରୁଦ୍ଧ କରିବାକୁ ପଡ଼ିଥାନ୍ତା କିମ୍ବା ଫେରିଆସି ଅଧିକ ନିରାପଦ ସ୍ଥିତିପାଇଁ ବ୍ୟବସ୍ଥା କରିବାକୁ ହୋଇଥାନ୍ତା ।

"ଏହି ଅଭିଯାନରୁ ଆମେ ଯେ କିଛି ଶିକ୍ଷା କରିନାହୁଁ ତା ନୁହେଁ । ଆମେ ବହୁ ନୂତନ ଅଭିଜ୍ଞତା ତଥା ଅନୁଭୂତି ଅର୍ଜନ କରିଛୁ । ଭବିଷ୍ୟତ ଅଭିଯାନ ପାଇଁ ଏହା ଆମର ସହାୟକ ହେବ । ଆମର ଆତ୍ମବିଶ୍ୱାସ ତଥା ମନୋବଳ ବଢ଼ିଛି । ଶତ୍ରୁମାନଙ୍କୁ ଚିହ୍ନିବାର ସୁଯୋଗ ଆମକୁ ମିଳିଛି । ସେମାନଙ୍କର କୌଶଳ ବିଷୟରେ ଆମେ କିଛି ନା କିଛି ଧାରଣା ପାଇଛୁ । ସବୁଠାରୁ ବଳି ଆମମାନଙ୍କୁ ଏକ ମୂଲ୍ୟବାନ ଜିନିଷ ମିଳିଛି; ତା' ହେଉଛି ଶତ୍ରୁସେନାର ଗୁପ୍ତ ଦଲିଲ ଓ କାଗଜପତ୍ର । ଆମର ସେନାପତିମାନେ ଏ

ଯୁଦ୍ଧରୁ ଯେଉଁ ନୂତନ ଅନୁଭୂତି ଲାଭ କରିଛନ୍ତି ତାହା ଆମ ପାଇଁ ପ୍ରକୃତରେ ଅମୂଲ୍ୟ । ଅଭିଯାନ ଆରମ୍ଭ ସମୟରେ ଜାପାନୀ ସେନାବାହିନୀର ଆମ ଉପରେ ବିଶ୍ୱାସ ନ ଥିଲା ଯେ ଆମେ ଯୁଦ୍ଧ କରିବାକୁ ତାଙ୍କ ସହିତ ସମର୍ଥ ହେବୁ; କିନ୍ତୁ ସମ୍ମୁଖ ଭାଗରେ ଆମ ବାହିନୀ ଯୁଦ୍ଧ କରିବାକୁ ମୁଁ ଅଡ଼ିବସିଲି । ତାହାହିଁ ହେଲା ଏବଂ ଆମର ଯୁଦ୍ଧକୌଶଳ ଜାପାନୀମାନଙ୍କୁ ମଧ୍ୟ ଚମତ୍କୃତ କରିଥିଲା । ଆମେ ଆମର ଯୁଦ୍ଧକୌଶଳକୁ ଆହୁରି ଫଳପ୍ରଦ କରିବା ପାଇଁ ବହୁ ନୂତନ ପଦକ୍ଷେପ ଗ୍ରହଣ କରିଛୁ ଓ ଅନେକ ସଂସ୍କାର ଆଣିଛୁ । ଆଶା, ତାହା ସୁଫଳ ଦେବ ।"

ଅତି ଦୁଃଖର ବିଷୟ, ଆଜାଦ ହିନ୍ଦ୍ ଫୌଜ ଭିତରେ ହଠାତ୍ ଏକ ଫାଟ ସୃଷ୍ଟି ହେଲା । କେତେଜଣ ଅଫିସର ଏବଂ ସୈନ୍ୟ ବିଶ୍ୱାସଘାତକତା କରି ଆଭ୍ୟନ୍ତରୀଣ ଶୃଙ୍ଖଳାରେ ବାଧାଦେଲେ । ଏହି ଦୁଃଖାବହ ପରିସ୍ଥିତିକୁ ଲକ୍ଷ୍ୟକରି ନେତାଜୀ କହିଥିଲେ :

"ବଂଧୁଗଣ ! ଆପଣମାନେ ଜାଣନ୍ତି ଗତବର୍ଷ ଆଜାଦ୍ ହିନ୍ଦ୍ ଫୌଜର ଅଫିସର ତଥା ସୈନ୍ୟଗଣ ଅପୂର୍ବ ବୀରତ୍ୱର ସହିତ ସଂଗ୍ରାମ କରି ଶତ୍ରୁସେନାମାନଙ୍କୁ ପରାସ୍ତ କରିଥିଲେ । ସେମାନଙ୍କର ସ୍ୱଦେଶପ୍ରେମ, ବୀରତ୍ୱ ତଥା ଆତ୍ମତ୍ୟାଗର ପଟାନ୍ତର ନାହିଁ । ଅତି ଦୁଃଖର ସହିତ ଜଣାଇବାକୁ ପଡ଼ୁଛି ଯେ କେତେଜଣ ମୁଷ୍ଟିମେୟ ଭୀରୁ ଅଫିସର ଓ ବ୍ୟକ୍ତିବିଶେଷ ବିଶ୍ୱାସଘାତକତା କରି ସେହି ସୁନାମରେ ଆଞ୍ଚ ଆଣିଛନ୍ତି । ଆମେ ଆଶା କରୁଛୁ, ନୂତନ ବର୍ଷର ଆଗମନ ଆମ ପାଇଁ ସ୍ୱାଗତଯୋଗ୍ୟ ତଥା ସମ୍ଭାବନାମୟ ହେବ । ସମସ୍ତ ପ୍ରକାରର ଆଭ୍ୟନ୍ତରୀଣ ଦୁର୍ବଳତାର ମୂଳପୋଛ କରାଯାଇ ପାରିବ । ଚଳିତ ବର୍ଷ ଆଜାଦ ହିନ୍ଦ୍ ଫୌଜ ଅଭୁତପୂର୍ବ ବୀରତ୍ୱ ଓ ତ୍ୟାଗର ପରାକାଷ୍ଠା ପ୍ରକାଶ କରିପାରିବ ବୋଲି ଯେଉଁ ଆଶା କରାଯାଇଥିଲା, ତାହା ସମ୍ଭବ ହୋଇପାରିଲା ନାହିଁ । ଆଜାଦ ହିନ୍ଦ୍ ଫୌଜର ଦ୍ୱିତୀୟ ଡିଭିଜନର ପାଞ୍ଚଜଣ ଅଫିସରଙ୍କ ବିଶ୍ୱାସଘାତକତା ଆମ୍ଭମାନଙ୍କର ଆଖି ଖୋଲିଦେଇଛି । ଅନ୍ତର୍ନିହିତ ସାମରିକ ବିନ୍ୟାସର ନବୀକରଣ ଆବଶ୍ୟକ । ବିଶ୍ୱାସଘାତକତା ତଥା ଦୁର୍ବଳତାକୁ ଆମେ ଯଦି ମୂଳପୋଛ କରିପାରିବା ତା'ହେଲେ ଏହା ପ୍ରକାରାନ୍ତରେ ଈଶ୍ୱରଙ୍କର ଆଶୀର୍ବାଦ ବୋଲି ଭାବିବାକୁ ହେବ ।

ଆମ ସେନାବାହିନୀର ନିର୍ମଳ ଭାବମୂର୍ତ୍ତି ଗଠନ ଦିଗରେ ମୁଁ ସମସ୍ତ ସମ୍ଭାବ୍ୟ ପଦକ୍ଷେପ ନେବି । ମୋର ଆଶା, ଆପଣମାନେ ମୋତେ ଏ ଦିଗରେ ସହଯୋଗ କରିବେ ।"

ଇଂରେଜମାନେ ନୂତନ ଶକ୍ତିସମ୍ଭାର ନେଇ ରେଙ୍ଗୁନ୍ ଆଡ଼କୁ ଆଗେଇଥାନ୍ତି । ସେମାନେ ମାଣ୍ଡାଲେ ଦେଇ ଗତିକରୁଥାନ୍ତି ବିଜୟ-ଦର୍ପରେ । ଆଜାଦ ହିନ୍ଦ୍ ଫୌଜ ତାଙ୍କ ଅଗ୍ରଗତିରେ ବାଧା ସୃଷ୍ଟି କରି ଚରମ ସାହସିକତା ମଧ୍ୟରେ ଯୁଦ୍ଧ କରୁଥାଏ । ଜାତୀୟ ବାହିନୀର ବୀରତ୍ୱ ମିତ୍ରଶକ୍ତିକୁ ବିସ୍ମିତ କରିଥିଲେ ମଧ୍ୟ ପ୍ରତିହତ କରିବାର

ସାମର୍ଥ୍ୟ ତାର ନଥିଲା । ଇଂରେଜମାନେ ଯେକୌଣସିମତେ ରେଙ୍ଗୁନରେ ପହଞ୍ଚିବାକୁ ଆପ୍ରାଣ ଉଦ୍ୟମ ଚଳାଇଥିଲେ ।

ଭାରତୀୟ ଜାତୀୟ ବାହିନୀକୁ ଏଠାରୁ କୌଣସି ଏକ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରିବା ବ୍ୟତୀତ ଅନ୍ୟ ଗତି କିଛି ନଥିଲା । ନେତାଜୀ ସୁଭାଷ ଇଂରେଜ ବାହିନୀ ହାତରେ ପଡ଼ିବା ପୂର୍ବରୁ ରେଙ୍ଗୁନ ତ୍ୟାଗ କରି ଚାଲିଯିବାର ଆବଶ୍ୟକତା ରହିଛି । ହାତରେ ଆଉ ସମୟ ନାହିଁ । ଦୁର୍ଦ୍ଧର୍ଷ ଶତ୍ରୁସେନା ମାଡ଼ିଆସୁଛି । ଉପସ୍ଥିତ ବୁଦ୍ଧି କୌଶଳ ପ୍ରୟୋଗ-କରି ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ ହେବାକୁ ପଡ଼ିବ । ନେତାଜୀଙ୍କ ପାଇଁ ସବୁଠାରୁ ବଳି ଚିନ୍ତାର ବିଷୟ ଥିଲା ଝାନସୀରାଣୀ ବାହିନୀର ବୀରାଙ୍ଗନାମାନଙ୍କର ନିରାପତ୍ତା ରକ୍ଷା । ସେମାନଙ୍କୁ ପ୍ରଥମେ କୌଣସି ନିରାପଦ ଅଞ୍ଚଳକୁ ସ୍ଥାନାନ୍ତରିତ କରିବା ଉପସ୍ଥିତ କ୍ଷେତ୍ରରେ ସବୁଠାରୁ ବଳି ପ୍ରଥମ କର୍ତ୍ତବ୍ୟ ।

ଆଜାଦ୍ ହିନ୍ଦ୍ ଅସ୍ଥାୟୀ ସରକାର ଏକ ଜରୁରୀ ବୈଠକରେ ନେତାଜୀଙ୍କର ରେଙ୍ଗୁନ ଛାଡ଼ିବା ବିଷୟରେ ସିଦ୍ଧାନ୍ତ ନେଲେ । ନେତାଜୀ ପ୍ରଥମେ ଏ ପ୍ରସ୍ତାବରେ ଅସମ୍ମତ ଥିଲେ ମଧ୍ୟ ପରେ ପରିସ୍ଥିତିର ଗୁରୁତ୍ୱକୁ ଅନୁଭବ କରି ସମ୍ମତ ହେଲେ । ସ୍ଥିର ହେଲା, ସେ ବ୍ୟାଙ୍କକ୍ ଦେଇ ସିଙ୍ଗାପୁର ଯିବେ ।

୧୯୪୫ ମସିହା ଏପ୍ରିଲ ୨୪ ତାରିଖ । ଯିବା ପୂର୍ବରୁ ସେ ଏକ ଉଦ୍‌ବୋଧନ ଦେଇ ଅଶ୍ରୁଭରା ଆବେଗପୂର୍ଣ୍ଣ କଣ୍ଠରେ କହିଥିଲେ :

"ହେ ମୋର ପ୍ରିୟ ଆଜାଦ ହିନ୍ଦ୍ ଫୌଜର ବୀର ସୈନିକଗଣ !

"ମୁଁ ଆଜି ଗଭୀର ଦୁଃଖାବେଗ ଭିତରେ ବର୍ମାରୁ ବିଦାୟ ନେଉଛି । ୧୯୪୪ ମସିହା ଫେବୃଆରି ମାସଠାରୁ ତୁମେମାନେ ବୀରତ୍ୱର ସହିତ ଯେପରି ଲଢ଼ିଛ; ତାହା ଆଜି ବି ମୋ ଆଖି ଆଗରେ ନାଚଉଠୁଛି । ସ୍ୱାଧୀନତା ପାଇଁ ଆମେ ବର୍ମା ଓ ଇମ୍ଫାଲ୍‌ରେ ପ୍ରଥମ ଥର-ପାଇଁ ସଂଗ୍ରାମରେ ଆଶାନୁରୂପ ସଫଳତା ହାସଲ କରିପାରିଲେନାହିଁ; ଏଥିରେ ବ୍ୟସ୍ତ ହେବାର କିଛି ନାହିଁ । ଆମକୁ ଆହୁରି ଅନେକ ପଥ ଅତିକ୍ରମ କରିବାକୁ ଅଛି । ସଂଗ୍ରାମ ଆମର ସରିନାହିଁ । ମୁଁ ସର୍ବଦା ଆଶାବାଦୀ । ଯେକୌଣସି ପରିସ୍ଥିତି ହେଉନା କାହିଁକି, ପରାଜୟ ମାନିନେବାକୁ ମୁଁ ପ୍ରସ୍ତୁତ ନୁହେଁ ।

"ବନ୍ଧୁଗଣ ! ଆଜିର ଏହି ବିଦାୟ-ବାର୍ତ୍ତାରେ ମୋର ଗୋଟାଏ ନିର୍ଦ୍ଦେଶ ଅଛି; ତାହା ମାନିବାକୁ ହେବ । ଆମେ ଏକ ସଙ୍କଟସନ୍ଧି ମୁହୂର୍ତ୍ତରେ ପହଞ୍ଚିଛେ; ସାମୟିକ ବିଫଳତା ପାଇଁ ଆତ୍ମସମର୍ପଣ କରିବାର ପ୍ରଶ୍ନ ଉଠୁନି । ସାବଧାନ ଢଙ୍ଗରେ ସମ୍ମାନକୁ ବଜାୟ ରଖିବାକୁ ହେବ । ଭାରତର ଭାବୀ ବଂଶଧର ପରାଧୀନତାର ବେଡ଼ି ପିନ୍ଧି ଜନ୍ମଗ୍ରହଣ କରିବେ ନାହିଁ··· ସେମାନେ ଜନ୍ମ ନେବେ ସ୍ୱାଧୀନ ଭାରତର ନାଗରିକ ଭାବରେ । ଆଜିର ବିଫଳତା ଆଗାମୀ ସଫଳତାର ସୋପାନରୂପେ ଯେ କାର୍ଯ୍ୟ କରିବ ଏବଂ ଆମେ ଯେ ନିଶ୍ଚିତ ଭାବରେ

ବିଜୟମଣ୍ଡିତ ହେବ। ଏଥିରେ ସନ୍ଦେହ ନାହିଁ ଏବଂ ଏହାହିଁ ହେବ ସେମାନଙ୍କ ପାଇଁ ସ୍ୱାଧୀନତା ଇତିହାସର ସର୍ବୋତ୍ତମ ଅଧ୍ୟାୟ ଏବଂ ପ୍ରେରଣାର ଉତ୍ସ ।

"ଭାରତ ମୁକ୍ତିଲାଭ କରିବ···ମୋର ଏ ଅଟଳ ବିଶ୍ୱାସ ଅପରିବର୍ତ୍ତନୀୟ । ମୁଁ ତୁମମାନଙ୍କ ହାତରେ ଭାରତର ଜାତୀୟ ପତାକା ଓ ଭାରତୀୟ ଯୋଦ୍ଧ ବୃନ୍ଦଙ୍କର ମହାନ୍ ପରମ୍ପରାର ସୁରକ୍ଷାଭାର ଅର୍ପଣ କରୁଛି । ଯେକୌଣସି ପରିସ୍ଥିତି ଆସୁନା କାହିଁକି, ଜନ୍ମଭୂମିର ମୁକ୍ତିପାଇଁ ତୁମେମାନେ ଯେ ସର୍ବସ୍ୱ ତ୍ୟାଗ କରିପାରିବ, ଜାତୀୟ ସମ୍ମାନ ରକ୍ଷାପାଇଁ ଜୀବନ ଉତ୍ସର୍ଗ କରିବାକୁ ପଛେଇବ ନାହିଁ···ଏ ବିଶ୍ୱାସ ମୋର ଅଛି ଏବଂ ଏହାହିଁ ହେବ ଅନ୍ୟ ଅଞ୍ଚଳରେ ଯୁଦ୍ଧରେ ବ୍ୟାପୃତ ଥିବା ବନ୍ଧୁମାନଙ୍କ ପାଇଁ ଚରମ ପ୍ରେରଣାର ପାଥେୟ ।

"ଆଜି ଯଦି ସୁଯୋଗ ଥାଆନ୍ତା ତା'ହେଲେ ମୁଁ ତୁମ ଗହଣରେ ଏ ସାମୟିକ ବିପତ୍ତି ବେଳେ ରହିଥାନ୍ତି ଓ ତୁମର ସୁଖ-ଦୁଃଖର ଅଂଶୀଦାର ହୋଇଥାନ୍ତି । କିନ୍ତୁ ମୋର ମନ୍ତ୍ରୀ ତଥା ତୁଙ୍ଗ ଅଫିସରମାନଙ୍କର ଉପଦେଶକୁ ଗ୍ରହଣ କରିବାକୁ ମୁଁ ସମୀଚୀନ ମନେକରି ବର୍ମା ଛାଡ଼ିବାକୁ ହେଉଛି । ମୁକ୍ତି-ସଂଗ୍ରାମକୁ ଅବ୍ୟାହତ ରଖିବା ଦିଗରେ ଏହି ସ୍ଥାନପରିବର୍ତ୍ତନ ସହାୟକ ହେବ । ମୁଁ ଜାଣିଛି, ମୋର ଦେଶବାସୀ ଯେଉଁଠାରେ ଥାଆନ୍ତୁ ନା କାହିଁକି ଏବଂ ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହୁଅନ୍ତୁ ନା କାହିଁକି, ସେମାନେ ମାତୃଭୂମିର ମୁକ୍ତି-ସଂଗ୍ରାମ ଚଳାଇ ରଖିବେ ଏବଂ ତୁମମାନଙ୍କର ଆଜିର ଏଇ ଦୁଃଖଯନ୍ତ୍ରଣା ନିଶ୍ଚୟ ସାର୍ଥକ ହେବ । ଭାରତର ୩୮ କୋଟି ଭାଇଭଉଣୀଙ୍କର ମୁକ୍ତିପାଇଁ ମୁଁ ଯେଉଁ ଶପଥ ନେଇଛି, ତାହାହିଁ ମୋ ଜୀବନର ଏକମାତ୍ର ବ୍ରତ । ସର୍ବଶେଷରେ ମୋର ତୁମମାନଙ୍କ ପାଇଁ ନମ୍ର ନିବେଦନ, ତୁମେମାନେ ମୋ'ପରି ଆଶାବାଦୀ ହୁଅ ଓ ବିଶ୍ୱାସ ରଖ ଯେ ଅନ୍ଧକାର ହିଁ ଆଲୋକର ଜନନୀ । ଭାରତ ନିଶ୍ଚୟ ସ୍ୱାଧୀନତା ଲାଭ କରିବ ଏବଂ ଅଚିରେ ଲାଭ କରିବ ।"

"ବର୍ମାରେ ଥିବା ମୋର ଭାରତୀୟ ଓ ବର୍ମୀୟ ବନ୍ଧୁଗଣ !

"ଗଭୀର ମର୍ମବେଦନା ନେଇ ମୁଁ ଆପଣମାନଙ୍କଠାରୁ ଆଜି ବିଦାୟ ନେଉଛି । ଆମର ସାମୟିକ ବିଫଳତାରେ ନିରାଶ ହେବାର କୌଣସି କାରଣ ନାହିଁ । ଏଠାରେ ଥିବା ଭାରତୀୟ ବନ୍ଧୁମାନେ ଓ ସ୍ଥାନୀୟ ଅଧିବାସୀ ମୋତେ ଯେପରି ଭାବରେ ସାହାଯ୍ୟ ତଥା ସହଯୋଗ ଦେଇଛନ୍ତି ତାହା ଭାଷାତୀତ ଓ ଅବିସ୍ମରଣୀୟ ।

"ଆପଣମାନଙ୍କ ନିଃସ୍ୱାର୍ଥ ତ୍ୟାଗ ମୋତେ ଉଦ୍‌ବୁଦ୍ଧ କରିଛି; ଯାହା କି ଚିରଦିନ ପାଇଁ ମୋର ସ୍ମୃତିର ପାଥେୟ ହୋଇ ରହିବ । ଆମେ ସେହି ସୁଯୋଗ ଓ ସୁଦିନର ଅପେକ୍ଷାରେ ଅଛୁ, ଯେତେବେଳେ ପୁଣି ଥରେ ଏଠାରେ ରଣମଞ୍ଚରେ ଅବତୀର୍ଣ୍ଣ ହେବୁ ଏବଂ ଆପଣ-ମାନଙ୍କର ଆଜିର ସହଯୋଗ ଆମେ ମଧ୍ୟ ସେଦିନ ଭିକ୍ଷାକରିବୁ ।

"ଯେତେବେଳେ ଭାରତୀୟ ମୁକ୍ତି-ସଂଗ୍ରାମର ଇତିହାସ ଲେଖାହେବ, ସେତେବେଳେ ବର୍ମାରେ ଥିବା ଭାରତୀୟମାନଙ୍କର ତ୍ୟାଗ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ବର୍ମା

ସରକାର ଏବଂ ଜନସାଧାରଣ ଯେଉଁ ଅକୁଣ୍ଠ ସାହାଯ୍ୟ, ସହାନୁଭୂତି, ସହଯୋଗ ତଥା ଅମ୍ଳାନ ହାର୍ଦ୍ଦିକତା ଦାନ କରିଛନ୍ତି, ସେଥିପାଇଁ ମୁଁ ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି, ସେହି ମହନୀୟ ଦିବସ ଆମ ପାଖକୁ ଫେରିଆସୁ ଓ ଭାରତ ତାର ବିପଦର ସାଥୀମାନଙ୍କୁ ଆନ୍ତରିକ ମହତ୍ତ୍ୱର ଢଙ୍ଗରେ କୃତଜ୍ଞତାର ଋଣ ପରିଶୋଧ କରୁ । ଇନ୍ କିଲାବ ଜିନ୍ଦାବାଦ୍, ଆଜାଦ ହିନ୍ଦ୍ ଜିନ୍ଦାବାଦ୍ ।

ଜୟ ହିନ୍ଦ୍"

୧୯୪୫ ମସିହା ଅପ୍ରେଲ ୨୪ ତାରିଖ ଥିଲା ଭାରତୀୟ ଜାତୀୟ ବାହିନୀ ପାଇଁ ଏକ ସ୍ମରଣୀୟ ଦିବସ । ବିନତମାମ ଚାଲିଥାଏ ପ୍ରସ୍ତୁତି-ପର୍ବ । ନେତାଜୀଙ୍କର ଜିଦ୍...ସେ ଏକାକୀ ଯିବେ ନାହିଁ । ତାଙ୍କ ସହିତ ତାଙ୍କର କେତେକ ଅତ୍ୟନ୍ତ ବିଶ୍ୱସ୍ତ ଅଫିସର, ଝାନ୍ସିରାଣୀ ବାହିନୀର ବୀରାଙ୍ଗନାମାନେ ନିଶ୍ଚୟ ଯିବେ । ରେଙ୍ଗୁନ ଛାଡ଼ିବା ପାଇଁ ଯେତିକ ବିଳମ୍ବ ହେବ, ନେତାଜୀଙ୍କ ଜୀବନ ସେତିକ ବିପନ୍ନ ହେବ । ଇଂରେଜ ସୈନ୍ୟମାନେ ମାଡ଼ିଆସୁଥାନ୍ତି । ରେଙ୍ଗୁନ୍‌ରେ ରହିଯିବା ଅର୍ଥ ଇଂରେଜ ସୈନ୍ୟବାହିନୀ ହାତରେ ପଡ଼ି ହୁଏତ ମୃତ୍ୟୁବରଣ କରିବାକୁ ହେବ କିମ୍ବା ବନ୍ଦୀ ହୋଇ ବ୍ରିଟିଶ ଶାସକର କାରାଗାରରେ ସ୍ୱାଧୀନତାର ସ୍ୱପ୍ନଫସଲକୁ ଉଜାଡ଼ି ଦେବାକୁ ହେବ ।

ଆଜାଦ୍ ହିନ୍ଦ୍ ଅସ୍ଥାୟୀ ସରକାରର ମନ୍ତ୍ରୀମାନଙ୍କ ମଧ୍ୟରେ ଚରମ ଉଦ୍‌ବେଗ : ନେତାଜୀଙ୍କୁ କୌଣସିମତେ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ ନକଲେ ରକ୍ଷା ନାହିଁ ।

ଶତ୍ରୁହସ୍ତରେ ଯେପରି କୌଣସି ଅସ୍ତ୍ରଶସ୍ତ୍ର କିମ୍ବା ଗୁପ୍ତ ରେକର୍ଡ଼ପତ୍ର ନ ପଡ଼ିବ, ସେଥିପାଇଁ ବ୍ୟବସ୍ଥା କରାଗଲା । ନେତାଜୀ ଓ ଆଉ ସମସ୍ତେ ସ୍ଥାନାନ୍ତରିତ ହେବାପାଇଁ କେତୋଟି ଟ୍ରକ ଓ ବସ୍‌ର ବ୍ୟବସ୍ଥା ହେଲା । ରାତି ସେତେବେଳକୁ ଘନେଇ ଆସିଲଣି; ଆକାଶରେ ତାରାମାନେ ବିଦାୟ-ବର୍ତ୍ତିକା ଜାଳିଲେଣି । ପରିବେଶ ଗମ୍ଭୀର ହୋଇ-ଉଠିଲଣି । ମନ ଭିତରେ ଆବେଗ ତଥା ଉଦ୍‌ବେଗର ପଦଧ୍ୱନି । ଅନିଶ୍ଚିତତା ଭିତରେ ଅନେକଙ୍କୁ ଛାଡ଼ିଯିବାକୁ ହେଉଛି ଓ ଅନିଶ୍ଚିତତା ଭିତରକୁ ଅନେକଙ୍କୁ ଟାଣିନେବାକୁ ହେଉଛି ।

ବିଦାୟ-ପର୍ବ ଆରମ୍ଭ ହେଲା ।

ଅନ୍ଧକାରର ସ୍ତର ସ୍ତର ଆବରଣ ଭେଦକରି ଗାଡ଼ି ଆଗକୁ ମାଡ଼ିଚାଲିଥାଏ । ସତେ ଅବା ଭାରତର ଭାଗ୍ୟକୁ ବହନ କରି ଏ ଗାଡ଼ିଗୁଡ଼ିକ ଚାଲିଛି ଜଣେ ତପୋନିଷ୍ଠ ଅଟଳ ସନ୍ନ୍ୟାସୀଙ୍କୁ ତପୋଭୂମିରେ ପହଞ୍ଚାଇ ଦେବବୋଲି ।

ବିଦାୟୀ ଦଳ ମଧ୍ୟରେ ଅଛନ୍ତି ନେତାଜୀ ସୁଭାଷ ବୋଷ, କେତେଜଣ ଅସ୍ଥାୟୀ ସରକାରର କ୍ୟାବିନେଟ ପାହ୍ୟାର ମନ୍ତ୍ରୀ, ଭାରତୀୟ ଜାତୀୟ ବାହିନୀ (I. N. A.)ର

କେତେଜଣ କମାଣ୍ଡର ଏବଂ ଝାନ୍‌ସିରାଣୀ ବାହିନୀର ବୀରାଙ୍ଗନାମାନେ । ସମସ୍ତେ ରେଙ୍ଗୁନ୍‌ରୁ ବ୍ୟାଙ୍କକ୍ ପଥର ଯାତ୍ରୀ···ବହୁ ଦୀର୍ଘ ପଥ ଅତିକ୍ରମ କରିବାକୁ ହେବ ।

ଗାଡ଼ି ଅଧିକ ଦୂର୍ ଯାଇପାରିଲା ନାହିଁ ।

ନେତାଜୀ ସମସ୍ତଙ୍କ ଗହଣରେ ଆଗେଇଲେ ପଦବ୍ରଜରେ । ବଣଜଙ୍ଗଲ ଭିତରେ କଣ୍ଟା, ଖୁଣ୍ଟା ସହିତ ସଂଘର୍ଷ କରି ଆଗେଇବାକୁ ହେଲା । କ୍ଷତାକ୍ତ ପାଦରୁ ଝରୁଥିଲା ଝରଝର ରକ୍ତ । ଗିରିନିର୍ଝରିଣୀର ଜଳ ପାନକରି କ୍ଷୁଧା ତୃଷା ଦୂରକରିବାକୁ ହେଲା । ଆକାଶରେ ଶତ୍ରୁପକ୍ଷର ଉଡ଼ାଜାହାଜ । ମଝିରେ ମଝିରେ ଗୁଳିଗୁଳା ବର୍ଷଣ ହେଉଛି । ବଣଜଙ୍ଗଲ, ଗଛଲତା, ପାହାଡ଼, ପର୍ବତ, ନଦୀନାଳ ଭିତରେ ଲୁଚିଛପି, କାଃଣରେ ନିର୍ଜନତାକୁ ସାଥିକରି ବିକ୍ଷିପ୍ତ ଭାବରେ ସମସ୍ତେ ଆଗେଇଥାଆନ୍ତି ଲକ୍ଷ୍ୟପଥରେ ଶତ୍ରୁପକ୍ଷର ଅଲକ୍ଷ୍ୟରେ ।

ସେ ଦିନ ମେ ମାସ ୧୪ ତାରିଖ ।

ସମସ୍ତେ ଆସି ବ୍ୟାଙ୍କକ୍‌ର ଲକ୍ଷ୍ୟସ୍ଥଳରେ ପହଞ୍ଚିଗଲେ । କି ଅପୂର୍ବ ଆନନ୍ଦ ! କି ଉଲ୍ଲସିତ ଶିହରଣ ! ସେଠାରେ ସେ ଆସି ପ୍ରଥମକରି ଶୁଣିଲେ ଯେ ଜର୍ମାନମାନେ ମିତ୍ରଶକ୍ତିଦ୍ୱାରା ପରାସ୍ତ ହୋଇଛନ୍ତି । ନୂତନ ସ୍ଥାନରେ ଏହାହିଁ ଥିଲା ନେତାଜୀଙ୍କ ପାଇଁ ଏକ ଦାରୁଣ ଦୁଃସମ୍ବାଦ ।

( ୧୩ )

ଜର୍ମାନ ସୈନ୍ୟମାନେ ଆତ୍ମ-ସମର୍ପଣ କରିବାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଗତି ଏକ ନୂତନ ମୋଡ଼ ନେଇଥିଲା । ଜାପାନ ପରିବର୍ତ୍ତିତ ପରିସ୍ଥିତିରେ ଦବିନଯାଇ ପୂର୍ବପରି ତା'ର ଯୁଦ୍ଧ ଚଳୁରଖିଲା ।

ନେତାଜୀ ଜାପାନକୁ ନୈତିକ ସାହସ ଓ ମନୋବଳ ଦେଇଥିଲେ । ବ୍ରିଟିଶ ବିରୁଦ୍ଧରେ ଭାରତର ଜାତୀୟ ସେନାବାହିନୀ ପରିବର୍ତ୍ତିତ ପରିସ୍ଥିତିରେ କିପରି ଏବଂ କେଉଁଠାରୁ ଯୁଦ୍ଧ ଆରମ୍ଭ କରିବେ, ସେଥିପାଇଁ ସେ ନିଜର ମନ୍ତ୍ରିମଣ୍ଡଳର ସଭ୍ୟମାନଙ୍କ ସହିତ ଚିନ୍ତାଚିନ୍ତା ଆଲୋଚନା ଚଳାଇଲେ । ଭାରତୀୟ ଜାତୀୟ ବାହିନୀର ସାମରିକ ତତ୍ପରତା ନିଶ୍ଚୟ ଇଂରେଜମାନଙ୍କର ଚିନ୍ତାର କାରଣ ଥିଲା । ଜାପାନ ସୈନ୍ୟମାନେ ଅଦମ୍ୟ ଉତ୍ସାହ ନେଇ ଯୁଦ୍ଧରେ ଲିପ୍ତ ରହିଲେ । ମିତ୍ରଶକ୍ତିର ସଂଗଠିତ ଉଦ୍ୟମ ବିରୁଦ୍ଧରେ

ଦୀର୍ଘଦିନ ପର୍ଯ୍ୟନ୍ତ ଯୁଦ୍ଧ ଚାଲୁରଖିବା କେତେ ଦୂର ସମ୍ଭବ, ତାହା ଥିଲା ସେମାନଙ୍କର ଚିନ୍ତାର ବିଷୟ ।

ଜର୍ମାନୀର ବିପର୍ଯ୍ୟୟ ଖବର ଶୁଣିବାପରେ ସୁଭାଷ ବିଶ୍ୱାସ କରିପାରିଲେ ନାହିଁ ଯେ ଏପ୍ରକାର ଏକ ଘଟଣା ଘଟିପାରେ । ସମସ୍ତ ଥିଲା, ଯେତେବେଳେ ଜର୍ମାନୀର ସୈନ୍ୟ-ବାହିନୀ ରୁଷିଆର ଷ୍ଟାଲିନ୍‌ଗ୍ରେଡ ପର୍ଯ୍ୟନ୍ତ ମାଡ଼ିଯାଇଥିଲେ । କିନ୍ତୁ କିଏ ବିଶ୍ୱାସ କରିବ ଯେ ସମସ୍ତ ଓଲଟିଗଲା ଏବଂ ରୁଷିଆର ସୈନ୍ୟମାନେ ଜର୍ମାନୀର ବର୍ଲିନଯାଏ ମାଡ଼ିଯାଇ ପାରିଲେ ! ଜର୍ମାନୀର ବିପର୍ଯ୍ୟୟହିଁ ଏ ଯୁଦ୍ଧର ଏକ ବିସ୍ମୟ । ଜର୍ମାନୀ ପରାସ୍ତ ହୋଇଯିବା ଅର୍ଥ ରୁଷିଆ ଓ ଆଂଗ୍ଲୋ-ଆମେରିକାନ ମଧ୍ୟରେ ଦ୍ୱନ୍ଦ୍ୱ ସଂଘଟିତ ହୋଇଯିବାର ଆଶଙ୍କା ଘନୀଭୂତ ହେଲା । ଇଂରେଜମାନେ ଦିନେନା ଦିନେ ନିଶ୍ଚୟ ବୁଝିବେ ଯେ ସେମାନେ ଜର୍ମାନମାନଙ୍କୁ ଇଉରୋପୀୟ ରାଜନୈତିକ ରଙ୍ଗମଞ୍ଚରୁ ଅପସାରଣ କରି ପରୋକ୍ଷରେ ଆଉ ଏକ ଶକ୍ତିକୁ ଆମନ୍ତ୍ରଣ କରିଛନ୍ତି—ସେ ହେଉଛି ରୁଷିଆ, ଯେ କି ଜର୍ମାନୀ ଅପେକ୍ଷା ଇଂଲଣ୍ଡ ତଥା ଆମେରିକା ସାମ୍ରାଜ୍ୟବାଦର ଘୋର ବିରୋଧୀ ।

ସୁଭାଷ ସ୍ଥିର କଲେ, ଆନ୍ତର୍ଜାତିକ ପରିସ୍ଥିତିକୁ ଆଖି ଆଗରେ ରଖି ଭାରତର ସ୍ୱାର୍ଥ ଦୃଷ୍ଟିରୁ ଯାହା ଅନୁକୂଳ ଓ ଗ୍ରହଣଯୋଗ୍ୟ ସେ ତାର ଯଥାର୍ଥ ବିନିଯୋଗ ପାଇଁ ଚେଷ୍ଟିତ ହେବେ । ବର୍ତ୍ତମାନ ପରିସ୍ଥିତିରେ ଯାହା ଭାରତର ସ୍ୱାର୍ଥ ଅନୁକୂଳ, ଆଜାଦ୍ ହିନ୍ଦ୍ ସରକାର ତାହାହିଁ ଗ୍ରହଣ କରିବ । ସେ ଯେ ହୁଅନ୍ତୁନା କାହିଁକି; ଆମର ବୈଦେଶିକ ନୀତି ହେଉଛି ବ୍ରିଟେନର ଶତ୍ରୁହିଁ ଭାରତର ବନ୍ଧୁ ।

ଇଉରୋପ ହେଉ କିମ୍ବା ଏସିଆ ହେଉ; ସବୁଠାରେ ଇଂରେଜମାନେ ଆମେରିକାର ବିନାସାହାଯ୍ୟରେ ଶୋଚନୀୟ ଭାବରେ ପରାଜିତ ହୋଇଛନ୍ତି । ଏଇ ସଙ୍କଟରେ ଇଂରେଜ-ମାନେ ଜିତିଯିବା ପଛରେ ଆମେରିକାର ସୁସଂଗଠିତ ନେତୃତ୍ୱ ତଥା ସାମରିକ ସାହାଯ୍ୟ ରହିଛି । ଆମେରିକାର ବିନା ସାହାଯ୍ୟରେ ଇଂରେଜମାନଙ୍କର ସ୍ଥିତି ଅତ୍ୟନ୍ତ ଦୁର୍ବଳ । ବ୍ରିଟିଶ ସାମ୍ରାଜ୍ୟ କେବଳ ଆମେରିକାର ସମର୍ଥନରେ ତିଷ୍ଠି ରହିଛି; ନଚେତ୍ କେଉଁଦିନୁ ଏହା ଭୁଶୁଡ଼ି ପଡ଼ନ୍ତାଣି । ଆମେରିକାରୂପକ ହାତବାଡ଼ିକୁ ଆଶ୍ରାକରି ଇଂରେଜମାନେ ଆଉ କେତେଦିନ ଚାଲିବେ । ଇଂରେଜ ସାମ୍ରାଜ୍ୟର ସୌଭାଗ୍ୟରବି ଅସ୍ତ ହେବାକୁ ବସିଲେଣି । ଇଂରେଜ ସାମ୍ରାଜ୍ୟ ଭାରତରେ ଲୋପ ପାଇଲେ ପୃଥିବୀରୁ ସାମ୍ରାଜ୍ୟବାଦ ଲୋପ ପାଇଯିବ ।

ହିଟଲର୍‌ଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଜର୍ମାନ ସୈନିକମାନେ ଯେଉଁ ଦାମ୍ଭିକତାର ସହିତ ଯୁଦ୍ଧ କରିଥିଲେ, ତାହା ବିଶ୍ୱକୁ ଚମତ୍କୃତ କରିଥିଲା । ସୁଭାଷଙ୍କ ମତରେ ଜର୍ମାନୀର ପରାଜୟ ସାମରିକ ପରାଜୟ ନୁହେଁ; ବରଂ ତାହା ଏକ କୂଟନୈତିକ ପରାଜୟ । ଜର୍ମାନୀର ବୈଦେଶିକ ନୀତିହିଁ ଏଥିପାଇଁ ଦାୟୀ । ବିସ୍‌ମାର୍କ ଜର୍ମାନଜାତିକୁ ଯେଉଁ ଉପଦେଶ ଦେଇଥିଲେ, ତାକୁ ସଂପୂର୍ଣ୍ଣରୂପେ ବେଖାତିର କରିବାର ପରିଣତି ହେଉଛି ଆଜିର

ପରାଜୟ । ଦୁଇଟା ସ୍ଥାନରେ ଯୁଦ୍ଧ କରିବାକୁ ସେ ସର୍ବଦା ବାରଣ କରୁଥିଲେ ଓ ଜର୍ମାନୀ ସରକାର ଏ ନୀତିକୁ ଗ୍ରହଣ ନ କରିବାଫଳରେ ଆଜିର ବିପର୍ଯ୍ୟୟ ଭୋଗକରିବାକୁ ପଡ଼ିଲା । ଆଜି ଯଦି ବିସ୍‌ମାର୍କ ବଞ୍ଚିଥାନ୍ତେ, ତା'ହେଲେ ସେ କିଷ୍ଟୟ୍ ସୋଭିଏତ୍ ଋଷିଆ ସହିତ ଯେକୌଣସି ମତେ ଏକ ସୁସ୍ଥ ବୁଝାମଣା ପ୍ରତିଷ୍ଠା କରିଥାନ୍ତେ ।

ଜର୍ମାନମାନଙ୍କର ପରାଜୟରେ ନେତାଜୀ ଅତି ଦୁଃଖର ସହିତ କହିଥିଲେ : "ଜର୍ମାନୀର ଦୁଃଖ ଓ ଦୁର୍ଦ୍ଦଶା ଦ୍ୱାରେ ମୁଁ ବ୍ୟକ୍ତିଗତ ଭାବରେ ଅତ୍ୟନ୍ତ ମର୍ମାହତ ଏବଂ ମୋର ଦେଶବାସୀଙ୍କ ତରଫରୁ ମୁଁ ଜର୍ମାନ ଲୋକମାନଙ୍କୁ ହୃଦୟର ଗଭୀର କୃତଜ୍ଞତା ଜଣାଉଛୁ । ଭାରତର ସ୍ୱାଧୀନତାସଂଗ୍ରାମ ପାଇଁ ସେମାନଙ୍କର ଅବଦାନ ଅପରିଶୋଧ ଓ ତାହା ଚିରଦିନ ଆମ ପାଖରେ ସ୍ମରଣୀୟ ହୋଇ ରହିବ ।"

ପୂର୍ବ-ଏସିଆରେ ଭାରତର ଅସ୍ଥାୟୀ ଜାତୀୟ ସରକାରର ନୀତି ଅପରିବର୍ତ୍ତିତ ରହିଲା । ନେତାଜୀ ତାଙ୍କର କେତେକ ମନ୍ତ୍ରୀଙ୍କ ସହ ମାନ୍ଦାଲେରେ ପହଞ୍ଚିଲେ । ଭାରତୀୟ ଜାତୀୟ ବାହିନୀ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଜାରୁରଖିବା ପାଇଁ ସେଠାରେ ସେ ଯୋଜନା ପ୍ରସ୍ତୁତ କଲେ ।

ଠିକ୍ ସେତିକବେଳେ ଖବର ମିଳିଲା ଯେ, ବର୍ମାରେ ଥିବା ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନେ ଇଂରେଜ ମିତ୍ରବାହିନୀ ହାତରେ ପଡ଼ିବାପରେ ସେମାନଙ୍କୁ ବନ୍ଦୀ କରାଯାଇଛି ଓ ଅତି ଅମାନୁଷିକ ବ୍ୟବହାର ସେମାନଙ୍କ ଉପରେ କରାଯାଉଛି । ଏଥିରେ ସେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ । ସେ କହିଲେ : "ଅତୀତରେ ଇଂରେଜମାନେ ଜର୍ମାନୀ ଓ ଜାପାନକୁ ସର୍ବଦା ତିରସ୍କାର କରୁଥିଲେ ଯୁଦ୍ଧବନ୍ଦୀମାନଙ୍କୁ ସେମାନଙ୍କର ଦୁର୍ବ୍ୟବହାର ପାଇଁ । ବର୍ତ୍ତମାନ ନିଜେ ସେମାନେ କଣ କରୁଛନ୍ତି ? ମୋର ଧାରଣା, ବୋଧହୁଏ ଇଂରେଜମାନେ ଭାବୁଛନ୍ତି ଯେ ଆମେ ଆଉ ମୁଣ୍ଡ ଟେକି ପାରିବୁ ନାହିଁ ଏବଂ ସେମାନେ ମନଇଚ୍ଛା ଯେପରି ବ୍ୟବହାର ଦେଖାଇଲେ ମଧ୍ୟ ପ୍ରତିବାଦ କରିବାର ଆମର କିଛି ନାହିଁ । ଯଦି ଏପରି ସେମାନେ ଭାବୁଥାନ୍ତି, ତା ହେଲେ ମୁଁ କହିବି ଯେ ସେମାନେ ମସ୍ତବଡ଼ ଭୁଲ କରୁଛନ୍ତି । ଆଜି ଯଦି ଭାରତରେ ଏହା ବିରୁଦ୍ଧରେ ଅସନ୍ତୋଷର ଆଗ୍ନେୟ ପ୍ରତିବାଦ ଆରମ୍ଭ ହୁଅନ୍ତା, ତା ହେଲେ ଇଂରେଜ ସରକାରକୁ ଉପଯୁକ୍ତ ଶିକ୍ଷା ମିଳନ୍ତା ଓ ସେ ବାଟକୁ ଆସିପାରନ୍ତା ।

"ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନେ ସଚ୍ଚୋଟ ଦେଶପ୍ରେମୀ ଏବଂ ଜନ୍ମଭୂମିର ମୁକ୍ତି ପାଇଁ ସେମାନେ ବିଦ୍ରୋହ କରିଛନ୍ତି । ଇଂରେଜମାନଙ୍କର ଅନ୍ୟାୟ ଶାସନ ବିରୁଦ୍ଧରେ ସେମାନେ ସଂଗ୍ରାମ କରିଛନ୍ତି ବିବେକୋଚିତ ପନ୍ଥାରେ । ଯୁଦ୍ଧବନ୍ଦୀ ହିସାବରେ, ଆନ୍ତର୍ଜାତିକ ଯୁଦ୍ଧବନ୍ଦୀ ନିୟମ-କାନୁନ ଅନୁସାରେ ସେମାନେ ଉପଯୁକ୍ତ ବ୍ୟବହାର ପାଇବା ପାଇଁ ହକ୍‌ଦାର ।

"ଭାରତରେ ଥିବା ମୋର ପ୍ରିୟ ଭାଇଭଉଣୀମାନେ ଏ ଦଗରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବା ଉଚିତ । ଏହା ବ୍ୟତୀତ ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧବନ୍ଦୀମାନଙ୍କ ଅବସ୍ଥା ବିଷୟରେ ଇଂରେଜମାନେ ନିର୍ଭୁଲ ତଥ୍ୟ ପରିବେଷଣ କରିବା ଆବଶ୍ୟକ । ଏହାହେଲେ, ସେମାନେ କେତେଦୂର ଆନ୍ତର୍ଜାତିକ ସାମରିକ ନୀତିନିୟମ ପାଳନ କରୁଛନ୍ତି ତାହା ଜଣାପଡ଼ିବ ।"

ଠିକ୍ ଏତିକବେଳେ ଭାରତର ରାଜନୈତିକ ରଙ୍ଗମଞ୍ଚରେ ଆଉ ଏକ ଦୃଶ୍ୟ ଘଟିତ ହେଲା । ଭାରତରେ ଥିବା ବ୍ରିଟିଶ ଭାଇସ୍‌ରୟ ଲର୍ଡ ଓ୍ୱାଭେଲ୍ ମହାତ୍ମା ଗାନ୍ଧୀଙ୍କୁ କୌଣସି-ମତେ ପ୍ରଭାବିତ କରୁଥାନ୍ତି । କଂଗ୍ରେସ ବ୍ରିଟିଶ-ବିରୋଧୀ ମନୋଭାବ ପରିହାର କରି, ଇଂରେଜମାନଙ୍କୁ ସାମରିକ କ୍ଷେତ୍ରରେ ସାହାଯ୍ୟ କଲେ, ତା' ପ୍ରତିବଦଳରେ ଭାଇସ୍‌ରୟଙ୍କ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲରେ ଅଧିକ ଭାରତୀୟ ସ୍ଥାନ ପାଇବାର ସୁଯୋଗ ମିଳିବ— ଏହା ଥିଲା ଲର୍ଡ ଓ୍ୱାଭେଲ୍‌ଙ୍କର ଏକ ଲୋଭନୀୟ ପ୍ରଲୋଭନ । ତାଙ୍କର ଧାରଣା ଥିଲା, ଗାନ୍ଧିଜୀ ବୋଧହୁଏ ଏ ପ୍ରସ୍ତାବରେ ଏକମତ ହୋଇଯିବେ । ସୁଭାଷଚନ୍ଦ୍ର ଏ ସମ୍ବାଦ ପାଇଲାକ୍ଷଣି ଉତ୍ତେଜିତ ହୋଇଉଠିଲେ । ଭାରତର ସ୍ୱାଧୀନତା ପ୍ରଶ୍ନ ଏଡ଼ାଇଦେବାପାଇଁ ଲର୍ଡ ଓ୍ୱାଭେଲ ଯେ ଏକପ୍ରକାର କୌଶଳପୂର୍ଣ୍ଣ ଖେଳ ଆରମ୍ଭ କରିଦେଇଛନ୍ତି, ତାହା ବୁଝିବାକୁ ସୁଭାଷଙ୍କୁ ବେଶି ସମୟ ଲାଗିଲା ନାହିଁ । ଓ୍ୱାଭେଲ୍ ଚାହାନ୍ତି, ଭାରତର ସ୍ୱାଧୀନତା ପ୍ରଶ୍ନ ଏକ ଆନ୍ତର୍ଜାତିକ ପ୍ରଶ୍ନରେ ପରିଣତ ନହୋଇ ଆଭ୍ୟନ୍ତରୀଣ ବ୍ୟାପାରରେ ସୀମିତ ରହୁ; ଫଳରେ ଭାରତୀୟମାନଙ୍କ ଦାବୀକୁ ବିଚାର କରିଯିବା ପାଇଁ ତତ୍ପରତାର ପ୍ରଶ୍ନ ରହିବ ନାହିଁ । ସୁଭାଷ ବ୍ୟାଙ୍କକରୁ ସିଙ୍ଗାପୁର ବିମାନଯୋଗାକଲେ । ଆକାଶବାଣୀରୁ ଥରକୁ ଥର ନିଜର ପ୍ରତିକ୍ରିୟା ତଥା ମତାମତ ଭାରତର ନେତା ଜନସାଧାରଣଙ୍କ ଉଦ୍ଦେଶ୍ୟରେ ପ୍ରଚାର କଲେ । ଏ ପ୍ରଚାର ଦୀର୍ଘ ଦିନ ପର୍ଯ୍ୟନ୍ତ ଚାଲିଥିଲା ।

ଓ୍ୱାଭେଲ୍‌ଙ୍କ ପ୍ରସ୍ତାବକୁ ବିରୋଧକରି ସେ ଜାତି ଉଦ୍ଦେଶ୍ୟରେ ୧୯୪୫ ମସିହା ଜୁନ୍ ମାସ ୧୯ ତାରିଖରେ ଯେଉଁ ଉଦ୍‌ବୋଧନୀ ଦେଇଥିଲେ, ତାର ସାରାଂଶ ନିମ୍ନରେ ଦିଆଗଲା :

"ଭାରତର ଭାଇ ଓ ଭଉଣୀମାନେ !

"ମୁଁ ଆଜି ଆପଣମାନଙ୍କୁ ଲର୍ଡ ଓ୍ୱାଭେଲ୍‌ଙ୍କ ପ୍ରସ୍ତାବ ଉପରେ କିଛି କହୁଛି । ସ୍ୱାଧୀନ ଭାରତର ଅସ୍ଥାୟୀ ଜାତୀୟ ସରକାର ଯେଉଁ ଘୋଷଣାନାମା ପ୍ରଚାର କରିଛି, ଆପଣମାନେ ତାହା ଶୁଣିଥିବେ । ପୂର୍ବ-ଏସିଆରେ ଥିବା ରାଜନୈତିକ ଭାବାପନ୍ନ ଭାରତୀୟମାନଙ୍କର ସୁଚିନ୍ତିତ ମତାମତ ଏଥିରେ ସ୍ଥାନ ପାଇଛି । କଂଗ୍ରେସ ଯଦି ଲର୍ଡ ଓ୍ୱାଭେଲ୍‌ଙ୍କ ପ୍ରସ୍ତାବକୁ ଗ୍ରହଣ କରିବାକୁ ସ୍ଥିରକରେ, ତାହେଲେ ଭାରତୀୟ ସୈନ୍ୟମାନଙ୍କୁ ପୂର୍ବ-ଏସିଆରେ ଯୁଦ୍ଧ କରିବାକୁ ପଡ଼ିବ; ଫଳରେ ଆଜାଦ ହିନ୍ଦ୍ ଫୌଜ ବିରୋଧରେ ମଧ୍ୟ ସେମାନଙ୍କୁ ଯୁଦ୍ଧ କରିବାକୁ ହେବ···ଭାରତୀୟମାନେ ଭାରତୀୟମାନଙ୍କ ବିରୁଦ୍ଧରେ ଲଢ଼ିବେ ।

"ଭାରତ ଭିତରେ ବର୍ତ୍ତମାନ ଯାହା ଘଟୁଛି, ସେ ବିଷୟରେ ଯାହାସବୁ ରିପୋର୍ଟ ମିଳୁଛି ମୁଁ ସେଥିରୁ ଏଇ ସିଦ୍ଧାନ୍ତରେ ପହଞ୍ଚିଛି ଯେ ଭାରତୀୟମାନେ ଏ ପ୍ରସ୍ତାବର ମୌଳିକ ଦିଗକୁ ସୁସ୍ଥ ବିଚାରକୁ ନେଇନାହାନ୍ତି । ଏ ପ୍ରସ୍ତାବକୁ ଗ୍ରହଣକଲେ ଯେଉଁ ଅବଶ୍ୟମ୍ଭାବୀ ପରିସ୍ଥିତି ସୃଷ୍ଟି ହେବ, ତାହା ନିସ୍ତାର ସହିତ ବିଚାର କରିବାକୁ ମୁଁ ଦେଶବାସୀଙ୍କୁ ଅନୁରୋଧ କରେ । ମନେରଖିବାକୁ ହେବ, ଏହା ଫଳରେ ଅଧିନସ୍ଥ ଭାରତୀୟ ସୈନ୍ୟ ଯୁଦ୍ଧକରିବା ପାଇଁ ସୁଦୂର ପ୍ରାଚ୍ୟ ଭୂଖଣ୍ଡକୁ ଯିବାକୁ ହେବ । ସମ୍ମାନର ସହିତ ମୁଁ ମହାତ୍ମା ଗାନ୍ଧୀ, ମୌଲାନା ଆବୁଲ କାଲମ୍ ଆଜାଦ୍, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏବଂ ଅନ୍ୟ ନେତାମାନଙ୍କୁ ପଚାରିବାକୁ ଚାହେଁ ଯେ ସେମାନେ ଇଂରେଜମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଏତେ ଭାରତୀୟ ଜୀବନକୁ ଯୁଦ୍ଧଭୂମିରେ ବଳି ଦେବାକୁ ପ୍ରସ୍ତୁତ କି ?

"ମୁଁ ଖୁବ୍ ବିଶ୍ୱସ୍ତ ସୂତ୍ରରୁ ଜାଣିବାକୁ ପାଇଛି ଯେ, ଇଂରେଜମାନଙ୍କର ମିତ୍ରଶକ୍ତି ଆମେରିକା ସେମାନଙ୍କ ଉପରେ ସୈନ୍ୟବଳ, ଅର୍ଥ ଓ ଅନ୍ୟାନ୍ୟ ସାମଗ୍ରୀ ପାଇଁ ଚାପ ଦେଉଛି ଏବଂ ଏହାର ଭରଣା ପାଇଁ ଭାରତୀୟ ସୈନ୍ୟମାନଙ୍କୁ ଯୁଦ୍ଧରେ ନିଯୁକ୍ତ କରିବାକୁ ଇଂରେଜମାନେ ଚାହାନ୍ତି । ଅର୍ଥ ଓ ଅନ୍ୟ ସାମଗ୍ରୀ ଯୋଗାଡ଼ କରିବା ଦିଗରେ ଇଂଲଣ୍ଡରେ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ, ଲୋକବଳ ବା ସୈନ୍ୟବଳ ପାଇଁ ଭାରତ ଉପରେ ନିର୍ଭର କରିବା ବ୍ୟତୀତ ଇଂରେଜମାନଙ୍କର ଅନ୍ୟ କୌଣସି ଗତି ନାହିଁ । ଇଂରେଜ ସରକାର, ଲର୍ଡ ଓ୍ୱାଭେଲ୍‌ଙ୍କୁ ଏହି ଦୃଷ୍ଟିରୁ, ଭାରତରୁ ସୈନ୍ୟବଳ ସଂଗ୍ରହ କରିବା ପାଇଁ ନିର୍ଦ୍ଦେଶ ଦେଇଛି ।

ଲର୍ଡ ଓ୍ୱାଭେଲ୍ ତୁରନ୍ତ ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରି ପାରିଲେ ନାହିଁ; କାରଣ ଇଂରେଜମାନଙ୍କ ଅଧୀନରେ ଥିବା ଭାରତୀୟ ବାହିନୀର ଅଧିକାଂଶ ସୈନ୍ୟଙ୍କୁ ସେମାନେ ଆଫ୍ରିକା, ଏସିଆ ଏବଂ ଇଉରୋପର ବିଭିନ୍ନ ଯୁଦ୍ଧରେ ଦୀର୍ଘଦିନଧରି ନିଯୁକ୍ତ କରିଥିଲେ ଏବଂ ସେମାନେ କ୍ଳାନ୍ତ । ପୁଣି ଯୁଦ୍ଧ ପାଇଁ ସେମାନଙ୍କ ଭିତରେ ହୁଏତ ବିରକ୍ତି ପ୍ରକାଶିତ ହୋଇପାରେ । ଏହାକୁ ସୁଧାରିବା ପାଇଁ ଏକମାତ୍ର ବାଟ ହେଉଛି ଭାରତୀୟ ଜନସାଧାରଣଙ୍କ ଭିତରେ ଆଗ୍ରହ ତଥା ଉଦ୍ଦୀପନା ସୃଷ୍ଟି କରିବା । କୌଣସି ଆକର୍ଷଣୀୟ ପ୍ରଲୋଭନର ଯୁକ୍ତି ସେମାନଙ୍କୁ ଅର୍ପଣ କରାନଗଲେ ଏକକାଳୀନ ଅର୍ଦ୍ଧନିୟୁତ ଭାରତୀୟ ସୈନ୍ୟଙ୍କୁ ଯୁଦ୍ଧ ପାଇଁ ସାଂପ୍ରତିକ ପରିସ୍ଥିତିରେ ମଗାଇବା ସମ୍ଭବପର ନୁହେଁ । ଏ ଦିଗରେ ଇଂରେଜ ସରକାର ତଥା ଓ୍ୱାଭେଲ୍‌ଙ୍କ ମଧ୍ୟରେ ପତ୍ର ବିନିମୟ ହେଲା । ଭାରତୀୟମାନଙ୍କର ସମର୍ଥନକ୍ରମେ ଭବିଷ୍ୟତ ସାମରିକ ପ୍ରସ୍ତୁତି କିପରି କରାଯିବ ଓ ସେମାନେ କିପରି ପୂର୍ବ-ଏସିଆରେ ଯୁଦ୍ଧ କରିବେ ସେ ଦିଗରେ ଉପାୟ ଅନ୍ୱେଷାର କରାଗଲା । ଇଂରେଜ ସରକାର ତାଙ୍କ ନିଜ ଦେଶରୁ ସୈନ୍ୟବଳ ସଂଗ୍ରହ ନକରିବାର କାରଣ ହେଲା, ଇଂରେଜବାହିନୀକୁ ଦୀର୍ଘ ପାଞ୍ଚ ବର୍ଷ ନଅ ମାସ ଧରି ବିଭିନ୍ନ ଯୁଦ୍ଧରେ ଶୋଚନୀୟ ଭାବରେ ପରାଜୟ-ପରାଭବ ଭୋଗିବାକୁ ପଡ଼ିଲା; ଫଳରେ ଇଂରେଜ ସୈନ୍ୟମାନେ

କ୍ଲାନ୍ତକର ପରିସ୍ଥିତି ମଧ୍ୟରେ ଆଉ ଏକ ଯୁଦ୍ଧ ପାଇଁ ବ୍ୟଗ୍ର ହେଲେ ନାହିଁ । ବିଶେଷତଃ ୟୁରୋପ ଅପେକ୍ଷା ଏସିଆର ପରିସ୍ଥିତି ପ୍ରତିକୂଳ । ସେଠାରେ ପୁଣି ଥରେ ଯୁଦ୍ଧ ଚଳାଇବା ପାଇଁ ସେମାନେ ସମ୍ମତ ହେଲେ ନାହିଁ । ଦ୍ୱିତୀୟରେ ପ୍ରଥମ ବିଶ୍ୱଯୁଦ୍ଧ ପରି ଏହି ଯୁଦ୍ଧରେ ବ୍ରିଟେନ ଆର୍ଥିକ ଦିଗରୁ ଋଣଗ୍ରସ୍ତ ହୋଇଗଲା । ବ୍ରିଟେନର କଳକାରଖାନାରେ ଯୁଦ୍ଧର ଆବଶ୍ୟକତା ମେଣ୍ଟାଇବା ପାଇଁ ବିଭିନ୍ନ ସାମଗ୍ରୀ ପ୍ରସ୍ତୁତ କରାଗଲା ଓ ସାଧାରଣ ସ୍ୱଚ୍ଛନ୍ଦତା ପ୍ରତି ଦୃଷ୍ଟି ଦିଆଗଲା ନାହିଁ । ଏହି ଦୁରବସ୍ଥାର ଦୂରୀକରଣ ପାଇଁ ଭାରତ ଉପରେ ନିର୍ଭର କରିବାକୁ ଇଂରେଜମାନେ ବାଧ୍ୟ ହେଲେ । ସେମାନଙ୍କ ଶାସନାଧୀନ ଭାରତର ବିପୁଳ ଲୋକବଳକୁ ନିଜ ସ୍ୱାର୍ଥପାଇଁ ବିନିଯୋଗ କରିବାକୁ ଓ୍ୱାଭେଲ୍ ଏ ପ୍ରସ୍ତାବ ଦେଇଛନ୍ତି । ଆମେ ଏଥିପାଇଁ ସତର୍କ ହେବା ଉଚିତ ଓ ଏହି ଶୋଷଣର ନିମିତ୍ତ ନହେବାପାଇଁ ସାହସର ସହିତ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବା ବିଧେୟ । ଭାରତର ସ୍ୱାଧୀନତା ପ୍ରଶ୍ନକୁ ସୁଗମ କରିବା ପାଇଁ ଏ ପ୍ରସ୍ତାବରେ ସାମାନ୍ୟତମ ସୂଚନା ନାହିଁ କିମ୍ବା ଭାରତୀୟ-ମାନଙ୍କର ଆଶା-ଆକାଙ୍କ୍ଷାର ପରିପୂରଣ ଦିଗରେ ଏହାର କୌଣସି ଅବଦାନ ମଧ୍ୟ ନାହିଁ ।

"ବର୍ତ୍ତମାନ ପରିସ୍ଥିତିରେ ସୋଭିଏତ୍ ଋଷିଆ ଏବଂ ଆଂଗ୍ଲୋ-ଆମେରିକାନ୍‌ଙ୍କ ମଧ୍ୟରେ ବିଭେଦ ଦିନକୁ ଦିନ ତୀବ୍ରତର ହେଉଛି । ଅବଶ୍ୟ ଏହାକୁ ଲୁଚାଇବା ପାଇଁ ଉଭୟ ପକ୍ଷ ଆନ୍ତରିକତାର ଏକ ଆବରଣ ଦେଇଛନ୍ତି । ଇଉରୋପରେ ଜର୍ମାନୀର ପରାଜୟ ପରେ ସୋଭିଏତ୍ ରୁଷିଆ ଏସିଆ ବିଷୟରେ ଅଧିକ ଆଗ୍ରହ ପ୍ରକାଶ କରୁଛି । ସୋଭିଏତ୍ ବୈଦେଶିକ ମନ୍ତ୍ରୀ ମିଃ ଏମ୍. ମୋଲଟୋଭ୍ ସାନ୍‌ଫ୍ରାନ୍‌ସିସ୍‌କୋଠାରେ ଘୋଷଣା କରିଛନ୍ତି ଯେ ସ୍ୱାଧୀନ ଭାରତର ସ୍ୱର ପୃଥିବୀରେ ଶୁଣାଯିବାକୁ ଆଉ ବେଶି ଦିନ ବିଳମ୍ବ ନାହିଁ ।

"ପ୍ରାଚ୍ୟ ଭୂଖଣ୍ଡରେ ଯେତେବେଳେ ଯୁଦ୍ଧ ସମାପ୍ତ ହେବ ସେତେବେଳେ ଆନ୍ତର୍ଜାତିକ କ୍ଷେତ୍ରରେ ଅନେକ ବିସ୍ମୟକର ଘଟଣା ସଂଘଟିତ ହେବ । ଭାରତର ସୁଯୋଗ ପାଇଁ ସେଥିରେ ଯେ କିଛି ମାତ୍ରାରେ ପାଥେୟ ନଥିବ ତା ନୁହେଁ, ଭାରତ ତାର ସ୍ୱାଧୀନତା ହାସଲ କରିବା ଦିଗରେ ନିଶ୍ଚୟ ଏହା ଦିଗ୍‌ଦର୍ଶକ ହେବ ।

"ସର୍ବଭାରତୀୟ କଂଗ୍ରେସ ସମ୍ମେଳନରେ ଓ୍ୱାଭେଲ୍‌ଙ୍କ ପ୍ରସ୍ତାବ ସର୍ବାଧିକ ଭୋଟରେ ଯେ କାଟ ଖାଇବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ହେ ଭାରତର ଭାଇଭଉଣୀମାନେ ! ମୁଁ ମାତୃଭୂମିର ମୁକ୍ତି ପାଇଁ ଆପଣମାନଙ୍କଠାରୁ ବହୁଦୂରରେ ଏକ ଭୟଙ୍କର ସଂଗ୍ରାମରେ ଲିପ୍ତ ଅଛି । ଆଜାଦ୍ ହିନ୍ଦ୍ ଫୌଜର ସେନାବାହିନୀ ଭାରତର ସ୍ୱାଧୀନତା ପାଇଁ ମୃତ୍ୟୁ ସହିତ ସଂଘର୍ଷ କରୁଛନ୍ତି । ଯେଉଁମାନେ ଯୁଦ୍ଧଭୂମିର ସମ୍ମୁଖ ଭାଗରେ ନାହାନ୍ତି ସେମାନେ ପ୍ରତି ମୁହୂର୍ତ୍ତରେ ନିଜ ଜୀବନକୁ ବିପନ୍ନ କରି ଆଗେଇଛନ୍ତି । ମୁଁ ତ ମୋ ନିଜ ଆଖିରେ ମୋର ବନ୍ଧୁ ବାନ୍ଧବଙ୍କର କରୁଣ ମୃତ୍ୟୁ ଦେଖିଛି । ଶତ୍ରୁପକ୍ଷ ତାଙ୍କ ଉପରେ ମେସିନ୍‌ଗନ୍ ଚଳାଇ, ବୋମାବର୍ଷଣ କରି, ସେମାନଙ୍କୁ କପଟ ଭାବରେ ଅତ୍ୟାଚାର ଓ ଉତ୍ପୀଡ଼ନ କରୁଛି, ତାର

ପଡାନ୍ତର ନାହିଁ । ଆପଣମାନେ ଭାରତରେ ରହି ଏ ଦୃଶ୍ୟ କଳ୍ପନା କରିପାରୁନଥିବେ; ବୋଧହୁଏ ଏ ଅନୁଭୂତିଠାରୁ ଆପଣମାନେ ବହୁ ଦୂରରେ । ଆମେ ଯେଉଁ କେତେଜଣ ଏପର୍ଯ୍ୟନ୍ତ ବଞ୍ଚିରହିଛୁ, ତାହା ଈଶ୍ୱରଙ୍କର ଏକମାତ୍ର ଅପାର କରୁଣାର ଫଳ ।

"ଏହି ସଙ୍କଟମୟ ପରିସ୍ଥିତିରେ ମୁଁ ଯେ ସଂଘର୍ଷ କରୁଛି, ମୋର ଅଧିକାର ନିଶ୍ଚୟ ଅଛି ଆପଣମାନଙ୍କୁ ମୋର ମନକଥା କହିବାପାଇଁ । ଆପଣମାନେ ବୋମାମାଡ଼ କିଣ ଜାଣନ୍ତି ନାହିଁ, ମେସିନ୍‌ଗନ୍‌ର ଗୁଳା-ବାରୁଦର ଜବାମତ କେତେ ସେ ବିଷୟରେ ଧାରଣା ନାହିଁ । ଯେଉଁମାନେ ଆଜି ଏ ପରିସ୍ଥିତିର ସମ୍ମୁଖୀନ ହୋଇ ମାତୃଭୂମିର ମୁକ୍ତିପାଇଁ ଲଢ଼ୁଛନ୍ତି, ସେମାନେ ଓ୍ୱାଭେଲଙ୍କ ପ୍ରସ୍ତାବକୁ ଆଡ଼ଆଖିରେ ମଧ ଚାହିଁବେ ନାହିଁ । ଆପଣମାନେ ବିପ୍ଳବୀ; ସୁଫଳପାଇଁ ଆଶା ରଖନ୍ତୁ ଓ ଚରମ ପରିଣତି ପାଇଁ ନିଜକୁ ପ୍ରସ୍ତୁତ କରନ୍ତୁ । ଆମେ ଯଦି ଠିକ୍ ଭାବରେ ଲଢ଼ି ଜାଣିବା, ତା'ହେଲେ ସଫଳତା ନିଶ୍ଚୟ ହାସଲ କରିବା, ଏଥିରେ ସଂଦେହ ନାହିଁ । ମୋର ଧାରଣା, ଏହି ବିଶ୍ୱଯୁଦ୍ଧ ପରେ ପରେ ଆମକୁ ସ୍ୱାଧୀନତା ମିଳିଯିବ । ଏହା ସମ୍ଭବ ନହେଲେ ହତାଶ ହେବାର କିଛି ନାହିଁ କିମ୍ବା ଦବିଯିବାର ମଧ କିଛି ନାହିଁ । ଯଦି ଏଥିଭିତରେ ଭାରତ ସ୍ୱାଧୀନତା ହାସଲ କରିନପାରିବ, ତାହେଲେ ଭାରତ ଭିତରେ ଆମକୁ ଯୁଦ୍ଧୋତ୍ତର ବିପ୍ଳବ ଆରମ୍ଭ କରିବାକୁ ହେବ; ତଥାପି ଯଦି ଆମେ ଏଥିରେ ସଫଳତା ହାସଲ କରି ନପାରିବା, ତା'ହେଲେ ତୃତୀୟ ବିଶ୍ୱଯୁଦ୍ଧ ନିଶ୍ଚୟ ଆରମ୍ଭ ହେବ ଓ ଆମେ ଆମର ସ୍ୱାଧୀନତା ଲଭ କରିବାର ସୁଯୋଗ ନିଶ୍ଚୟ ପାଇବା ।"

୧୯୪୫ ମସିହା ଜୁଲାଇ ୩ ତାରିଖ । କଂଗ୍ରେସ କାର୍ଯ୍ୟକାରୀ କମିଟି ବସିଲା । ଲର୍ଡ ଓ୍ୱାଭେଲ୍‌ଙ୍କ ପ୍ରସ୍ତାବ ନାକଚ ହୋଇଗଲା । ଏ ସମ୍ବାଦ ପାଇଲାକ୍ଷଣି ସୁଭାଷ ବୋଷ ଆନନ୍ଦରେ ବିହ୍ୱଳ ହୋଇଉଠିଲେ । ମହାତ୍ମା ଗାନ୍ଧୀଙ୍କୁ ଓ କଂଗ୍ରେସର ମହାନ୍ ନେତାମାନଙ୍କୁ ସେ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଲେ । ଗୋଟାଏ ଆସନ୍ନ ବିପଦରୁ ଭାରତ ରକ୍ଷା ପାଇଗଲା । କଂଗ୍ରେସର ନେତୃବୃନ୍ଦଙ୍କର ସାମାନ୍ୟ ବିଚାର-ବିଭ୍ରାଟ ହୋଇଥିଲେ ଭାରତର ସ୍ୱାଧୀନତା ପଥ ନିଶ୍ଚୟ ପଛେଇଯାଇଥାନ୍ତା । ଏ ପ୍ରସ୍ତାବ ସମର୍ଥିତ ହୋଇଥିଲେ ଭାରତୀୟମାନଙ୍କର ମାନସିକ ସଂହତି ନାହିଁ ଏବଂ ସେମାନେ ଚତୁର ରାଜନୀତିର ପର୍ଦ୍ଦା ଉନ୍ମୋଚନ କରିବାକୁ ଅକ୍ଷମ ବୋଲି ପ୍ରମାଣିତ ହୋଇଥାନ୍ତା ।

ସୁଭାଷ ବୋଷଙ୍କର ଦୀର୍ଘଦିନ ଧରି ପ୍ରଚାର କରିବାର ସୁଫଳ ତାଙ୍କୁ ମିଳିଲା । ନିଜ ଦେଶରେ ତାଙ୍କର ଅଗଣିତ ଦେଶବାସୀ ତାଙ୍କ ପଛରେ ଅଛନ୍ତି ବୋଲି ସେ ଆନନ୍ଦିତ ହେଲେ । ସୁଭାଷଙ୍କ ପ୍ରତି ଭାରତୀୟ ନେତାମାନଙ୍କର ମନୋଭାବ କପରି ପ୍ରତିକୂଳ ନୁହେଁ, ଏହା ମଧ ତାର ପ୍ରମାଣ ।

ଇଂରେଜ ସରକାର ବିଭେଦର ମଞ୍ଜି ବୁଣିବାକୁ ଯେଉଁ ଚେଷ୍ଟା କରିଥିଲା, ତାହା ସଫଳ ହୋଇପାରିଲା ନାହିଁ ।

ଲର୍ଡ ଓ୍ୱାଭେଲ୍ ଜୁନ୍ ୧୫ ତାରଖରେ ସିମିଲା କନ୍‌ଫରେନ୍‌ସ ଉଦ୍‌ଘାଟନ କରଥିଲେ । ଭାରତୀୟମାନଙ୍କର ସବଂବିଧ ଉନ୍ନତ ପାଇଁ ସେ କାମ କରବେ ବୋଲି ପ୍ରତଶ୍ରୁତ ଦେଇ ଭାରତୀୟମାନଙ୍କର ମନ କଣିବାକୁ ଚେଷ୍ଟା କରଥିଲେ । ମହାତ୍ମା ଗାନ୍ଧୀ ଏହି ସମ୍ମିଳନୀରେ ଯୋଗ ଦେଇନଥିଲେ । ଲର୍ଡ ଓ୍ୱାଭେଲଙ୍କ ପ୍ରସ୍ତାବ ସେଠାରେ ବଫଳତାର ସମ୍ମୁଖୀନ ହୋଇଥିଲା; ପରେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ କାଟ ଖାଇଲା । ଏହା ଥିଲା ଓ୍ୱାଭେଲଙ୍କ ପାଇଁ ଏକପ୍ରକାର ଆହ୍ୱାନ ।

ଜୁଲାଇ ମାସ ।

ଏହାପରେ ସୁଭାଷ ସିଙ୍ଗାପୁରରୁ ମାଲୟ ଯାତ୍ରା କରଥିଲେ । ଭାରତୀୟ ଜାତୀୟ ବାହିନୀର କୌଣସି ଏକ ଜରୁରୀ ବୈଠକରେ ଯୋଗଦେବା ତାଙ୍କର ଲକ୍ଷ୍ୟ ଥିଲା । ସେଠାରେ ପହଞ୍ଚିବା ପରେ ସେ ମାଲୟର ସେରାମ୍‌ବାନ୍‌ରେ ରହିଥିଲେ । ସେ ଅଗଷ୍ଟ ୧୦ ତାରଖରେ ଖବର ପାଇଲେ ଯେ ଋଷିଆ ଜାପାନ ବରୁଦ୍ଧରେ ଯୁଦ୍ଧ ଘୋଷଣା କରଛି । ଏହା ଥିଲା ଏକ ନାଟକୀୟ ପରବର୍ତ୍ତନ ଓ ଆନ୍ତର୍ଜାତକ କ୍ଷେତ୍ରରେ ଏକ ନୂତନ ଘଟନ ।

ଜର୍ମାନୀର ନାଜି ସେନାବାହିନୀ ଆତ୍ମସମର୍ପଣ କରବାପରେ ଜାପାନ ମିତ୍ରଶକ୍ତି ବପକ୍ଷରେ ଯୁଦ୍ଧ ଚଳାଇଥିଲେ ମଧ୍ୟ ପରାଜୟର ପରାଭବ ସେ ଯେ ନିଶ୍ଚିତରୂପେ ଭୋଗିବ, ଏହା ସ୍ପଷ୍ଟଭାବରେ ଜଣାଯାଇଥିଲା । ଏପର ଏକ ଦୁଃସମୟରେ ଆମେରକା ଜାପାନ ଉପରେ ଏକ ବର୍ବରୋଚିତ, ଅମାନୁଷିକ ଆକ୍ରମଣ ଆରମ୍ଭକଲା ଯାହାକ ମାନବ ସଭ୍ୟତାରେ କଳଙ୍କର ଏକ ଅଧ୍ୟାୟ କହିଲେ ଭୁଲ ହେବନାହିଁ । ସେଦନ ଥିଲା ୧୯୪୫ ମସିହା ଅଗଷ୍ଟ ୬ ତାରଖ ।

ସମସ୍ତ ବୋଧହୁଏ ପ୍ରଭାତର ମଧ୍ୟ-ଉନ୍ମେଷ । ଠିକ୍ ଏତକବେଳେ ଜାପାନର ହିରୋସୀମା ନଗର ଉପରେ ଆମେରକା ବୋମାବର୍ଷଣ କଲା । ଏହା ହେଉଛି ପୃଥିବୀର ଜନବସତ ଉପରେ ପ୍ରଥମ ବୋମା ବସ୍ଫୋରଣ । ପୂର୍ବରୁ ଭୂଗର୍ଭରେ କମ୍ବା ଅନ୍ୟ ନିରାପଦ ସ୍ଥାନରେ ବୋମା ପରୀକ୍ଷା ପାଇଁ ସିନା ବସ୍ଫୋରଣ କରାଯାଇଥିଲା; କନ୍ତୁ ଯେଉଁ ମଣିଷ ପାଇଁ ଏହା ଅଭିପ୍ରେତ, ତାହା ସେହି ମଣିଷ ଉପରେ ସେଦନ ପ୍ରୟୋଗ କରାଗଲା ହିରୋସୀମାରେ !

ହିରୋସୀମା ଜାପାନର ଥିଲା ଗୋଟିଏ ସୁନ୍ଦର ସହର । ବହୁ ଅଟ୍ଟାଳିକା-ଶୋଭିତ ଜନାକୀର୍ଣ୍ଣ ସହରଟି କର୍ମମୁଖର ହୋଇ ଉଠିଥିଲା । ତାର ଆକାଶରେ ହସକୁରା ସୂର୍ଯ୍ୟ ଉଦତ ହୋଇ ପୂର୍ବ ବାଦଲ ଫାଙ୍କରେ ମୁହଁ ଲୁଚାଇଥିଲେ । ବୋଧହୁଏ ସେ ଧ୍ୱଂସର ଇସାରା ପାଇଯାଇଥିଲେ ନା କ'ଣ । ପିଲାମାନେ ସୁସଜ୍ଜିତ ହୋଇ ସ୍କୁଲକୁ ବାହାରଥାନ୍ତି; ସତେ ଯେପର ରାସ୍ତାଉପରେ ଫୁଟିଲା ଫୁଲବଗିଚାର ଏକ ମନୋଜ୍ଞ ପଟୁଆର । ବପଣୀ ବୀଥିକା ସଦ୍ୟ ଖୋଲିଛି । ଜନସମାଗମ ଆସ୍ତେ ଜମାଟ ବାନ୍ଧୁଛି । ଉଦ୍ଦାମ ଯୌବନର

ଉଲ୍ଲସନ ନେଇ ତରୁଣତରୁଣୀମାନେ କର୍ମଚଞ୍ଚଳ ହୋଇଉଠିଛନ୍ତି । ସହରଟିରେ ନବପ୍ରଭାତର ପ୍ରାଚୁର୍ଯ୍ୟଭରା ପ୍ରାଣସମ୍ଭାର ଉଦ୍ବେଳ ହୋଇଉଠିଛି ।

ଠିକ୍ ଏତିକବେଳେ ହିରୋସୀମାର ଆକାଶକୂଳରେ ଉଡ଼ିବୁଲିଲା କାଳ-ଛଞ୍ଚାଣ । ତାର ପ୍ରଳୟ ନାଦରେ ସହରର ଶାନ୍ତ ପରିବେଶ କୋଳାହଳମୟ ହୋଇଉଠିଲା । ସମସ୍ତଙ୍କ ମନରେ ଗଭୀର ଆଶଙ୍କା । ଯୁଦ୍ଧ ତ ଚାଲିଛି···କାଳେ କେତେବେଳେ କିଛି ଅଘଟଣ ଘଟିବ କି ! ଆଖିପିଛୁଳାକେ ଆକାଶମାର୍ଗରେ ପଇଁତରା ମାରୁଥିବା ଉଡ଼ାଜାହାଜରୁ ନିକ୍ଷିପ୍ତ ହେଲା ପ୍ରଳୟ ଅସ୍ତ୍ର, ଏକ ଆଣବିକ ବୋମା । ପ୍ରଳୟର କି ପ୍ରଳୟ ରୂପ ! ନିମିଷକ ମଧ୍ୟରେ ସାରା ସହର ଚୁରମାର ହୋଇଗଲା । ସତେଯେପରି ପ୍ରଚଣ୍ଡ ସୂର୍ଯ୍ୟର ଏକ ଆଗ୍ନେୟ ଅଂଶ ଛିଣ୍ଡିପଡ଼ିଛି ହିରୋସୀମା ସହର ଉପରେ । ଚତୁର୍ଦ୍ଦିଗରେ ସର୍ବଗ୍ରାସୀ ଅଗ୍ନିର ଲେଲିହାନ ଶିଖା । ମଣିଷ ଉପରେ ମଣିଷର କି ହୃଦୟ-ବିଦାରକ ଆକ୍ରମଣ ! ମଣିଷ ତା ନିଜ ଜାତିଟାକୁ ଧ୍ୱଂସ କରିଦେବାପାଇଁ କିପରି ପାଗଳ ହୋଇଉଠିଛି !! ଆମେରିକାର ବୈମାନିକ କ୍ୟାପ୍‌ଟେନ୍ ରବର୍ଟ ଲୁଇସ୍ "ଏନୋଲା ଗେ" ନାମକ ଉଡ଼ାଜାହାଜରେ ଆକାଶମାର୍ଗରୁ ଏହି ତାଣ୍ଡବ ଲୀଳା ସୃଷ୍ଟି କରିଥିଲେ । ସାରା ସହରରେ ଅଗ୍ନିର ଉତ୍ପାତ, ଆକାଶ ଧୂମ ତଥା ବାଲିପଟଳରେ ଆଚ୍ଛାଦିତ । ବାୟୁମଣ୍ଡଳରେ ଉତ୍ତାପର ପ୍ରଚଣ୍ଡତା । ଗଛପତ୍ର ଜଳିଯାଉଛି, ଘରର ଲୌହ ଜିନିଷପତ୍ର ତରଳ ଲାଭାସ୍ରୋତରେ ପରିଣତ ହେଉଛି । ମଣିଷ, ପଶୁ, ପକ୍ଷୀ, ଗଛଲତା ଏହି ଅଗ୍ନିମୁଖରୁ କେହି ବଂଚିବାର ଉପାୟ ନାହିଁ । ଏକେ ଦିନର ସହରଟି ସଭ୍ୟତା ତଥା ସଂସ୍କୃତିର ଯେ ପ୍ରାଣକେନ୍ଦ୍ର ରୂପେ ମୁଣ୍ଡ ଟେକିଥିଲା, ଆଖି ପିଛୁଳାକେ ତାହା ଏକ ଭଗ୍ନସ୍ତୂପରେ ପରିଣତ ହେଲା । ଲକ୍ଷ ଲକ୍ଷ ଲୋକ ମଲେ, କେତେକ ଅର୍ଦ୍ଧମୃତ ଅବସ୍ଥାରେ ଚିତ୍କାର କରୁଥାନ୍ତି ମୃତ୍ୟୁ ପାଇଁ । ଆଉ ଯେଉଁ ଅଳ୍ପ କେତେଜଣ ବଞ୍ଚିଗଲେ, ସେମାନେ କ୍ଷତ-ବିକ୍ଷତ ଓ ବିକଳାଙ୍ଗ ହୋଇ ପ୍ରଳୟଚକ୍ଷୁ ସନ୍ତକରୂପେ ରହିଗଲେ ବିଶ୍ୱ-ଦରବାରରେ ମଣିଷ ଦୁଷ୍କୃତିର ସାକ୍ଷ୍ୟ ଦେବାପାଇଁ ।

ସେହି ପ୍ରଳୟ ଦିବସର ଠିକ୍ ତିନିଦିନପରେ ପୁଣି ଏକ ପ୍ରଳୟ । ୧୯୪୫ ମସିହା ଅଗଷ୍ଟ ୯ ତାରିଖ ଦିନ ଜାପାନର ନାଗାସାକି ଉପରେ ପୁଣି ଥରେ ବୋମାନିକ୍ଷେପ କରାଯାଇଥିଲା । ଏହା ଥିଲା ଆହୁରି ମାରାତ୍ମକ ଏବଂ ଆଖି ପିଛୁଳାକେ ଏହି ଜନାକୀର୍ଣ୍ଣ ସହର ମଧ୍ୟ ଧ୍ୱଂସ ହୋଇଗଲା । ମଣିଷ, ଜୀବଜନ୍ତୁ, ଉଦ୍ଭିଦ ଗୋଟି ଗୋଟି ହୋଇ ଟଳିପଡ଼ିଲେ । ଯେଉଁମାନେ କୌଣସିମତେ ବଂଚିଗଲେ, ସେମାନଙ୍କୁ ମୃତ୍ୟୁଠାରୁ ଅଧିକ ଯନ୍ତ୍ରଣା ସାରାଜୀବନ ଭୋଗକରିବାକୁ ପଡ଼ିଲା । ସେମାନଙ୍କର ଯେଉଁ ସନ୍ତାନସନ୍ତତି ହେଲେ ସେମାନେ ମଧ୍ୟ ଏପର୍ଯ୍ୟନ୍ତ ଦୁଃସାଧ୍ୟ ରୋଗର ଶିକାର ହେଉଛନ୍ତି । ବଞ୍ଚିଯାଇଥିବା ଲୋକଙ୍କ ଭିତରେ ୧୯୦୦ ଫୁଟ ଉଚ୍ଚରୁ ତେଜସ୍କ୍ରିୟ ବିକିରଣ ଏପରି ଭାବରେ ପ୍ରବେଶ କଲା, ଯାହାକି ଭାବୀ ବଂଶଧରମାନଙ୍କୁ ନିରୋଗ ତଥା ନିରାପଦ ରଖି ପାରିଲାନାହିଁ । ନାଗାସାକିରେ ପ୍ରାୟ ଦେଢ଼ଲକ୍ଷ ଲୋକ ପ୍ରାଣ ହରାଇଲେ । ଏଠାରେ ପ୍ରାୟ

୧୨'୫ କଲୋଟନ ଓଜନର ବୋମା ନିକ୍ଷେପ କରାଯାଇଥିଲା । ତେଜସ୍କ୍ରିୟ ବିକିରଣ ଯୋଗୁ ଭୂଗର୍ଭର ଜଳଭଣ୍ଡାର ବିଷାକ୍ତ ହୋଇଗଲା । ୨୦୦ କୋଟି ଡଲାର ଖର୍ଚ୍ଚ କରାଯାଇ ତିଆରି ହୋଇଥିବା ଧ୍ୱଂସକାରୀ ଅସ୍ତ୍ର ତାର କରାମତି ଠିକ୍ ଦେଖାଇଲା । ନାଗାସାକି ଉପରେ ବୋମାବର୍ଷଣ କରିଥିବା ବୈମାନିକଙ୍କ ନାମ ହେଉଛି 'ପାଉଲ୍ ବର୍ଗମାନ' । ସେ ଗତ ୫-୮-୮୫ ତାରିଖରେ ଆତ୍ମହତ୍ୟାକରି ପ୍ରାୟ ୬୫ ବର୍ଷ ବୟସରେ ମୃତ୍ୟୁବରଣ କରିଛନ୍ତି । ୬-୮-୮୫ ତାରିଖରେ ଜାପାନରେ ହିରୋସୀମା ଓ ନାଗାସାକି ଦିବସ ପାଳନ କରାଯାଇଥିଲା । ତାର ଅବ୍ୟବହିତ ପୂର୍ବରୁ ବିଶ୍ୱଜନମତରୁ ରକ୍ଷାପାଇବା ପାଇଁ ତାଙ୍କୁ ଏପ୍ରକାର ଆତ୍ମହତ୍ୟା ଭିତରେ ଆତ୍ମରକ୍ଷା କରିବାକୁ ପଡ଼ିଥିଲା । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି, ଏ ଉତ୍ସବରେ ଯୋଗଦେବା ପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା ।

ହିରୋସୀମା ତଥା ନାଗାସାକିରେ ବୋମା ବିସ୍ଫୋରଣ ପରେ ପରେ ସେହି ଅଗଷ୍ଟ ୯ ତାରିଖରେ ରୁଷିଆ ଜାପାନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା ଓ ୧୯୪୫ ଅଗଷ୍ଟ ୧୧ ତାରିଖରେ ଜାପାନ ଆତ୍ମ-ସମର୍ପଣ କଲା । ୧୯୪୫, ଅଗଷ୍ଟ ୧୫ ତାରିଖରେ ସରକାରୀ ଭାବରେ ଏହା ଘୋଷିତ ହେଲା । ତା'ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବନ୍ଦ ହୋଇଗଲା । ତୃତୀୟ ବିଶ୍ୱଯୁଦ୍ଧ ଯଦି କେବେ ଆରମ୍ଭ ହେବ, ତାହା ହେବ ପୂରାପୂରି ନକ୍ଷତ୍ର-ଯୁଦ୍ଧ ଓ ଆଣବିକ ଅସ୍ତ୍ରର ପ୍ରତିଯୋଗିତା ଭିତରେ ସୃଷ୍ଟି-ସୂଚୀରୁ ପ୍ରାଣୀ ତଥା ଉଦ୍ଭିଦ ସତ୍ତା ଚିରଦିନ ପାଇଁ ଲୋପପାଇଯିବ ।

ମଣିଷର ଏହା ଥିଲା ଏକ ଆଗ୍ନେୟ ପ୍ରତିଶୋଧ । ତାର କ୍ରୋଧ ଯେପରି ଆଣବିକ ରୂପ ନେଇ ତା'ର ଜାତି, କୃତି, ସଭ୍ୟତା ଓ ସଂସ୍କୃତିକୁ ନିଶ୍ଚିହ୍ନ କରିଦେଲା । ଆଖି ପିଛୁଳାକେ ସବୁ ଓଲଟପାଲଟ । ସୁରମ୍ୟ ଅଟ୍ଟାଳିକାଗୁଡ଼ିକ ଇଟା, ବାଲି, ଚୂନର ଏକ ଭଗ୍ନ-ସ୍ତୂପରେ ପରିଣତ ହୋଇଗଲା ।

ଆକାଶମଣ୍ଡଳରେ ନିରନ୍ତ୍ର ଧୂମପଟଳ ସତେ ଅବା କୃଷ୍ଣ ବାଦଲ ବିଶ୍ୱକୁ ଢାଙ୍କିଦେଇଛି ତାକୁ ଅନ୍ଧକାର ବିବର୍ତ୍ତିକୁ ଟାଣିନେବ ବୋଲି । ସୂର୍ଯ୍ୟଙ୍କର ସତ୍ତା ବି କିଛିସମୟ ପାଇଁ ଲିଭିଯାଇଥିଲା ଆକାଶରୁ । ସାରା ଆକାଶରେ ବ୍ୟାପିଯାଇଥିଲା ଧୂଳିର ଧୂମାଳି ଝଡ଼ ।

ତଳେ ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ଏହି କରାଳ କାଳର ଶିକାର ହେଲେ । ମୁହୂର୍ତ୍ତକ ମଧ୍ୟରେ ଅକଳନ୍ତ ଧନ-ଜୀବନ ଧ୍ୱଂସ ହୋଇଗଲା । ଲକ୍ଷ ଲକ୍ଷ ମୁମୂର୍ଷୁର ଆର୍ତ୍ତ ଚିତ୍କାର ପରିବେଶକୁ କରୁଣରୁ କରୁଣତର କଲା । ଜୀବନରକ୍ଷା ପାଇଁ ସମସ୍ତଙ୍କର ଆର୍ତ୍ତ ଆକୁଳ ନିବେଦନ । କିଏବା ଅଛି ଶୁଣିବାକୁ କିମ୍ବା ସାହାଯ୍ୟ କରିବାକୁ । ସମସ୍ତେ ଧ୍ୱଂସ-ସ୍ତୂପ ତଳେ ଛଟପଟ ହେଉଥାନ୍ତି ମୃତ୍ୟୁର ଅପେକ୍ଷାରେ ।

ଲକ୍ଷ ଲକ୍ଷ ବର୍ଷର ସୃଜନସୃଷ୍ଟି ମାତ୍ର ଅଧମିନିଟକ ମଧ୍ୟରେ ଧ୍ୱଂସ ହୋଇଗଲା ! ବିଜ୍ଞାନୋନ୍ମତ୍ତ ମନୁଷ୍ୟ ଆନନ୍ଦରେ ବିହ୍ୱଳ ହେଲା ତା' ପରୀକ୍ଷା ସଫଳ ହେଲା ବୋଲି । ଏଣିକି ସେ ପ୍ରଳୟପଥରେ ଆଗେଇଯିବାପାଇଁ ରୁଦ୍ରରୂପ ନେବ ।

ପରମାଣୁ ବୋମା ଦୀର୍ଘଦିନର ବିଶ୍ୱଯୁଦ୍ଧକୁ ଅଳ୍ପ ସମୟ ମଧ୍ୟରେ ବନ୍ଦକରିଦେଲା । ଆମେରିକା ସରକାର ଏହି ମାନବ-ବିରୋଧୀ ନୃଶଂସ କାର୍ଯ୍ୟ ପାଇଁ ସାରା ବିଶ୍ୱଦ୍ୱାରା ନିନ୍ଦିତ ହେଲେ । ନିନ୍ଦାକରିବାରେ କାହାର ସ୍ୱର ଥିଲା ଉଚ୍ଚ, କାହାର ଅନୁଚ୍ଚ, କାହାର ଅବା ନୀରବ; କିନ୍ତୁ ସାରା ମାନବଜାତିର ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଆମେରିକା ତଥା ବ୍ରିଟେନ୍‌କୁ ଦୋଷୀକରିବାକୁ ପଛେଇଥିଲା । ବିଶ୍ୱବ୍ୟାପୀ ନିନ୍ଦାରୁ ରକ୍ଷା ପାଇବା ପାଇଁ ଆମେରିକାର ଶାସକ-ବୃନ୍ଦ ଏକ ସଫେଇ ସଫେଇ ଦେଇଦେଲେ । ତା' ହେଲା "ଆମେରିକା ପରମାଣୁ ବୋମା ପକାଇ ନଥିଲେ ଦ୍ୱିତୀୟ ବିଶ୍ୱ-ଯୁଦ୍ଧ ଆଉରି ଦୀର୍ଘଦିନ ପାଇଁ ଚାଲିଥାନ୍ତା; ସେଥିରେ ଅସୁମାର ଧନ-ଜୀବନ ଧ୍ୱଂସ ହୋଇଥାନ୍ତା; ଚରମ ଅସ୍ଥିରତା ମାନବିକ ପ୍ରଗତିକୁ ବ୍ୟାହତ କରିଥାନ୍ତା । ମାନବସମାଜକୁ ପ୍ରଳୟଙ୍କରୀ ବିପର୍ଯ୍ୟୟରୁ ରକ୍ଷା କରିବା ପାଇଁ ବୋମା ପକାଗଲା । ଅବଶ୍ୟ ଏଥିରେ କେତେ ଲକ୍ଷ ଲୋକ ପ୍ରାଣ ହରାଇଲେ; କିନ୍ତୁ ଅନିର୍ଦ୍ଦିଷ୍ଟ ଦିନ ପାଇଁ ଯୁଦ୍ଧ ଚାଲିଥିଲେ ଯେତେ ଜୀବନ ଧ୍ୱଂସ ପାଇଥାନ୍ତା; ଯେତେ ସମ୍ବଳ ବ୍ୟୟ କରାଯାଇଥାନ୍ତା ଓ ବିଶ୍ୱର ଅର୍ଥନୀତି ଯେପରି ଭାବରେ ବ୍ୟାହତ ହୋଇଥାନ୍ତା; ସେଥିରୁ ମାନବସମାଜ ରକ୍ଷାପାଇଗଲା ।"

ଏ ଯୁକ୍ତି ଆଦୌ ସମର୍ଥନଯୋଗ୍ୟ ନୁହେଁ; କାରଣ ଜାପାନ ସ୍ୱାଭାବିକ ସାମରିକ ସ୍ଥିତିରେ ବିପର୍ଯ୍ୟୟର ସମ୍ମୁଖୀନ ହୋଇସାରିଥିଲା । ଖୁବ୍ ଅଳ୍ପଦିନ ମଧ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବନ୍ଦ ହୋଇଯାଇଥାନ୍ତା । ସାମରିକ କ୍ଷେତ୍ରରେ ପରମାଣୁଶକ୍ତିର ପ୍ରୟୋଗ କରି, ଆମେରିକା ତାର ଶକ୍ତି ଓ ସାମର୍ଥ୍ୟର ପ୍ରଚୁର ଦ୍ୱାରା ଅନ୍ୟ ରାଷ୍ଟ୍ରମାନଙ୍କୁ ଭୟଭୀତ କରିବା ଓ ନିଜର ବଡ଼ିମା ପ୍ରତିଷ୍ଠା କରିବା ଥିଲା ତା'ର ଅନ୍ତର୍ନିହିତ ଲକ୍ଷ୍ୟ । କିନ୍ତୁ ସେ ବୁଝିପାରିନଥିଲା ଯେ ଭାରସାମ୍ୟ ରକ୍ଷାକରିବା ପ୍ରକୃତିର ନିୟମ । ପରମାଣୁ-ବୋମାର ଅଧିକାରୀ ଆମେରିକା ପରୋକ୍ଷରେ ଯେ ତାର ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ରୁଷିଆକୁ ପରମାଣୁ ଶକ୍ତିରେ ସଜ୍ଜିତ ହେବା ପାଇଁ ଏକ ସୁଯୋଗ ଦେଲା, ତାହା ତାର କୂଟନୈତିକ ଅପରିପକ୍ୱତାର ପ୍ରମାଣ ଥିଲା ।

ଜାପାନର ଆତ୍ମସମର୍ପଣରେ ଯେଉଁ ପରିବର୍ତ୍ତିତ ପରିସ୍ଥିତି ସୃଷ୍ଟି ହେଲା, ସେଥିରେ ଭାରତୀୟ ଜାତୀୟ ବାହିନୀ (I.N.A.) ମିତ୍ରଶକ୍ତି ବିରୁଦ୍ଧରେ ଯୁଦ୍ଧ ଚାଲୁରଖିବା ସମ୍ଭବପର ହେଲନାହିଁ । ଏହି ନାଟକୀୟ ଘଟନାର ପରଦିନ ନେତାଜୀ ସିଙ୍ଗାପୁର ଫେରିଆସିଲେ । ବର୍ତ୍ତମାନ କଣ କରାଯିବ, ସେଥିପାଇଁ ନିଜର ମନ୍ତ୍ରୀମାନଙ୍କ ସହିତ ତାଙ୍କର ଘନ ଘନ ଆଲୋଚନା ଆରମ୍ଭ ହେଲା । ଏକ ମହାନାଟକର ନୂତନ ଅଧ୍ୟାୟ ଲେଖା ହେବାକୁ

ଯାଉଛି; ସାମାନ୍ୟ ବସ୍ତୁର ବିଭ୍ରାଟ ହେଲେ ନାଟକୀୟ ମହାନତା ନଷ୍ଟ ହୋଇଯିବ । ଏହା ହେଉଛି ଭାରତୀୟ ଜାତୀୟ ବାହିନୀର ଅନ୍ଧକାର ମୁହୂର୍ତ୍ତି ।

କେହି କେହି ମତଦେଲେ, ସେ ସିଙ୍ଗାପୁରରେ ଇଂରେଜମାନଙ୍କ ହାତରେ ବନ୍ଦୀ ହେବେ ଏବଂ ତାଙ୍କ ଯେକୌଣସି ପରିଭବ ଦଆଯିବ, ତାହାହିଁ ହେବ ଭାରତୀୟମାନଙ୍କର ଦେଶବ୍ୟାପୀ ଗଣଆନ୍ଦୋଳନର ଆଧାର ଓ ଆଶୁ ସ୍ୱାଧୀନତାଲାଭର ପାଥେୟ । ଦଣ୍ଡ ଯେତକ ନିଷ୍ଠୁର ହେବ, ଆନ୍ଦୋଳନର ପୂର୍ତ୍ତି ଦଗରେ ତାହା ସେତକ ସାହାଯ୍ୟ କରିବ ।

ପରିସ୍ଥିତି ହଠାତ୍ ବଦଳିଗଲା । ଅସ୍ଥାୟୀ ଜାତୀୟ ସରକାରର କ୍ୟାବିନେଟ ମନ୍ତ୍ରୀବୃନ୍ଦ ଶେଷ ମୁହୂର୍ତ୍ତିରେ ସ୍ଥିର କଲେ ଯେ ସୁଭାଷଙ୍କୁ ସିଙ୍ଗାପୁର ଛାଡ଼ିବାକୁ ହେବ ଏବଂ ଆହୁରି ସୁଦୂର ପୂର୍ବାଞ୍ଚଳକୁ ନିରାପଦତା ଦୃଷ୍ଟିରୁ ଚାଲିଯିବାକୁ ପଡ଼ିବ । ଇଂରେଜମାନଙ୍କ ହାତରେ ପଡ଼ି ବନ୍ଦୀ ହେବା ଅପେକ୍ଷା ବରଂ ରୁଷିଆ ହାତରେ ପଡ଼ିଲେ ଦିନେନା ଦିନେ ସେ ମୁକ୍ତ ହୋଇ ଭାରତର ମୁକ୍ତି-ସଂଗ୍ରାମକୁ ପୁଣି ଉଜ୍ଜୀବିତ କରିବାର ସୁଯୋଗ ପାଇବେ । ବର୍ତ୍ତମାନ ପରିସ୍ଥିତିରେ ଭାଗ୍ୟ ପାଖରେ ନିଜକୁ ଉତ୍ସର୍ଗ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ସୁଭାଷ ଅତି ଦୁଃଖର ସହିତ ଏ ପ୍ରସ୍ତାବ ଗ୍ରହଣ କରିଥିଲେ ।

ନେତାଜୀ ସିଙ୍ଗାପୁର ଛାଡ଼ିବା ପୂର୍ବରୁ ଭାରତୀୟ ଜାତୀୟ ସେନାବାହିନୀ (I.N.A.) ଉଦ୍ଦେଶ୍ୟରେ ଏକ ବାର୍ତ୍ତା ଦେଇଥିଲେ ଓ ଏହି ସଙ୍କଟମୟ ପରିସ୍ଥିତିରେ କଣ କରିବାକୁ ହେବ, ସେଥିପାଇଁ ମଧ୍ୟ କିଛି ନିର୍ଦ୍ଦେଶ ଦେଇଯାଇଥିଲେ । ଆଜାଦ ହିନ୍ଦ୍ ଫୌଜକୁ ୧୯୪୫ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ ବିଦାୟକାଳୀନ ପ୍ରୋତ୍ସାହନବାଣୀ ଶୁଣାଇବାକୁ ଯାଇ ସେ କହିଥିଲେ :

"ବନ୍ଧୁଗଣ ! ଆମ ମାତୃଭୂମିର ସ୍ୱାଧୀନତା ପାଇଁ ଆମେ ଯେଉଁ ସଂଗ୍ରାମ ଚଳାଇଛେ ସେଇ ମହାନ୍ ମୁହୂର୍ତ୍ତିରେ ଆମ୍ଭମାନଙ୍କୁ ଏକ ସ୍ୱପ୍ନାତୀତ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା । ଏଥିରେ ଭାଙ୍ଗିପଡ଼ିବାର କିଛି ନାହିଁ । ଆପଣମାନେ ବୋଧହୁଏ ଗୁରୁତର ମାନସିକ ଗ୍ଲାନି ଭିତରେ ଭାବୁଥିବେ ଯେ, ଜନ୍ମଭୂମିକୁ ମୁକ୍ତକରିବାଦିଗରେ ପାଳନ କରୁଥିବା ମହାନ୍ ବ୍ରତ ଆପଣମାନଙ୍କର ବିଫଳ ହୋଇଛି । କିନ୍ତୁ ମନେରଖନ୍ତୁ, ବିଫଳତା ହିଁ ସଫଳତାର ସୋପାନ ଏବଂ ଏହି ଗ୍ଲାନି ଅତ୍ୟନ୍ତ କ୍ଷଣିକ । ଅତୀତରେ ଆମର ସେନାବାହିନୀ ଯେଉଁ ବୀରତ୍ୱ, ଅସୀମ ସାହସ, ଦୃଢ଼ତା ତଥା ସଫଳତା ହାସଲ କରିଛନ୍ତି, ତାର ପଟାନ୍ତର ନାହିଁ ଏବଂ କୌଣସି କ୍ଷଣିକ ବିଫଳତା ଓ ପରାଜୟର ଗ୍ଲାନି ଏହାକୁ ଗ୍ରାସ କରି ନପାରେ । ଆପଣମାନଙ୍କ ମଧ୍ୟରୁ ଅଧିକାଂଶ ଇଣ୍ଡୋବର୍ମାର ସୀମାନ୍ତରେ ଏବଂ ଭାରତ ଭିତରେ ସଂଗ୍ରାମ-ଜର୍ଜରିତ ହୋଇ ଅକଳ୍ପନୀୟ କଷଣ ବରଣ କରିଛନ୍ତି । ବହୁ ଦୁଃଖ, ନିର୍ଯାତନା ଆପଣଙ୍କୁ ଭୋଗିବାକୁ ପଡ଼ିଛି । ଆପଣମାନଙ୍କ ଭିତରୁ ଅନେକ ବନ୍ଧୁ ମୃତ୍ୟୁଭୂମିରେ ପ୍ରାଣଦାନକରି ଆଜାଦ ହିନ୍ଦ୍ ଫୌଜର 'ଅମର ସହିଦ' ସମ୍ମାନ ଲାଭ କରିଛନ୍ତି । ଏହି ଗୌରବାବହ ଆତ୍ମୋତ୍ସର୍ଗ ବିଫଳତାରେ ପରିଣତ ହୋଇ ନପାରେ ।

"ବନ୍ଧୁଗଣ ! ଆମେ ବର୍ତ୍ତମାନ ଏକ ଅନ୍ଧକାର ମୁହୂର୍ତ୍ତରେ ପଦାର୍ପଣ କରିଛେ । ବର୍ତ୍ତମାନ ଲକ୍ଷ୍ୟପଥରେ ଆଗେଇଯିବାକୁ ହେଲେ ଆମକୁ ଆତ୍ମସଂଯମର ଆଲୋକ ଗ୍ରହଣ କରିବାକୁ ହେବ । ଏକ ସଚ୍ଚା ବିପ୍ଳବୀ ସେନାବାହିନୀର ଆଚରଣଯୋଗ୍ୟ ମର୍ଯ୍ୟାଦା ତଥା ଶକ୍ତି ଆହରଣ ଦିଗରେ ଆଗେଇଯିବା ଆବଶ୍ୟକ । ଆପଣମାନେ ଯୁଦ୍ଧକ୍ଷେତ୍ରରେ ନିଜ ନିପୁଣତାର ପରିଚୟ ଦେଇଛନ୍ତି । ସାମର୍ଥ୍ୟ ଓ ଆତ୍ମୋତ୍ସର୍ଗର ଦୃଷ୍ଟାନ୍ତ ଚିରସ୍ମରଣୀୟ । ଏହି ସାମୟିକ ବିପର୍ଯ୍ୟୟବେଳେ ଆପଣମାନେ ହତାଶ ନ ହୋଇ ଆଶାବାଦୀ ହୁଅନ୍ତୁ ଓ ଅପରିମିତ ମନୋବଳ ପ୍ରଦର୍ଶନ କରନ୍ତୁ । ମୁଁ ଆପଣମାନଙ୍କୁ ଯେପରି ଭାବରେ ଜାଣିଛି, ଆପଣମାନଙ୍କ ଭିତରେ ଯେଉଁ ବୀରପୁରୁଷଙ୍କୁ ଦେଖିଛି, ସେଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ ଯେ, ଆପଣମାନେ ଏହି ଦୁଃସ୍ଥିତିରେ ଚରମ ମନୋବଳ, ସାହସ ଓ ଧୈର୍ଯ୍ୟ ଧାରଣ କରି ନିଜର ମସ୍ତକ ପୂର୍ବପରି ଉନ୍ନତ ରଖିବେ ଏବଂ ଅମାପ ଆଶା ଓ ବିଶ୍ୱାସର ସହିତ ଭବିଷ୍ୟତର ସମ୍ମୁଖୀନ ହେବେ ।

"ବନ୍ଧୁଗଣ ! ଆଜିର ଏହି ଚରମ ଦୁର୍ଦ୍ଦିନରେ ଜନ୍ମଭୂମିର ଅଠତିରିଶ କୋଟି ଲୋକ ଆମ୍ଭମାନଙ୍କୁ ପ୍ରତୀକ୍ଷିତ ନୟନରେ ଚାହିଁଛନ୍ତି । ଭାରତ ପାଇଁ ଆପଣମାନେ ସର୍ବଦା ବିଶ୍ୱସ୍ତ ରହନ୍ତୁ ଓ ଭାରତର ମୁକ୍ତିଦିଗରେ ଆପଣମାନେ ମୁହୂର୍ତ୍ତକ ପାଇଁ ସନ୍ଦିହାନ ହୁଅନ୍ତୁ ନାହିଁ । ଦିଲ୍ଲୀ ଆମର ଲକ୍ଷ୍ୟ ଓ ଏହି ଲକ୍ଷ୍ୟ ହାସଲ ପାଇଁ ପଥ ମଧ୍ୟ ଅନେକ । ଆପଣଙ୍କର ଓ ଆପଣମାନଙ୍କ ବନ୍ଧୁଗଣଙ୍କର ତ୍ୟାଗ ନିଶ୍ଚୟ ଲକ୍ଷ୍ୟ ପୂରଣ ଦିଗରେ ସହାୟକ ହେବ । ଏ ବିଶ୍ୱରେ ଏପରି କୌଣସି ଶକ୍ତି ନାହିଁ ଯେ ଭାରତକୁ ଆଉ ଅଧିକ କାଳ କବଳିତ କରି ରଖିପାରିବ । ଭାରତ ନିଶ୍ଚୟ ମୁକ୍ତିଲାଭ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।"

ଭାରତୀୟ ସ୍ୱାଧୀନତା ଲିଗ୍ ଓ ଆଜାଦ୍ ହିନ୍ଦ୍ ଫୌଜର ବିଭିନ୍ନ ଶାଖାମାନଙ୍କୁ ତାଙ୍କର ଶେଷ ନିର୍ଦ୍ଦେଶ ଲେଖାଯାଇଥାଏ । ନିର୍ଦ୍ଦେଶର ମୁଖ୍ୟ ବିଷୟ ଥିଲା ପରିସ୍ଥିତିର ତାଡ଼ନାରେ ପଡ଼ି ଯୁଦ୍ଧ କରିବା ପାଇଁ ଯଦି ଅସ୍ତ୍ରଶସ୍ତ୍ର ନ ମିଳିବ, ତାହେଲେ ଯୁଦ୍ଧ କରିବା ବନ୍ଦ ହୋଇଯିବ ସିନା; କିନ୍ତୁ ସେନାବାହିନୀ ଆତ୍ମସମର୍ପଣ କରିବ ନାହିଁ । ଯେକୌଣସି ପରିସ୍ଥିତି ପାଇଁ ସେନାବାହିନୀକୁ ପ୍ରସ୍ତୁତ ରହିବାକୁ ପଡ଼ିବ ।

ଜାପାନର ସାମରିକ କର୍ତ୍ତୃପକ୍ଷ ଏଥିଭିତରେ ସୁଭାଷଙ୍କ ପାଖକୁ ଏକ ଗୋପନୀୟ ବାର୍ତ୍ତା ପଠାଇସାରିଥିଲେ । ତାଙ୍କର ନିରାପଦ ନିଷ୍କ୍ରମଣ ପାଇଁ ସେଥିରେ ତାଙ୍କୁ ପରାମର୍ଶ ଦିଆଯାଇଥିଲା । ଜାପାନର ସାମରିକ ବାହିନୀ ଏ ଦିଗରେ ତାଙ୍କୁ ସମ୍ଭାବ୍ୟ ସହଯୋଗ ଦେବେ ବୋଲି ସୂଚନା ଦିଆଯାଇଥିଲା । ସୁଭାଷ ଭାବିଲେ, ସେ ଏହି ଅନ୍ତିମ ମୁହୂର୍ତ୍ତରେ ରୁଷିଆର କୌଣସି ଅଞ୍ଚଳକୁ ଚାଲିଯାଇପାରିଲେ ତାଙ୍କଦ୍ୱାରା ହୁଏତ ବନ୍ଦୀ ହୋଇପାରନ୍ତି; କିନ୍ତୁ ଚରମ ନିର୍ଯ୍ୟାତନାରୁ ସେ ନିଶ୍ଚୟ ରକ୍ଷା ପାଇ ପାରିବେ ଓ ସୁଯୋଗର ଆଶୀର୍ବାଦ ନେଇ ପୁଣି ଥରେ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବେ ।

୧୬ ତାରିଖ ଅଗଷ୍ଟ ମାସ ୧୯୪୫ ମସିହା । ସାରା ରାତି ତାଙ୍କର ପରାମର୍ଶ, ଆଲୋଚନା ଓ ଭାବ-ବିନିମୟ ଚାଲିଥାଏ ମନ୍ତ୍ରିମଣ୍ଡଳର ସଦସ୍ୟ ତଥା ବିଶ୍ୱସ୍ତ ବନ୍ଧୁମାନଙ୍କ ସହିତ । ତାଙ୍କୁ ଏକ ଚରମ ସିଦ୍ଧାନ୍ତ ନେବାକୁ ହେବ ।

ରାତିର ଘନୀଭୂତ ଅନ୍ଧକାର ପର୍ଦ୍ଦା ଆସ୍ତେ ଅପସରିଯାଉଥାଏ । କୃଷ୍ଣ-କୁଞ୍ଚିତ ଆକାଶରେ ଭସା ମେଘର ଆଲେଖ୍ୟ । ମେଘାବୃତ୍ତ ଗଗନମଣ୍ଡଳରେ ଏକ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ । ବାଦଲବାହିନୀର ଗୁରୁଗମ୍ଭୀର ଧ୍ୱନି । ନେତାଜୀ ସୁଦୂର ନଭୋମଣ୍ଡଳକୁ ନିରୀକ୍ଷଣ କରୁଥାନ୍ତି । ହାତରେ କଲମ ଚଞ୍ଚଳ ହୋଇଉଠିଛି । ପୂର୍ବ-ଏସିଆରେ ଥିବା ତିନିକୋଟି ଭାରତୀୟ ଭାଇଭଉଣୀଙ୍କ ଉଦ୍ଦେଶ୍ୟରେ ସେ ତାଙ୍କର ମାର୍ମିକ ଅନ୍ତିମ ଅଭିଭାଷଣ ଲେଖୁଥାନ୍ତି :

"ମୋର ପ୍ରିୟ ଭାଇ ଓ ଭଉଣୀମାନେ !

"ମୁକ୍ତି-ସଂଗ୍ରାମ ଇତିହାସର ଏକ ଉଜ୍ଜ୍ୱଳ ଅଧ୍ୟାୟର ଅବସାନ ହୋଇଛି । ପୂର୍ବ-ଏସିଆର ଭାରତୀୟ ଭାଇଭଉଣୀମାନଙ୍କର ନାମ ଏହି ଅଧ୍ୟାୟରେ ଅମର ହୋଇ ରହିବ ।

"ଭାରତର ସ୍ୱାଧୀନତା ପାଇଁ ଆପଣମାନେ ଯେଉଁ ଅକୁଣ୍ଠ ସହଯୋଗ, ଆତ୍ମତ୍ୟାଗ, ଧନ, ଜୀବନ, ସ୍ୱାର୍ଥ, ସମ୍ଭୋଗ ଦାନ କରିଛନ୍ତି, ତାହା ମହାନ୍ ଦେଶାତ୍ମବୋଧର ମହିମାମୟ ଉଦାହରଣ । ମୁଁ ଯେତେବେଳେ ବିପ୍ଳବର ଆହ୍ୱାନ ଦେଲି, ସେତେବେଳେ ଆପଣମାନେ ସର୍ବାନ୍ତଃକରଣରେ ଯେପରି ଭାବରେ ସ୍ୱତଃସ୍ଫୂର୍ତ୍ତି ହୃଦୟ ଦାନକଲେ, ତାହା ମୋ ପାଇଁ ଚିରସ୍ମରଣୀୟ ହୋଇ ରହିବ । ଆପଣମାନଙ୍କର ପୁତ୍ରକନ୍ୟାମାନଙ୍କର ଏକ ଶ୍ରେଷ୍ଠାଂଶ ଅବାରିତ ସ୍ରୋତ ଆଜାଦ୍ ହିନ୍ଦ୍ ଫୌଜ, ଝାନ୍ସି ରାଣୀ ରେଜିମେଣ୍ଟରେ ସାମିଲ ହେବାପାଇଁ ଯେପରି ଭାବରେ ପ୍ରବାହିତ ହେଉଥିଲା, ତାହା ମଧ୍ୟ ଇତିହାସର ଏକ ବିସ୍ମୟ । ଆପଣମାନେ ପ୍ରକୃତରେ ଭାରତମାତାର ଯୋଗ୍ୟ ସନ୍ତାନ ।

"ଆପଣମାନଙ୍କ ଦୁଃଖାବେଗ ସହିତ ମୁଁ ନିଜକୁ ଏକୀଭୂତ କରି କହୁଛି ଯେ ଆମର ଏତେ ତ୍ୟାଗ ଓ ଯାତନାର ଆଶୁ ଉପକାର ହଠାତ୍ କିଛି ମିଳିଲା ନାହିଁ । କିନ୍ତୁ ତ୍ୟାଗ କେବେହେଲେ ବିଫଳ ହୁଏ ନାହିଁ···ଦିନେନା ଦିନେ ତାର ଫଳ ମଣିଷ ପାଖକୁ ଅପ୍ରତ୍ୟାଶିତ ଭାବରେ ଆସେ । ସେ ତ୍ୟାଗ ମାତୃଭୂମିର ମୁକ୍ତି ଲକ୍ଷ୍ୟକୁ ମହିମାମଣ୍ଡିତ କରିଛି ଏବଂ ଆନନ୍ଦର କଥା ଯେ ଏହା ସାରା ପୃଥିବୀରେ ଥିବା ଭାରତୀୟମାନଙ୍କ ପାଇଁ ଚିରଦିନ ପ୍ରୋତ୍ସାହନର ଉତ୍ସରୂପେ କାର୍ଯ୍ୟ କରିବ । ଭାରତର ଭବିଷ୍ୟତ ବଂଶଧର ଆପଣମାନଙ୍କ ଏହି ମହାନ୍ ଆଦର୍ଶରେ ଅନୁପ୍ରାଣିତ ହେବେ ଏବଂ ଭାରତର ମୁକ୍ତିବେଦୀରେ ଯେ ଆପଣ-ମାନେ ନିଜର ସର୍ବସ୍ୱ ଅର୍ପଣ କରିଛନ୍ତି ତାହା ସେମାନଙ୍କୁ ଚିରଦିନ ଉଦ୍‌ବୁଦ୍ଧ କରିବ ।

"ଇତିହାସର ଏହି ଅଭୂତପୂର୍ବ ସଙ୍କଟକାଳୀନ ମୁହୂର୍ତ୍ତରେ ମୋର ଏକମାତ୍ର ସନ୍ଦେଶ ଆଶ୍ୱାସନାର ବାଣୀ ହେଉଛି, ଏହି ସାମୟିକ ବିଫଳତାରେ ଆପଣମାନେ ହତାଶ ହୁଅନ୍ତୁ

ନାହିଁ; ଆତ୍ମଶକ୍ତିକୁ ଉଦ୍ଦୀପିତ ରଖନ୍ତୁ, ମନକୁ ଉଲ୍ଲସିତ କରନ୍ତୁ—ସର୍ବୋପରି ଭାରତର ମୁକ୍ତି ଉପରେ ବିଶ୍ୱାସ ରଖନ୍ତୁ । ପୃଥିବୀର କୌଣସି ଶକ୍ତି ଭାରତକୁ ଦାସ କରି ରଖିନପାରେ । ଭାରତ ଖୁବ୍ ଶୀଘ୍ର ତାର ସ୍ୱାଧୀନତା ହାସଲ କରିବ । ଜୟ ହିନ୍ଦ୍ ।"

ଶେଷ ପଙ୍‌କ୍ତି ଲେଖାସରିଗଲା । ସୁଭାଷ ପୂର୍ବାଶାକୁ ଚାହିଁଲେ । ସିନ୍ଦୂର ଫାଟିଲାଣି । ରାତ୍ରିର ଅନ୍ଧକାର ଲିଭିଗଲାଣି । ନବୀନ ପ୍ରଭାତ ଏକ ଚରମ ସମ୍ବାଦ ନେଇ ତାଙ୍କ ପାଖକୁ ଆସିଛି । ଅନିଶ୍ଚିତତାକୁ ଜୀବନର ପାଥେୟ କରି ତାଙ୍କୁ ବିଦାୟ ନେବାକୁହେବ । ଆକାଶରେ ମେଘାବର୍ତ୍ତି; ସତେ ଯେପରି ତାଙ୍କ ମନର ମେଘଗୁଡ଼ାକ ଊର୍ଦ୍ଧ୍ୱକୁ ଉଠି ଶୂନ୍ୟରେ ମିଳାବାଛନ୍ତି ।

ତାଙ୍କ ହାତରେ ସମୟ ଖୁବ୍ ଅଳ୍ପ । ଜାପାନର ଏକ ଯୁଦ୍ଧଜାହାଜ ଆସି ଅପେକ୍ଷା କରିଛି ତାଙ୍କୁ ସିଙ୍ଗାପୁରରୁ ବ୍ୟାଙ୍କକ୍ ନେଇଯିବ ବୋଲି । ନେତାଜୀଙ୍କ ଭିତରେ ଯାତ୍ରା-କାଳୀନ ଚଞ୍ଚଳତା ପ୍ରକାଶ ପାଇଛି । ନିଜର ଅତି ଦରକାରୀ ଚଳନୀୟ ଜିନିଷପତ୍ର ସଜାଡ଼ି ନେଲେ । ବିଦାୟ ମୁହୂର୍ତ୍ତ ଆସି ପହଞ୍ଚିଲା । ନେତାଜୀ ତାଙ୍କର କେତେଜଣ ବିଶ୍ୱସ୍ତ ସହକର୍ମୀଙ୍କୁ ନେଇ ବିମାନ ମଧ୍ୟରେ ପ୍ରବେଶ କଲେ । ତାଙ୍କ ଗହଣରେ ଥିଲେ କର୍ଣ୍ଣେଲ ହବିବୁର୍ ରହମନ୍, କର୍ଣ୍ଣେଲ ପ୍ରୀତମ୍ ସିଂ, ଏସ୍. ଏ. ଆୟାର ପ୍ରମୁଖ । ଠିକ୍ ସମୟରେ ବିମାନ ଯାଇ ପହଞ୍ଚିଲା ବ୍ୟାଙ୍କକ୍‌ରେ ।

ନେତାଜୀଙ୍କର ଦର୍ଶନ ପାଇଁ ପ୍ରବଳ ଜନଭିଡ଼ । ବ୍ୟାଙ୍କକ୍‌ର ଭାରତୀୟମାନେ ଏକ ଅଭୂତପୂର୍ବ ଉତ୍କଣ୍ଠା ଭିତରେ ନେତାଜୀଙ୍କୁ ଚାହିଁଥାନ୍ତି । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ଧକାରପୂର୍ଣ୍ଣ ମୁହୂର୍ତ୍ତରେ ଏକମାତ୍ର ଆଶାର ଆଲୋକଶିଖା ନେତାଜୀ । ତାଙ୍କର ଭବିଷ୍ୟତ କର୍ମପନ୍ଥା କଣ, ତାଙ୍କର ଗନ୍ତବ୍ୟ ସ୍ଥଳ କେଉଁଠିକି, ମୁକ୍ତି-ସଂଗ୍ରାମକୁ ଉଜ୍ଜୀବିତ କରି ରଖିବା-ପାଇଁ ସେ କଣ କରିବାକୁ ଯାଉଛନ୍ତି—ଏହା ଜାଣିବା ନିମିତ୍ତ ପ୍ରତ୍ୟେକଙ୍କ ମଧ୍ୟରେ ପ୍ରବଳ ଉତ୍ସୁକତା ।

ମାତ୍ର ଗୋଟିଏ ଦିନର ରହଣି । ନେତାଜୀଙ୍କର ପ୍ରତ୍ୟେକ ମିନିଟ୍ ଅତ୍ୟନ୍ତ କର୍ମମୁଖର । ଭୋଜନ ଓ ବିଶ୍ରାମ ପାଇଁ ମଧ୍ୟ ସମୟର ଅଭାବ । ପ୍ରତ୍ୟେକ ମୁହୂର୍ତ୍ତ ଅତୀବ ଗୁରୁତ୍ୱପୂର୍ଣ୍ଣ । ଆଲାପ, ଆଲୋଚନା, ପରାମର୍ଶ, ହୃଦୟ-ବିନିମୟ, ସମ୍ଭାଷଣ, ସମ୍ବୋଧନ ପ୍ରଭୃତିରେ ସେ ମଗ୍ନ । ରାତି ପାହିଲେ ତାଙ୍କୁ ପୁଣି ସେଇ ଅଜ୍ଞାତ ଯାତ୍ରାର ଅସମାପ୍ତ ଅଧ୍ୟାୟ ଆରମ୍ଭ କରିବାକୁ ହେବ । ରାତ୍ରିର ଅନ୍ଧକାର ମଧ୍ୟ ଅସହାୟ ମନେକରୁଛି ଉନ୍ନିଦ୍ର ନୟନକୁ ନିମୀଳିତ କରିବା ପାଇଁ ।

ପରଦିନ ପ୍ରତ୍ୟୁଷ ଆସିଛି । ୧୯୪୫ ମସିହା ଅଗଷ୍ଟ ୧୭ ତାରିଖ । ବ୍ୟାଙ୍କକ୍‌ରୁ ସାଇଗନ୍ ଯିବାପାଇଁ ବିମାନବନ୍ଦରରେ ପହଞ୍ଚିଲେ । ନିଜ ଭିତରେ ଅସରନ୍ତି ଉତ୍କଣ୍ଠାର ପଞ୍ଝୁଆର । ତାଙ୍କ ସହିତ ଯାତ୍ରାପଥର ସାଥୀ ହୋଇଛନ୍ତି ତାଙ୍କର କେତେଜଣ ଅତି ବିଶ୍ୱସ୍ତ

ସହକର୍ମୀ ଆଉ ବନ୍ଧୁ । ସେମାନଙ୍କ ମଧ୍ୟରେ ଅଛନ୍ତି କର୍ଣ୍ଣେଲ ହବିବୁର ରହମାନ, ପ୍ରୀତମ୍ ସିଂ, ଆବିଦ, ହାସାନ୍, ଜେନେରାଲ ଇସୋଦା ପ୍ରଭୃତି । ଆବେଗ, ଉତ୍କଣ୍ଠା ଓ ଅନିଶ୍ଚିତତାର ଏକ ସାନ୍ଦ୍ର ସମାବେଶ । ବିମାନ ଠିକ୍ ସମୟରେ ଯାଇ ପହଞ୍ଚିଲା ସାଇଗନ୍ ବିମାନ-ବନ୍ଦରରେ । ନେତାଜୀ ଓ ତାଙ୍କର ବନ୍ଧୁଗଣ କିଛି ସମୟ ବିଶ୍ରାମ ପାଇଁ ଚାଲିଗଲେ ଭାରତୀୟ ଜାତୀୟ ବାହିନୀର ସାଇଗନ୍ ଶାଖାର ଜଣେ କର୍ମକର୍ତ୍ତାଙ୍କ ଗୃହକୁ—ଅଳ୍ପ ସମୟର ବିଶ୍ରାମ ।

ଜାପାନ ସାମରିକ ବାହିନୀର ଏକ ବିମାନ ଅପେକ୍ଷା କରିଛି ତାଙ୍କୁ ନେଇଯିବା ପାଇଁ । ହାତରେ ସମୟ ଖୁବ୍ ଅଳ୍ପ । ବିମାନରେ ଅନ୍ୟମାନଙ୍କପାଇଁ ସ୍ଥାନାଭାବ । କୌଣସିମତେ ନେତାଜୀଙ୍କୁ ସ୍ଥାନ ଦେବାର ବ୍ୟବସ୍ଥା ହୋଇଥାଏ । ତେବେ ବହୁ କଷ୍ଟରେ ତାଙ୍କ ସହିତ କର୍ଣ୍ଣେଲ ହବିବୁର୍ ରହମାନଙ୍କୁ ଯିବାପାଇଁ ସୁଯୋଗ ମିଳିଲା । ସାଇଗନ ବିପଦମୁକ୍ତ ନୁହେଁ । ତାଙ୍କୁ ଯେତେ ଶୀଘ୍ର ତାକୁ ଛାଡ଼ି ଚାଲିଯିବାକୁ ହେବ ।

ଅନିଶ୍ଚିତତା ତଥା ଆକସ୍ମିକତା ଉପସ୍ଥିତ ମୁହୂର୍ତ୍ତର ଏକମାତ୍ର ବଳିଷ୍ଠ ନିର୍ଦ୍ଦେଶକ । ସମୟର ନିର୍ଦ୍ଦେଶନା ମାନିନେବାକୁ ହେବ ।

ଉଭୟେ ଯାଇ ବସିଲେ ବିମାନରେ । ଅନ୍ୟମାନେ ଅଶ୍ରୁପ୍ଲାବିତ ନୟନରେ ତାଙ୍କୁ ବିଦାୟ ସଂବର୍ଦ୍ଧନା ଦେଲେ । ନେତାଜୀ ଅଶ୍ରୁ ସମ୍ବରଣ କରି ଅଧର ଉପକଣ୍ଠରେ ଏକ କରୁଣ ଅଥଚ ଦୃଢ଼ ସ୍ମିତରେଖା ଖେଳାଇ ସେମାନଙ୍କୁ ବିଦାୟ ସମ୍ଭାଷଣ ଜଣାଇଲେ । ବିମାନଟି ବିଶ୍ୱର ଏକ ମହାନ୍ ବିପ୍ଳବୀଙ୍କୁ ନେଇ ଦୃପ୍ତଭଙ୍ଗୀରେ ଉପରକୁ ଉଠିଲା । ଆକାଶରେ ମେଘମାଳାର ଗୁରୁଗମ୍ଭୀର ଧ୍ୱନି, ତାକୁ ପ୍ରତିହତ କରି ବିମାନ ଘର୍ଘର ଶବ୍ଦରେ ଗଗନ-ମଣ୍ଡଳ ପ୍ରକମ୍ପିତ କରି ଶୂନ୍ୟ ବୁକୁରେ ଉଡ଼ିଗଲା ନୟନସୀମାର ବାହାରକୁ । ନେତାଜୀ ବିମାନଯାତ୍ରା କରିବା ପରେ ଯେଉଁମାନେ ରହିଗଲେ ତାଙ୍କ ଭିତରେ ଗଭୀର ଉତ୍କଣ୍ଠା ପ୍ରକାଶ ପାଇଥିଲା । ଜାପାନର ସାମରିକ କର୍ତ୍ତୃପକ୍ଷ ଆଉ ଏକ ବିମାନରେ ନେଇଯିବା ପାଇଁ ପ୍ରତିଶ୍ରୁତି ଦେଲେ ।

ବିମାନଟି ସାଇଗନ୍‌ରୁ ଯାଇ ସେଦିନ ସନ୍ଧ୍ୟା ସୁଦ୍ଧା ତାଉରେନ୍‌ରେ ପହଞ୍ଚିଲା । ବିମାନର ଯାତ୍ରାପଥ ଥିଲା ସାଇଗନ୍-ତାଉରେନ୍-ହିଟୋ-ତାଇହୋ (ଫର୍ମୋଜା)-ମାଞ୍ଚୁରିଆ-ଟୋକିଓ । ତାଉରେନ୍‌ରେ ପହଞ୍ଚିବାର ସମୟ ଥିଲା···ପ୍ରାୟ ସନ୍ଧ୍ୟା ଛଅଟା । ରାତ୍ରିରେ ଯାତ୍ରା କରିବାକୁ ବିମାନଚାଳକ ଚାହିଁଲେ ନାହିଁ । ତେଣୁ ସେଠାରେ ସେମାନେ ରାତ୍ରି ଯାପନକଲେ ।

ପରଦିନ ୧୯୪୫ ମସିହା ଅଗଷ୍ଟ ଅଠର ତାରିଖ । ପୂର୍ବାକାଶରେ ସୂର୍ଯ୍ୟଙ୍କର ଉଦୟନ ଉତ୍ସବ ଆରମ୍ଭ ହୋଇଥାଏ । ଆକାଶ ଫରୁଆ । ପାଗ ଅନୁକୂଳ । ସକାଳ ୫ଟା ସମୟରେ ବିମାନଯାତ୍ରା ଆରମ୍ଭ ହେଲା । ଯାତ୍ରୀମାନେ ନିଜ ନିଜ ସ୍ଥାନରେ ଯାଇ ବସିଲେ । ଏହା ଗୋଟିଏ ବୋମାବର୍ଷୀ ବିମାନ ହୋଇଥିବାରୁ ସିଟ୍ ବେଲ୍ଟ୍ ନଥିଲା । ପ୍ରତ୍ୟେକେ

ଅବନ୍ଧା ଅବସ୍ଥାରେ ପୂର୍ବପରି ବସିଥିଲେ । ବର୍ତ୍ତମାନ ବିମାନଟି ତାଇରେନ୍‌ରୁ-ହିଟୋ ଅଭିମୁଖରେ ଆକାଶମାର୍ଗରେ ଗତି କରୁଛି । କୌଣସି ପ୍ରକାର ପ୍ରତିକୂଳ ପରିସ୍ଥିତିର ସୂଚନା ନାହିଁ । ୧୨୦୦୦ ଫୁଟ୍ ଉଚ୍ଚରେ ବିମାନଟି ଉଡ଼ୁଛି । ବିମାନର ଅବାଧ ଗତି, ପାଗର ଅନୁକୂଳତା ଓ ଇଞ୍ଜିନ୍‌ର ତ୍ରୁଟିହୀନ କାର୍ଯ୍ୟଦକ୍ଷତା ଦୃଷ୍ଟିରୁ ବିମାନଚାଳକ ହିଟୋରେ ଅବତରଣ ନ କରି ଆଉ କିଛିବାଟ ଆଗେଇଯିବାକୁ ସ୍ଥିର କଲେ ଫର୍ମୋଜାର ରାଜଧାନୀ ତାଇହୋକୁ । ବିମାନ ଯାଇ ସୁବିଧାରେ ତାଇହୋ ବିମାନ ବନ୍ଦରରେ ପ୍ରାୟ ମଧ୍ୟାହ୍ନ ଘ ୧୧·୩୦ ମିନିଟ ସମୟରେ ଅବତରଣ କଲା ।

ସମସ୍ତ ଯାତ୍ରୀ ବିମାନରୁ ବାହାରକୁ ବାହାରି ଆସିଲେ । ନେତାଜୀ ପ୍ରଫୁଲ୍ଲ ଦେଖା-ଯାଉଥାନ୍ତି । ହବିବୁର ରହ୍ମମନ୍‌ଙ୍କ ସହିତ ଆମୋଦପୂର୍ଣ୍ଣ କଥାବାର୍ତ୍ତା କଲେ । ବିମାନ ବନ୍ଦର ମଧ୍ୟରେ ଥିବା ବିଶ୍ରାମକକ୍ଷରେ ବିଶ୍ରାମ କରି ସାମାନ୍ୟ ଜଳଯୋଗ କଲେ । ଜାପାନୀ ବନ୍ଧୁମାନଙ୍କ ସହିତ ହାର୍ଦ୍ଦିକ ହୃଦୟ ବିନିମୟ ।

ଜଣାଗଲା ଇଞ୍ଜିନ୍‌ର ବାମ ପାଖ ଭଲ କାମ କରୁନାହିଁ । କିଛି ତ୍ରୁଟିବିଚ୍ୟୁତି ଦେଖା-ଦେଇଛି । ମୁଖ୍ୟ ପାଇଲଟ୍ ମେଜର୍ 'ତାକିଜାଓ୍ୱା' ଏବଂ ଷ୍ଟାଫ୍ ଅଫିସର ମେଜର୍ 'ତାରୋକୋନୋ' ବିମାନର ତ୍ରୁଟି ନିର୍ଣ୍ଣୟ କରିବା ପାଇଁ ଲାଗିପଡ଼ିଲେ । ଜେନେରାଲ ସିଦେଇ ଓ ବର୍ମାବାହିନୀର ସାମରିକ ଅଫିସର ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ ତାଦୋ ସାକାଇଙ୍କ ସହିତ ନେତାଜୀ ସୁଭାଷ ଆଲୋଚନା କରୁଥାନ୍ତି । ତ୍ରୁଟି ସୁଧାରି ନିଆଗଲା ବୋଲି କୁହାଗଲା ।

ସମସ୍ତେ ନିଜର ନିର୍ଦ୍ଧାରିତ ସ୍ଥାନରେ ବସିଲେ । ଜେନେରାଲ୍ ସିଦେଇ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ହବିବୁର ରହମନ୍ ବିମାନରେ ସବୁଠାରୁ ଭଲ ସିଟ୍ ପାଇଥିଲେ । ବିମାନରେ ମୋଟ ୧୩ଜଣ ବ୍ୟକ୍ତି ଯାତ୍ରା କରୁଥିଲେ । ନେତାଜୀ ଭାରତୀୟ ଜାତୀୟ-ବାହିନୀର ସାମରିକ ପୋଷାକ ପିନ୍ଧିଥିଲେ । ମୁଣ୍ଡରେ ତାଙ୍କର ସାମରିକ ଟୋପି ଓ ପୋଷାକରେ I.N.A. ବ୍ୟାଜ୍ ଥିଲା । କେତେକ ଯାତ୍ରୀ ସିଟ୍ ଅଭାବରୁ ତଳେ ଚଟା ପକାଇ ବସିଥିଲେ । ଆଓ୍ୱାଗି ଥିଲେ ସହଯୋଗୀ ବିମାନଚାଳକ । ସେମାନଙ୍କ ସହିତ ଥିଲେ ବିମାନବାହିନୀର ଇଞ୍ଜିନିଅର କେଇକଚ ଅରାଇ ।

ମୁଖ୍ୟ ବିମାନଚାଳକଙ୍କ ଠିକ୍ ପଛକୁ ବସିଥିଲେ ନେତାଜୀ ସୁଭାଷ ଓ ତାଙ୍କ ପାଖକୁ ଲେଫ୍‌ଟନାଣ୍ଟ ଜେନେରାଲ ସିଦେଇ । ପଛକୁ ଥିଲା ପେଟ୍ରୋଲ ଟାଙ୍କି । ହବିବୁର ରହ୍ମମନ୍ ଟାଙ୍କି ପାଖରେ ନେତାଜୀଙ୍କ ଠିକ୍ ପଛକୁ ବସିଥିଲେ । ସମୟ ପ୍ରାୟ ଅପରାହ୍ନ ୨ଟା ।

ଘର୍ଘର ଶବ୍ଦ କରି ବିମାନ ଆକାଶମାର୍ଗକୁ ଉଠିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନ୍ ନେତା ସୁଭାଷ ଚନ୍ଦ୍ର ବୋଷ ଓ ଅନ୍ୟ ଯାତ୍ରୀମାନଙ୍କୁ ନେଇ ବିମାନଟି ଆକାଶ ମାର୍ଗରେ ଯାତ୍ରା ଆରମ୍ଭକଲା । ବିମାନଟି ଆକାଶକୁ ଉଠିବାବେଳେ ସାମାନ୍ୟ ଅସ୍ୱାଭାବିକତା ଅନୁଭୂତ ହୋଇଥିଲା । ହଠାତ୍ ଏକ ଭୟଙ୍କର ବିସ୍ଫୋରଣ ଶୁଣାଗଲା । ବିମାନର ପ୍ରପେଲର୍

ଓ ଇଞ୍ଜିନ ସହ ବିମାନ ତଳକୁ ଖସିପଡ଼ିଲା ଓ ବାଡ଼େଇ ହୋଇ ଅଗ୍ନିମିଳୁଲାକେ ଦୁଇଖଣ୍ଡ ହୋଇ ହୁ-ହୁ ହୋଇ ଜଳିଉଠିଲା । ଯାତ୍ରୀମାନଙ୍କ ମଧ୍ୟରୁ କେତେକଙ୍କ ଦେହରେ ନିଆଁ ଲାଗିଯାଇଛି । ଆଉ କେତେକ କ୍ଷତବିକ୍ଷତ ହୋଇ ରକ୍ତାକ୍ତ ଅବସ୍ଥାରେ ଆର୍ତ୍ତ ଚିତ୍କାର କରୁଛନ୍ତି । ଆଉ କେତେକ ସାମାନ୍ୟ ଆଘାତ ପାଇ ଛିଟିକି ପଡ଼ିଛନ୍ତି; ଅଥଚ ସେମାନଙ୍କର ଜୀବନ ରକ୍ଷା ହୋଇଯାଇଛି ।

ହବିବୁର୍ ରହମନ୍ ପ୍ରାଣବିକଳରେ ନେତାଜୀଙ୍କୁ ଟାଣିଆଣିଛନ୍ତି ଅଗ୍ନିଶିଖା ଭିତରୁ । ନିଜ ଦେହରେ ନିଆଁ ଲାଗିଲେ ମଧ୍ୟ ସେ ଭୂଇଁରେ ଗଡ଼େଇ ହୋଇ ଲିଭାଇ ପାରିଛନ୍ତି । ନେତାଜୀଙ୍କୁ ଭୂଇଁରେ ଗଡ଼ାଇ କୌଣସିମତେ ନିଆଁକୁ ଆୟତ୍ତ କରିବାରେ ତାଙ୍କର ଆପ୍ରାଣ ଚେଷ୍ଟା । ସେ ବହୁକଷ୍ଟରେ ସମସ୍ତ ପୋଷାକପତ୍ର ଦେହରୁ ଟାଣି ଅଲଗା କରୁଛନ୍ତି । ବିମାନର ପେଟ୍ରୋଲ ଟାଙ୍କିର ପେଟ୍ରୋଲ ପଡ଼ି ନେତାଜୀଙ୍କ ଦେହରେ ନିଆଁ ଲାଗିଯାଇଛି । ମୁଣ୍ଡର ବାମ ପାଖରେ ଏକ ଭୟଙ୍କର କ୍ଷତ । ଝରଝର ରକ୍ତ ଝରୁଛି । ନିଆଁର ପ୍ରଚଣ୍ଡ ତାପରେ ସାରା ଶରୀର ତଥା ମୁହଁ ପ୍ରାୟ ସିଝିଯାଇଛି । ମୁଣ୍ଡର ବାଳ ସବୁ ପୋଡ଼ିଯାଇଛି ।

ହବିବୁର ରହମନ୍ ମଧ୍ୟ ମୁଣ୍ଡରେ ଆଘାତ ପାଇ ରକ୍ତାକ୍ତ ଅବସ୍ଥାରେ ଅଛନ୍ତି । ହାତ ଆଙ୍ଗୁଠିଗୁଡ଼ିକରେ ନିଆଁ ଲାଗି ତାକୁ କ୍ଷତାକ୍ତ କରିଛି ।

ଆସ୍ତେ ନିଆଁ ଲିଭିଗଲା । ସାରା ଶରୀରରେ ଅସମ୍ଭବ ପ୍ରକାର ଯନ୍ତ୍ରଣା । ନେତାଜୀ ତଥାପି ଅବିଚଳିତ ଅବସ୍ଥାରେ ଭୂଇଁରେ ପଡ଼ିଥାନ୍ତି । ଅସ୍ୱାଭାବିକ ଭାବରେ ମୁହଁ ଫୁଲିଯାଇଛି । ଦେହରେ ଅର୍ଦ୍ଧଦଗ୍ଧ ପୋଷାକ, ଦୃଷ୍ଟିଶକ୍ତି ନଷ୍ଟ ହୋଇନି ଅଥଚ ପଲକ ପଡ଼ୁନି । ନିକଟରେ କେତେଜଣ ଯାତ୍ରୀ ମୃତ୍ୟୁ ସହିତ ସଂଘର୍ଷ କରୁଛନ୍ତି । ରକ୍ତଧାର ମାଟିକୁ ଭିଜାଇ ଦେଇଛି । ସେ ସେଇଆଡ଼କୁ ଚାହିଁଛନ୍ତି । କାହାକୁ ଚିହ୍ନି ହେଉନି ।

ନେତାଜୀ କରୁଣ କଣ୍ଠରେ କହିଲେ, "ରହମନ୍‌ଜୀ ! ଆଶାକରୁଛି ଆପଣ ବୋଧହୁଏ ଅଧିକ କ୍ଷତାକ୍ତ ହୋଇନାହାନ୍ତି । କିନ୍ତୁ ମୁଁ ଆଉ ବଞ୍ଚିବିନି ।" ରହମନ୍ ଆର୍ଦ୍ର କଣ୍ଠରେ କହିଲେ, "ଭଗବାନ ନିଶ୍ଚୟ ଆପଣଙ୍କୁ ରକ୍ଷା କରିବେ ।"

ନେତାଜୀଙ୍କର ସ୍ୱର ଆସ୍ତେ କ୍ଷୀଣ ହୋଇଆସିଲା । ସେ ହବିବୁର୍ ରହମନ୍‌ଙ୍କୁ କଂପିତ କଣ୍ଠରେ କହିଲେ, "ଆପଣ ଭାରତକୁ ଫେରିଗଲେ ପରେ ଦେଶବାସୀଙ୍କୁ କହିବେ, ମୁଁ ଭାରତର ମୁକ୍ତି ପାଇଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସଂଗ୍ରାମ କରି ଚାଲିଥିଲି । ସେମାନେ ଏହି ମୁକ୍ତି-ସଂଗ୍ରାମକୁ ଅବ୍ୟାହତ ରଖିବେ । ଭାରତ ନିଶ୍ଚୟ ତାର ସ୍ୱାଧୀନତା ଶୀଘ୍ର ଲାଭ କରିବ । ବିଶ୍ୱର କୌଣସି ଶକ୍ତି ଭାରତକୁ ଆଉ ଦାସତ୍ୱବନ୍ଧନରେ ଆବଦ୍ଧ କରି ରଖିପାରିବ ନାହିଁ ।"

ଜେନେରାଲ ସିଦେଇ ଦୁର୍ଘଟଣା ଘଟିବାକ୍ଷଣି ମୃତ୍ୟୁମୁଖରେ ପଡ଼ିଥିଲେ । ମୁଖ୍ୟ ବିମାନଚାଳକ ମେଜର ତାକିଜାଓ୍ୱା ମଧ୍ୟ ପ୍ରାଣତ୍ୟାଗ କରିଥିଲେ । ଅନ୍ୟ କ୍ଷତାକ୍ତମାନଙ୍କୁ ନିକଟରେ ଥିବା "ନାନ୍‌ମନ୍" ସାମରିକ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରାଗଲା । ଡାକ୍ତର

ଯୋଷିମି ଓ ଡାକ୍ତର ସୁରତ ତତ୍ପରତାର ସହିତ ଦୁର୍ଘଟଣାଗ୍ରସ୍ତ ଲୋକମାନଙ୍କର ସେବାରେ ଲାଗିପଡ଼ିଲେ ।

ନେତାଜୀ ଡାକ୍ତରଖାନାରେ ପହଞ୍ଚିଲାବେଳକୁ ତାଙ୍କ ସାରା ଶରୀର ସିଝିଯାଇ କଳା ପଡ଼ିଯାଇଥିଲା । ତାଙ୍କର ସେତେବେଳକୁ ଚେତାଥିଲା; କିନ୍ତୁ ଦେହରେ ଭୟଙ୍କର ଉତ୍ତାପ । ନାଡ଼ିର ଗତି କ୍ଷୀଣ । ଏଣେ ଅସହନୀୟ ଯନ୍ତ୍ରଣା ମଧ୍ୟରେ ବି ତାଙ୍କ କଣ୍ଠରୁ କାତର ବିକଳ କାନ୍ଦଣା ବା କୁହାଟ ଶୁଣାଯାଉନଥିଲା । ପାଖ କୋଠରୀରେ ଥିବା ଅନ୍ୟ ଯାତ୍ରୀମାନଙ୍କର କରୁଣ ଚିତ୍କାରରେ ପରିବେଶ କରୁଣତର ହୋଇଉଠିଥାଏ ।

ରାତିର ପ୍ରଥମ ପହରରେ ନେତାଜୀଙ୍କର ଅବସ୍ଥା ଉଦ୍‌ବେଗପୂର୍ଣ୍ଣ ପରିସ୍ଥିତିରେ ଆସି ପହଞ୍ଚିଲା । ନାଡ଼ିର ଗତିହେଲା କ୍ଷୀଣରୁ କ୍ଷୀଣତର । ଡାକ୍ତରମାନଙ୍କର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ତାଙ୍କୁ ରକ୍ଷା କରାଯାଇ ପାରିଲାନାହିଁ । ଭାରତର ସ୍ୱାଧୀନତାସୂର୍ଯ୍ୟ ଅସ୍ତମିତ ହୋଇଗଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ସାରଥି ନେତାଜୀ କାଳର କରାଳ ଚକ୍ରାନ୍ତରେ ଟଳିପଡ଼ିଲେ । ଏକ ମହାନ୍ ଆତ୍ମାର ମହାପ୍ରସ୍ଥାଣ ଘଟିଲା ।

## ( ୧୪ )

ନେତାଜୀ ସୁଭାଷଙ୍କ ମୃତ୍ୟୁପରେ ତାଙ୍କ ପରି ଜଣେ ମହାନ୍ ନେତାଙ୍କର ମୃତ୍ୟୁର କାରଣ ଜାଣିବା ପାଇଁ ସରକାରଙ୍କ ଉପରେ ଜନମତର ପ୍ରବଳ ଚାପ ପଡ଼ିଲା । ଲୋକସଭାରେ ଏ ସଂକ୍ରାନ୍ତରେ ଅରକୁଥର ଦାବୀ ଉପସ୍ଥାପିତ ହେଲା । ୧୯୫୫ ମସିହା ଡିସେମ୍ବର ମାସ ୩ ତାରିଖରେ ପ୍ରଧାନମନ୍ତ୍ରୀ ଲୋକସଭାରେ ନେତାଜୀଙ୍କ ମୃତ୍ୟୁ-ରହସ୍ୟ ଉଦ୍‌ଘାଟନ କରିବାକୁ ଏକ ତଦନ୍ତ କମିଟି ଗଠନ କରାଯିବ ବୋଲି ଘୋଷଣା କଲେ । ୧୯୫୬ ମସିହା ଏପ୍ରିଲ ୫ ତାରିଖରେ ନିମ୍ନଲିଖିତ ସଦସ୍ୟମାନଙ୍କୁ ନେଇ ତଦନ୍ତ କମିଟି ଗଠିତ ହେଲା ।

୧ । ଶାହନଓ୍ୱାଜ ଖାଁ (ଯେ କି ପୂର୍ବେ ଭାରତୀୟ ଜାତୀୟ ବାହିନୀର I.N.A. ମେଜର ଜେନେରାଲ ଥିଲେ ।)

୨ । ଏସ୍. ଏନ. ମୈତ୍ର, ଆଇ. ସି. ଏସ୍. (ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜର କମିଶନର ।)

୩ । ସୁରେଶଚନ୍ଦ୍ର ବୋଷ—ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବଡ଼ଭାଇ ।

ତଦନ୍ତ କାର୍ଯ୍ୟ ଅପ୍ରେଲ ମାସରେ ଆରମ୍ଭ ହୋଇ ଜୁଲାଇ ଶେଷ ଭାଗରେ ସରକାରଙ୍କୁ ରିପୋର୍ଟ ଦିଆଯାଇଥିଲା । କମିଟି ମୋଟ ଉପରେ ୬୭ଜଣ ସାକ୍ଷୀଙ୍କଠାରୁ ଜମାନବନ୍ଦୀ ନେଇଥିଲେ । ଏଥିପାଇଁ କମିଟିଙ୍କୁ ବିଭିନ୍ନ ସ୍ଥାନକୁ ଯିବାକୁ ପଡ଼ିଥିଲା ଓ ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ ସଂଗ୍ରହ କରିବାକୁ ପଡ଼ିଥିଲା । ଜାପାନର ଟୋକିଓ, ଥାଇଲାଣ୍ଡର ବ୍ୟାଙ୍କକ୍, ସାଇଗନ୍ ଓ ଭାରତର ଦିଲ୍ଲୀ, କଲିକତା ପ୍ରଭୃତିକୁ ଯାଇ ବିଭିନ୍ନ ସାକ୍ଷୀମାନଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ ।

ନେତାଜୀଙ୍କ ସହିତ ତାଙ୍କର ଶେଷ ବିମାନଯାତ୍ରାରେ ଯେଉଁ ଭାରତୀୟମାନେ ଯାତ୍ରା କରିଥିଲେ, ସେମାନଙ୍କଠାରୁ ମଧ୍ୟ ସାକ୍ଷ୍ୟ ଗ୍ରହଣ କରାଯାଉଥିଲା । କର୍ଣ୍ଣେଲ ହବିବୁର ରହମନ୍ ଯେ କି ନେତାଜୀଙ୍କର ଅତି ଅନ୍ତରଙ୍ଗ ଓ ବିଶ୍ୱସ୍ତ ଥିଲେ, ବିମାନଯାତ୍ରାବେଳେ ନେତାଜୀଙ୍କ ପଛରେ ବସିଥିଲେ ଏବଂ ଦୁର୍ଘଟଣାର ସମ୍ମୁଖୀନ ହୋଇ ମଧ୍ୟ ବଞ୍ଚିଯାଇଥିଲେ, ସେ ସାକ୍ଷ୍ୟ ଦେବା ପାଇଁ ପାକିସ୍ତାନରୁ ଭାରତକୁ ଆସିଥିଲେ । ତାଙ୍କର ପ୍ରତ୍ୟକ୍ଷ ବିବରଣୀ ଥିଲା ଖୁବ୍ ମୂଲ୍ୟବାନ ।

ଡାକ୍ତର ୟୋଶିମି ଓ ସୁରୁତ, ଯେଉଁମାନେ ନେତାଜୀଙ୍କୁ ନାନ୍‌ମନ୍ ସାମରିକ ଡାକ୍ତରଖାନାରେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେବା କରିଥିଲେ, ସେମାନେ ମଧ୍ୟ ତାଙ୍କର ଅନୁଭୂତିର ବିବରଣୀ କମିଟିଙ୍କୁ ଦେଇଥିଲେ । ଯେଉଁ ଜାପାନୀ ଅଫିସର୍‌ମାନେ ସେହି ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇଯାଇଥିଲେ, ସେମାନଙ୍କୁ ମଧ୍ୟ କମିଟି ସାକ୍ଷାତ୍ କରି ତାଙ୍କଠାରୁ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରିଥିଲେ । ପ୍ରତ୍ୟେକ ସାକ୍ଷୀଙ୍କର ବିବରଣୀ ପ୍ରାୟ ଏକପ୍ରକାରର ଥିଲା; ଅବଶ୍ୟ କେତୋଟି ଛୋଟ ଛୋଟ କଥାରେ ସାମାନ୍ୟ ବ୍ୟତିକ୍ରମ ଦେଖାଦେଇଥିଲା । ଫର୍ମୋଜାର ତାଇହୁକ୍ ବିମାନବନ୍ଦରରେ ବିମାନ ଦୁର୍ଘଟଣାରେ ଯେ ନେତାଜୀଙ୍କର ମହାପ୍ରୟାଣ ହୋଇଛି ଏହା ସମସ୍ତେ ଏକସ୍ୱରରେ ସ୍ୱୀକାର କରିଥିଲେ ।

କମିଟି ଅନୁସନ୍ଧାନରୁ ଜାଣିଥିଲେ ଯେ ମୃତ୍ୟୁପରେ ଜାପାନୀ ରୀତିରେ ନେତାଜୀଙ୍କୁ ଚଦର ଦ୍ୱାରା ଆବୃତ କରାଯାଇ ତାଙ୍କ ପାଖରେ ଫୁଲ ଓ ଧୂପ ସଜାଇ ଦିଆଯାଇଥିଲା । ତାଙ୍କର ମରଶରୀରକୁ ବିମାନଦ୍ୱାରା ଟୋକିଓ ପଠାଇଦେବା ପାଇଁ ସ୍ଥିର ହେଲା । ତାଙ୍କ ପାଇଁ ଏକ କଫିନ୍ ପ୍ରସ୍ତୁତ ହେଲା । ହବିବୁର ରହମନ୍ ମୃତ ଶରୀରକୁ ସିଙ୍ଗାପୁର ନେଇଯିବା ପାଇଁ ଜାପାନର ସାମରିକ ଅଫିସରଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ନେତାଜୀଙ୍କ ପାଇଁ ପ୍ରସ୍ତୁତ ହୋଇଥିବା କଫିନ୍ ଅପେକ୍ଷାକୃତ ବଡ଼ ହୋଇଯାଇଥିବାରୁ, ଏବଂ ଗୋଟିଏ ଛୋଟ ବୋମାବର୍ଷୀ ଉଡ଼ାଜାହାଜରେ ରଖିବା ସମ୍ଭବ ନ ହେବାରୁ ସ୍ଥାନାନ୍ତର କରାଯାଇ ପାରିଲାନାହିଁ ଓ ତାଇହୋକୁଠାରେ କବର ଦେବାପାଇଁ ନିର୍ଦ୍ଦେଶ ଆସିଲା । ରହମନ ଅନ୍ୟ କୌଣସି ଉପାୟ ନଦେଖି ଏ ପ୍ରସ୍ତାବରେ ସମ୍ମତି ଦେଲେ । ୧୯୪୫ ମସିହା ଅଗଷ୍ଟ ୧୯ ତାରିଖ ଦିନ ସୁଭାଷଚନ୍ଦ୍ର ବୋଷଙ୍କ ମରଶରୀରକୁ 'ତାଇହୋକୁ'ରେ କବର ଦିଆଗଲା ।

ଜାପାନର ସାମରିକ ସଦର ମହକୁମାରୁ ନିର୍ଦ୍ଦେଶ ମିଳିବାପରେ ନେତାଜୀଙ୍କର କଫିନ୍‌କୁ ଗୋଟିଏ ଟ୍ରକରେ ସଜ୍ଜିତ କରି ସାମରିକ ଅଫିସରମାନଙ୍କ ଗହଣରେ ତାଇହୋକୁ ସହରର ସରକାରୀ ଶବସତ୍କାରଶାଳା (Crematorium)କୁ ନିଆଯାଇଥିଲା । ମେଜର ନାଗାଟୋମୋଙ୍କୁ ସାମରିକ ଉଚ୍ଚ କର୍ତ୍ତୃପକ୍ଷ ନେତାଜୀଙ୍କର ଶବସତ୍କାର ପାଇଁ ସମସ୍ତ ବନ୍ଦୋ-ବ୍ୟବସ୍ଥା କରିବାକୁ ଦାୟିତ୍ୱ ଦେଇଥିଲେ । ଟ୍ରକ୍‌ରେ ସାମରିକ ଗାରଡରେ ନେତାଜୀଙ୍କ କଫିନ୍‌କୁ ନିଆଯାଇଥିଲା ଓ ଟ୍ରକ୍ ପଛରେ ଗୋଟିଏ କାର୍‌ରେ ମେଜର ନାଗାଟୋମୋ ଓ କର୍ଣ୍ଣେଲ ହବିବୁର ରହମନ୍ ଓ ନେତାଜୀଙ୍କ ସହିତ କାମକରୁଥିବା ଦ୍ୱିଭାଷୀ ମିଃ ନାକାମୁରା ଶବସତ୍କାରଶାଳାକୁ ଯାଇଥିଲେ । ବୌଦ୍ଧ ପୁରୋହିତ ସୁଗନ୍ଧିବତି ଜାଳି ହାତରେ ଧରି ଛିଡ଼ା ହୋଇଥାନ୍ତି । କଫିନ୍‌କୁ ନେଇ ଫର୍ନେସ୍‌ରେ ଠିକ୍ ଭାବରେ ସଜାଇ ରଖାଗଲା । ସେଠାରେ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତି ଈଶ୍ୱର ଏହି ମହାନ୍ ବ୍ୟକ୍ତିଙ୍କ ପ୍ରତି ଅଶ୍ରୁପ୍ଳୁତ ନୟନରେ ଶେଷ ସମ୍ମାନ ଜ୍ଞାପନ କଲେ । ତାପରେ ସମସ୍ତେ ଶବସତ୍କାରଶାଳାରୁ ବାହାରି ଆସି ବିଦାୟନେଲେ ।

ତା ପରଦିନର ଘଟଣା ।

ମେଜର୍ ନାଗାଟୋମୋ, କର୍ଣ୍ଣେଲ ହବିବୁର ରହମନ୍ ନେତାଜୀଙ୍କର ପବିତ୍ର ଚିତାଭସ୍ମ ସଂଗ୍ରହ କରିବାପାଇଁ ସତ୍କାରଶାଳାକୁ ଯାଇଥିଲେ । ହବିବୁର ଓ ମିଃ ନାଗାଟୋମୋ ସାଥିରେ ଗୋଟିଏ ଛୋଟ କାଠ ବାକ୍ସ ନେଇଥିଲେ । ସେଥିରେ ନେତାଜୀଙ୍କର ପବିତ୍ର ଚିତାଭସ୍ମ ସଂଗୃହୀତ ହୋଇଥିଲା । ତାପରେ ବାକ୍ସଟିକୁ କଣ୍ଟା ପିଟି ପୂରା ବନ୍ଦ କରାଯାଇଥିଲା ଓ ଖଣ୍ଡିଏ ନୂଆ ସଫେଦ କନାରେ ତାହା ଆଚ୍ଛାଦିତ ହୋଇଥିଲା । ତାପରେ ଏହି ପବିତ୍ର ଚିତାଭସ୍ମକୁ ତାଇହୋକୁ ସହରର 'ନିଶିହୋଙ୍ଗାଞ୍ଜି' ମନ୍ଦିରକୁ ଅଣାଯାଇଥିଲା । ସେଠାରେ ଏକ ବିଶେଷ କାର୍ଯ୍ୟକ୍ରମର ଆୟୋଜନ କରାଯାଇ ଏହି ଭସ୍ମପାତ୍ରଟିକୁ ମନ୍ଦିରରେ ରଖାଗଲା । ନିଶିହୋଙ୍ଗାଞ୍ଜି ଫର୍ମୋଜାର ବୃହତ୍ତମ ବୌଦ୍ଧମନ୍ଦିର । ଏହା ନାନ୍‌ମୁନ ସାମରିକ ଡାକ୍ତରଖାନାର ନିକଟରେ ଅବସ୍ଥିତ । ଏଠାରେ ନେତାଜୀଙ୍କ ଚିତାଭସ୍ମ ଅସ୍ଥାୟୀ ଭାବରେ ରଖାଗଲା ।

ସେଦିନ ୧୯୪୫ ମସିହା ସେପ୍‌ଟେମ୍ବର ପାଞ୍ଚ ତାରିଖ । ତାଇହୋକୁରୁ ଏକ ବିମାନ ଜାପାନର ରାଜଧାନୀ ଟୋକିଓ ଆସିବାର ଥିଲା । ସେହି ବିମାନରେ ନେତାଜୀଙ୍କ ଚିତାଭସ୍ମ-ପାତ୍ରଟି ଟୋକିଓ ପଠାଇଦେବାପାଇଁ ସ୍ଥିରହେଲା । କର୍ଣ୍ଣେଲ ହବିବୁର ରହମନ୍ ସେହି ଭସ୍ମପାତ୍ର ତଥା ପୂର୍ବରୁ ନେତାଜୀଙ୍କ ସଙ୍ଗରେ ଥିବା ସ୍ୱର୍ଣ୍ଣ ଓ ବହୁମୂଲ୍ୟ ଅଳଙ୍କାର ବାକ୍ସଟି ନେଇ ଟୋକିଓ ଆସିଲେ । ବିମାନ ଦୁର୍ଘଟଣାରୁ ଯାହା କିଛି ବହୁମୂଲ୍ୟ ଅଳଙ୍କାର ରକ୍ଷା କରାଯାଇଥିଲା ତାହା ସେହି ବାକ୍ସରେ ପଠାଗଲା । ପୂର୍ବ-ଏସିଆର ଭାରତୀୟମାନେ ଏହି ସ୍ୱର୍ଣ୍ଣ ଅଳଙ୍କାରସବୁ ନେତାଜୀଙ୍କ ହାତରେ ଅର୍ପଣ କରିଥିଲେ ଭାରତର ମୁକ୍ତି-ଆନ୍ଦୋଳନକୁ

ବସାଇ ରଖିବେ ବୋଲି । ଭସ୍ମପାତ୍ରରେ ସଫେଦ ରଙ୍ଗର ଏକ କନା ଆଚ୍ଛାଦିତ ଥିଲା ଏବଂ ଅଳଙ୍କାର ବାକ୍ସଟିକୁ ଏକ ଚମଡ଼ା ଆବରଣଦ୍ୱାରା ଆଚ୍ଛାଦନ କରାଯାଇଥିଲା ।

ଦୁଇଟିଯାକ ପାତ୍ର ଆସି ପହଞ୍ଚିଲା ଟୋକିଓରେ ।

ଭାରତୀୟ ଜାତୀୟ ବାହିନୀ (I.N.A.) ଟୋକିଓ ଶାଖାର ସଭାପତି ମିଃ ରାମମୂର୍ତ୍ତି ହଠାତ୍ ଏକ ଫୋନ୍ ପାଇଲେ ଇମ୍ପେରିଆଲ ଜେନେରାଲ ହେଡ଼କ୍ୱାର୍ଟରସ୍‌କୁ ଯିବାପାଇଁ । ତାଙ୍କ ପାଖକୁ ଏକ କାର୍ ମଧ୍ୟ ପଠାଗଲା । ସେତେବେଳକୁ ମିଃ ଏସ୍. ଏ. ଆୟାର ଟୋକିଓରେ ତାଙ୍କ ପାଖରେ ଥିଲେ । ସେ ଦୁହେଁ ପହଞ୍ଚିବା ପରେ ଜାପାନୀ ସାମରିକ ଅଫିସର ମିଃ ତାକାକୁରା ଏହି ବାକ୍ସ ଦୁଇଟିକୁ ମିଃ ରାମମୂର୍ତ୍ତି ତଥା ମିଃ ଆୟାରଙ୍କ ହାତରେ ଅର୍ପଣ କରିଥିଲେ । ମିଃ ଆୟାର ସମ୍ମାନର ସହ ଭସ୍ମପାତ୍ରଟିକୁ ଗ୍ରହଣ କରିଥିଲେ । ସେତେବେଳେ ଦୁଃଖାବେଗରେ ଅଶ୍ରୁମଥିତ ମୁଖମଣ୍ଡଳ ତାଙ୍କର ଗମ୍ଭୀର ହୋଇଉଠିଥିଲା । ସେ ବିଶ୍ୱାସ କରିପାରିଲେନି, ଯେଉଁ ମହାନ୍ ନେତା, ବିଶ୍ୱର ଏକ ପ୍ରଚଣ୍ଡ ବିପ୍ଳବୀ ଅଳ୍ପ କେତୋଟି ଦିନ ତଳେ ଇଂରେଜ ଶାସନତନ୍ତ୍ରକୁ ଭାରତବର୍ଷରୁ ନିଃଶେଷ କରିବେ ବୋଲି ତାର କବରକୁମ୍ଭ ପ୍ରସ୍ତୁତ କରୁଥିଲେ, ଆଜି ସେହି ବିରାଟ ବ୍ୟକ୍ତିଙ୍କର ଦେହାବଶେଷ ଗୋଟିଏ କ୍ଷୁଦ୍ର ଭସ୍ମପାତ୍ରରେ ପାତ୍ରସ୍ଥ ହୋଇଛି ! ଏହା ବିଧିର ବିଡ଼ମ୍ବନା ବ୍ୟତୀତ ଆଉ କଣ ହୋଇପାରେ !

କର୍ଣ୍ଣେଲ ହବିବୁର ରହମନ୍ ସେହି ଅଶୁଭ ମୁହୂର୍ତ୍ତର ଅଶ୍ରୁଳ କାହାଣୀ କାନ୍ଦି କାନ୍ଦି କହିଲାବେଳେ ନିଜର ପ୍ରିୟ ବନ୍ଧୁଗଣ ଏତେ ବିଚଳିତ, ଏତେ ବ୍ୟଥିତ ଓ ଏତେ ଅନ୍ତର୍ଦାହ ଭିତରେ ଥିଲେ ଯେ ବିମାନ ଦୁର୍ଘଟଣାରେ ନେତାଜୀଙ୍କର ମୃତ୍ୟୁ ହୋଇଛି ବୋଲି କେହି ବିଶ୍ୱାସ କରିପାରିଲେ ନାହିଁ ।

ମିଃ ଆୟାର ନେତାଜୀଙ୍କ ଭସ୍ମପାତ୍ରରେ "ନେତାଜୀ ସୁଭାଷ ଚନ୍ଦ୍ର ବୋଷ" ଲେଖିଦେଲେ ଓ ଏହି ପବିତ୍ର ଚିତାଭସ୍ମକୁ ଟୋକିଓର 'ରେଙ୍କୋଜି' ମନ୍ଦିରରେ ରଖିବା ପାଇଁ ସ୍ଥିରହେଲା । ଶେଷକୃତ୍ୟ ସମାହିତ ହେଲା । ଭାରତୀୟ ଜାତୀୟ ବାହିନୀର ସଭ୍ୟବୃନ୍ଦ ଓ ଉପସ୍ଥିତ ଜନତାକୁ ନେଇ ଗୋଟିଏ ଶୋଭାଯାତ୍ରା ଆରମ୍ଭ କରାଗଲା । କାର୍ଯ୍ୟକ୍ରମ ଶେଷରେ ଭସ୍ମପାତ୍ରକୁ ମନ୍ଦିରର ଏକ ଶ୍ରେଷ୍ଠ ବେଦୀରେ ସ୍ଥାପନ କରାଯାଇଥିଲା । ରେଙ୍କୋଜି ମନ୍ଦିରଟି ଟୋକିଓ ଟାଉନର କେନ୍ଦ୍ରସ୍ଥଳରୁ ପ୍ରାୟ ୬ କିଲୋମିଟର ଦୂର । ଏହା ଏକ ବୌଦ୍ଧମନ୍ଦିର । ଏହା ଚାରିପାଖରେ ଅଛି ଗୋଟିଏ ସୁନ୍ଦର ଉଦ୍ୟାନ । ମନ୍ଦିରର ଅନତିଦୂରରେ ଭାରତୀୟ ଦୂତାବାସ ଅବସ୍ଥିତ । ମନ୍ଦିରଟି ଅତି ବଡ଼ ନ ହେଲେ ମଧ୍ୟ ଶ୍ରେଷ୍ଠ ନୁହେଁ । ଏହାର ସାଜସଜ୍ଜା ଅତ୍ୟନ୍ତ ମନୋରମ ।

ଭାରତ ସରକାରଙ୍କ ଅନୁସନ୍ଧାନ କମିଟିର ସଭ୍ୟଗଣ ରେଙ୍କୋଜି ମନ୍ଦିରରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଗୋଟିଏ କ୍ଷୁଦ୍ର ପ୍ରତିକୃତି ସୁରକ୍ଷିତ ଥିବାର

ଦେଖିଥିଲେ, ଏବଂ ତା' ନିକଟରେ ନେତାଜୀଙ୍କର ଗୋଟିଏ ବଡ଼ ଫଟୋ ମଧ୍ୟ ଦେଖିବାକୁ ମିଳିଥିଲା । ସେଠାରେ ପ୍ରତିଦିନ ଧୂପ-ଦୀପ ଦିଆଯାଉଥିବାର ପ୍ରମାଣ ମଧ୍ୟ ପାଇଥିଲେ । ସଭ୍ୟଗଣ ସେଠାରେ ନେତାଜୀଙ୍କ ଚିତାଭସ୍ମପାତ୍ରଟିକୁ ଦେଖିବାକୁ ପାଇଥିଲେ । ଏହାର ସୁରକ୍ଷା ଦିଗରେ ମନ୍ଦିର କର୍ତ୍ତୃପକ୍ଷ ଯେ ବିଶେଷ ଯତ୍ନ ନେଉଛନ୍ତି, ଏହା ସେମାନଙ୍କର ହୃଦ୍‌ବୋଧ ହୋଇଥିଲା । କମିଟି ମଧ୍ୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଭସ୍ମପାତ୍ରର ଏକ ଫଟୋ ଚିତ୍ର ଉଠାଇଥିଲେ । ଅନୁସନ୍ଧାନ ପାଇଁ ଏହା ଆବଶ୍ୟକ ଥିଲା । କମିଟିର ସଭ୍ୟବୃନ୍ଦ ଭିନ୍ନଭିନ୍ନ ପରୀକ୍ଷାକରି ଓ ସାକ୍ଷ୍ୟପ୍ରମାଣ ସୂତ୍ରରୁ ପରିସ୍ଥିତିର ବିଚାର କରି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ରେଙ୍କୋଜି ମନ୍ଦିରରେ ଥିବା ନେତାଜୀଙ୍କ ଭସ୍ମପାତ୍ର ତାଙ୍କର ନୁହେଁ ବୋଲି ସନ୍ଦେହ କରିବାର କିଛି କାରଣ ନାହିଁ ।

ନେତାଜୀଙ୍କର ବିମାନଦୁର୍ଘଟଣାରେ ମୃତ୍ୟୁ ହୋଇନାହିଁ ବୋଲି ଅନେକ ମତ ଦେଉଛନ୍ତି; କିନ୍ତୁ ତାହା ଅନୁସନ୍ଧାନମୂଳକ ନୁହେଁ । ବିଶେଷ ଭାବରେ, ନେତାଜୀ ବଞ୍ଚିଛନ୍ତି ବୋଲି ତାଙ୍କ ପରିବାରର ଲୋକମାନଙ୍କର ଏହା ଧାରଣା । ସେମାନଙ୍କ ମତରେ ନେତାଜୀ ମରିନାହାନ୍ତି ଏବଂ ଆତ୍ମଗୋପନ କରିଛନ୍ତି କେତେକ ବ୍ୟକ୍ତିଗତ କାରଣ ନେଇ; ଠିକ୍ ସମୟରେ ତାଙ୍କର ଆବିର୍ଭାବ ହେବ । ଅବଶ୍ୟ ଏପ୍ରକାର ମତାମତ ପାରିବାରିକ ଆତ୍ମବନ୍ଧନ ତଥା ଭାବାବେଗର ଆତିଶଯ୍ୟ ଉପରେ ଆଧାରିତ କହିଲେ ବୋଧହୁଏ ଭୁଲ ହେବନାହିଁ ।

ଆଉ କେତେକ କହୁଛନ୍ତି, ସେମାନେ ପ୍ରତ୍ୟକ୍ଷଦର୍ଶୀ ଭାବରେ ସୁଭାଷ ବୋଷଙ୍କୁ ନିଜେ ଦେଖିଛନ୍ତି । ଏ କଥାର ସତ୍ୟତା ପ୍ରମାଣିତ ହୋଇନାହିଁ; ତେଣୁ ତାହା ବିଶ୍ୱାସଯୋଗ୍ୟ ନୁହେଁ ।

ଜାପାନର ରେଙ୍କୋଜି ମନ୍ଦିରରେ ଥିବା ନେତାଜୀଙ୍କ ଚିତାଭସ୍ମକୁ ଭାରତକୁ ଫେରାଇ-ଦେବାପାଇଁ ସରକାରୀ ଭାବରେ ୧୯୮୪ ମସିହାରେ କୁହାଯାଇଛି । ଅବଶ୍ୟ ଏ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛି ସିଦ୍ଧାନ୍ତ ଗ୍ରହଣ କରାଯାଇ ନଥିଲେ ମଧ୍ୟ ସେହି ମହାନ୍ ନେତାଙ୍କର ଦେହାବଶେଷ ନିକଟ-ଭବିଷ୍ୟତରେ ଭାରତକୁ ନିଶ୍ଚୟ ଆସିବ, ଏଥିରେ ସନ୍ଦେହ ନାହିଁ ।

ନେତାଜୀ ଭାରତୀୟ ଜାତୀୟ ସାମରିକ ବାହିନୀ (I. N. A.)କୁ ଚଳାଇବା ପାଇଁ ଦକ୍ଷିଣ-ପୂର୍ବ ଏସିଆରେ ଥିବା ପ୍ରବାସୀ ଭାରତୀୟମାନଙ୍କଠାରୁ ଆର୍ଥିକ ସହାୟତା ପାଉଥିଲେ । ପାଣ୍ଠି ସଂଗ୍ରହ କରିବା ପାଇଁ ବିଧିବଦ୍ଧଭାବରେ ଅଭିଯାନ ଆରମ୍ଭ ହୋଇଥିଲା । 'ନେତାଜୀ ଫଣ୍ଡ କମିଟି' ନାମରେ ଗୋଟିଏ କମିଟି ଗଢ଼ାଯାଇଥିଲା । ପାଣ୍ଠି ସଂଗ୍ରହ କରିବା ଥିଲା ଏ କମିଟିର ଲକ୍ଷ୍ୟ । ଦକ୍ଷିଣ-ପୂର୍ବ ଏସିଆର ଭାରତୀୟମାନେ ବହୁ ଅର୍ଥ ଦାନ କରିଥିଲେ । ସୁନା, ଅଳଙ୍କାରପତ୍ର ଏଥିପାଇଁ ଦାନସୂତ୍ରରେ ବହୁ ପରିମାଣରେ ମିଳୁଥିଲା । ପୂର୍ବରୁ କୁହାଯାଇଛି, ରେଙ୍ଗୁନର ମିଃ ହବିବ୍ ତାଙ୍କର ସମସ୍ତ ଭୂସମ୍ପତ୍ତି ଓ ଏକ କୋଟି ତିନିଲକ୍ଷ ଟଙ୍କାର ସୁନା ଓ ସ୍ୱର୍ଣ୍ଣାଲଙ୍କାର ପ୍ରଭୃତି ଏକକାଳୀନ ନେତାଜୀ ସୁଭାଷ ବୋଷଙ୍କୁ

ଦାନ କରିଥିଲେ । ଏହାର ପ୍ରତିଦାନରେ ସେ ନେତାଜୀଙ୍କୁ କେବଳ ସାମରିକ ପୋଷାକ ମାଗିଥିଲେ ଭାରତର ମୁକ୍ତି ଆନ୍ଦୋଳନ ପାଇଁ ସୈନିକଭାବରେ କାମ କରିବେ ବୋଲି । ସଂଗୃହୀତ ଅର୍ଥକୁ ଆଜାଦ ହିନ୍ଦ୍ ବ୍ୟାଙ୍କରେ ଜମା ରଖାଯାଉଥିଲା ଓ ତା' ମାଧ୍ୟମରେ କାରବାର ଚାଲିଥିଲା ।

ନେତାଜୀ ରେଙ୍ଗୁନ୍‌ରୁ ଚାଲିଯିବା ସମୟରେ ଆଜାଦ ହିନ୍ଦ୍ ବ୍ୟାଙ୍କରୁ ସୁନା ଗହଣା, ସୁନାପାତ୍ର ଓ ଅନେକ ଅଳଙ୍କାର ଅଣାଯାଇ ତାଙ୍କ ହାତରେ ଦିଆଯାଇଥିଲା । ଏହା ଥିଲା ତାଙ୍କର ଅନିଶ୍ଚିତ ଯାତ୍ରାର ଏକମାତ୍ର ପାଥେୟ । ସେସବୁ ଛୋଟ ଛୋଟ ବାକ୍ସରେ ସିଲ୍ କରାଯାଇଥିଲା । ପାଖାପାଖି କୋଟିଏ ଟଙ୍କାର ସୁନା ଓ ଗହଣା ସେ ତାଙ୍କ ସାଥିରେ ନେଇଥିଲେ । ଏହା ବ୍ୟତୀତ ନେତାଜୀ କେତେକ ବ୍ୟକ୍ତିଗତ ଜିନିଷ ମଧ୍ୟ ନିଜ ସାଥିରେ ନେଇଥିଲେ । ସେଥିମଧ୍ୟରେ ଅନେକ ମୂଲ୍ୟବାନ୍ ଜିନିଷ ଥିଲା । ଜର୍ମାନୀର ତତ୍କାଳୀନ ଶାସକ ମିଃ ହିଟଲର ନେତାଜୀଙ୍କୁ ଦେଇଥିବା ସୁନା ସିଗାରେଟ କେସ୍‌ଟି ତା'ଭିତରେ ଅନ୍ୟତମ ।

ନେତାଜୀ ଶେଷ ମୁହୂର୍ତ୍ତରେ ଯଥେଷ୍ଟ ଟଙ୍କା ଭାରତୀୟ ଜାତୀୟ ବାହିନୀ, ଆଜାଦ ହିନ୍ଦ୍ ଫୌଜର କର୍ମଚାରୀ ଓ ଜବାନମାନଙ୍କୁ ଦରମା ଆକାରରେ ଦେଇଥିଲେ । ପ୍ରକୃତରେ କେତେ ଅର୍ଥ ବ୍ୟାଙ୍କ୍‌ରେ ଗଚ୍ଛିତ ଥିଲା, କେତେ ଖର୍ଚ୍ଚ ହେଲା, ତାର ସଠିକ୍ ବିବରଣୀ ମିଳିନାହିଁ । ଜାପାନ ଆତ୍ମସମର୍ପଣ କରିବାପରେ ରେକର୍ଡପତ୍ର ଶତ୍ରୁହାତରେ କାଳେ ପଡ଼ିଯିବ, ସେଥିପାଇଁ ଅନେକ କାଗଜ ନଷ୍ଟ କରିଦିଆଯାଇଥିଲା ।

ନେତାଜୀଙ୍କ ସାଥିରେ ଥିବା ଅଳଙ୍କାର ତଥା ସୁନା ପ୍ରଭୃତି ରଖାଯାଇଥିବା ବାକ୍ସ ବିମାନ ଦୁର୍ଘଟଣାରେ କ୍ଷତିଗ୍ରସ୍ତ ହୋଇଥିଲା । ବିମାନଟି ଜଳିଗଲାବେଳେ ଅନେକ ଅଳଙ୍କାର ତରଳିଯାଇ ଏଣେତେଣେ କେଉଁ ଆଡ଼େ ପଡ଼ିଲା, ତାର କିଛି ପତ୍ତା ମିଳି ନାହିଁ । ଚୂଡ଼ାନ୍ତ ପଡ଼ିଥିବା କିଛି ସୁନା ଓ ଅଳଙ୍କାର ସଂଗ୍ରହ କରାଯାଇଥିଲା ଏବଂ ତାହା ସେଠିକାର ସାମରିକ ସଦର ମହକୁମାରେ ଗଚ୍ଛିତ ହୋଇ ରହିଥିଲା ।

ହବିବୁର ରହମନ୍ ଓ ମିଃ ରାମମୂର୍ତ୍ତି ଏହି ଅବଶେଷ ଅର୍ଥ-ପେଟିକାକୁ ଜାପାନୀ-ମାନଙ୍କଠାରୁ ଗ୍ରହଣ କରିଥିଲେ । ମିଃ ରାମମୂର୍ତ୍ତି ଏହି ସମ୍ପତ୍ତିକୁ ୧୯୪୫ରୁ ୧୯୫୧ ମସିହା ପର୍ଯ୍ୟନ୍ତ ନିଜ ପାଖରେ ରଖିଥିଲେ; ତାପରେ ତାହା ଭାରତକୁ ଅଣାଯାଇ ରାଷ୍ଟ୍ରପତି ଭବନଠାରେ ଥିବା ଜାତୀୟ ସଂଗ୍ରହାଳୟ (National Museum)ରେ ବର୍ତ୍ତମାନ ଗଚ୍ଛିତ ଅଛି । ଏଠାରେ ମଧ୍ୟ ନେତାଜୀଙ୍କର ବ୍ୟବହୃତ ଅନେକ ଜିନିଷପତ୍ର ଗଚ୍ଛିତ ହୋଇ ରହିଛି । ଏହାହିଁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ସ୍ମାରକୀ ରୂପେ ଆଗାମୀ ବଂଶଧରମାନଙ୍କୁ ପ୍ରେରଣା ଦେବ । ଭାରତ କେତେ ବଡ଼ ଜଣେ ମହାନ୍ ନେତାଙ୍କୁ ଯେ ଜନ୍ମ ଦେଇଥିଲା, ତାହା ଭବିଷ୍ୟତର ବଂଶଧରମାନେ ଉପଲବ୍‌ଧି କରିବେ । ନେତାଜୀ ସୁଭାଷ ବୋଷଙ୍କର

ଭାରତର ସ୍ୱାଧୀନତା ପାଇଁ ଯେଉଁ ଅତୁଳନୀୟ ଦାନ ,ତାହାକୁ ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ । ତାଙ୍କର ପ୍ରଚଣ୍ଡ ପ୍ରତିଭା, ବିରଳ ବ୍ୟକ୍ତିତ୍ୱ, ସୁଦୂରପ୍ରସାରୀ ଦୂରଦୃଷ୍ଟି, ଅପ୍ରତିମ ଆତ୍ମସମୀକ୍ଷା ଓ ସର୍ବୋପରି ବହ୍ନିମାନ ବୀରତ୍ୱ ତଥା ଅମାପ ଧୈର୍ଯ୍ୟ ତାଙ୍କୁ ପ୍ରତିଷ୍ଠାର ଚରମ ପର୍ଯ୍ୟାୟରେ ପହଞ୍ଚାଇପାରିଥିଲା ।

ଆଜି ଆମେ ପୂଜ୍ୟପୂଜାର ବ୍ୟତିକ୍ରମ କରୁଛୁ । ନେତାଜୀ ସୁଭାଷଙ୍କୁ ଯେତିକି ସାମାଜିକ ସମ୍ମାନ ଦିଆଯିବାର କଥା, ଏପର୍ଯ୍ୟନ୍ତ ତାହା ଦିଆଯାଇନାହିଁ । ତାଙ୍କର ରହସ୍ୟମୟ ଜୀବନର ବହୁ ରହସ୍ୟ ଓ ରୋମାଞ୍ଚକର କାହାଣୀ ଏପର୍ଯ୍ୟନ୍ତ ଅନୁଦ୍‌ଘାଟିତ ହୋଇ ରହିଛି । ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନକାହାଣୀ ହିଁ ଭାରତର ସ୍ୱାଧୀନତାର ଇତିହାସ । ସେ ଦୁର୍ଲଭ ବ୍ୟକ୍ତି ଓ ବ୍ୟକ୍ତିତ୍ୱ ଆଜି ଲୋପ ପାଇଯାଉଛନ୍ତି । ସେମାନଙ୍କୁ ଯେଉଁ ଯୁଗପୁରୁଷ-ମାନେ ଦିଗ୍‌ଦର୍ଶନ ଦେଉଥିଲେ, ରଣପ୍ରାଙ୍ଗଣରେ ସାରଥି ରୂପେ ସେମାନଙ୍କୁ ପରିଚାଳନା କରୁଥିଲେ, ଘୋର ଅନ୍ଧକାରାଚ୍ଛନ୍ନ ଦୁର୍ଦ୍ଦିନରେ ସାରା ଜାତିକୁ ଆଶାର ଆଲୋକରେ ଆଲୋକିତ କରୁଥିଲେ, ସେମାନେ ମାନବ ରୂପରେ ଥିଲେ ଦେବତାର ଅବତାର । ସେମାନଙ୍କର ତ୍ୟାଗ, ଆଦର୍ଶ, ନୀତିନିପୁଣତା, ମହାନୁଭବତା, ସାହସ, ବୀରତ୍ୱ ପ୍ରଭୃତି ମହାଭାରତ, ରାମାୟଣ, ଭାଗବତ ପରି ନିତିଦିନ ପାରାୟଣ ହେବା ଉଚିତ । "ମହାଭାରତ" ପରେ ସୁଭାଷ ବୋଷଙ୍କର ସ୍ୱାଧୀନତା ସଂଗ୍ରାମର ଇତିହାସ "ସ୍ୱାଧୀନତାର ମହାଭାରତ" କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ଘରେ ଘରେ ପଠିତ ହେବା ଉଚିତ । ବିଶ୍ୱ-ପୁରୁଷ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ବୀରତ୍ୱ କାହାଣୀ ବିଶ୍ୱ-ଯୁବକତ୍ୱର ଏକ କାଳଜୟୀ କାହାଣୀ । ହେ ସ୍ୱାଧୀନ ଭାରତର ସନ୍ତାନ ! ଏତେ ତ୍ୟାଗ, ଏତେ ଆତ୍ମାହୁତି, ଏତେ ଦୁଃଖ, ଲାଞ୍ଛନା, ଅନାଚାର, ଅତ୍ୟାଚାର, ଉତ୍ପୀଡ଼ନା ବିନିମୟରେ ଆମକୁ ଏତେଦିନର ଦାସତ୍ୱ ପରେ ଯେଉଁ ମହାର୍ଘ ସ୍ୱାଧୀନତା ମିଳିଲା, ତୁମେ ହେଉଛ ତାର ରକ୍ଷକ ଏବଂ ପ୍ରାଣ ବିନିମୟରେ ଜାତୀୟ ସଂହତି ଓ ସ୍ୱାଧୀନତାକୁ ରକ୍ଷା କରିବାକୁ ହେବ; ଏହାହିଁ ତୁମର ସର୍ବୋତ୍ତମ କର୍ତ୍ତବ୍ୟ । ତୁମରି ଭିତରେ କୋଟି କୋଟି ସୁଭାଷ ଅଛନ୍ତି; ତାଙ୍କୁ ଆବିଷ୍କାର କର । □□□

# ନେତାଜୀଙ୍କର ମହାନ୍ ବାଣୀ

(୧) ଯେପରି ବିଶ୍ୱକୁ ଆଲୋକିତ କରିବା ପାଇଁ ସୂର୍ଯ୍ୟଙ୍କର ଉଦୟନ, ପରିବେଶକୁ ମଧୁରିତ ତଥା ମହକିତ କରିବା ପାଇଁ ପୁଷ୍ପର ପ୍ରସ୍ଫୁଟନ, ସାଗରକୁ ବିପୁଳ ଜଳରାଶିରେ ଉଦ୍‌ବେଳିତ କରିବା ପାଇଁ ନିର୍ଝରିଣୀର ନିର୍ଝରଣ, ସେହିପରି କୌଣସି ଏକ ମହାନ୍ ସତ୍ୟର ପ୍ରତିଷ୍ଠା ପାଇଁ ଆମ ଭିତରେ ଆନନ୍ଦମୟ ଜୀବନ ତଥା ଯୌବନର ଯେ ଉତ୍ସରିତା ନିତ୍ୟ ପ୍ରଗତି, ତାହା ପ୍ରତ୍ୟେକେ ଉପଲବ୍ଧି କରିବା ଉଚିତ ।

(୨) ଆମେ ସବୁ ଯୁବକ । ଯୁବକତ୍ୱ ହିଁ ଆମର ପ୍ରକୃତ ଧର୍ମ । ଅନ୍ୟ କୌଣସି ତଥାକଥିତ ଧର୍ମକୁ ଗ୍ରହଣ କରିବାକୁ ଆମେ ପ୍ରସ୍ତୁତ ନୋହୁଁ । ଈଶ୍ୱର ଆମ ଭିତରେ ଅମାପ ଆଶା, ଅବାଧ ଅଗ୍ରହ, ଅସରନ୍ତି ଧୈର୍ଯ୍ୟ ଭରିଦେଇଛନ୍ତି । ଆମ ଭିତରେ ଥିବା ଜୀବନର ଊର୍ଦ୍ଧ୍ୱଗତିକୁ ବିଶ୍ୱର କୌଣସି ଶକ୍ତି ପ୍ରତିହତ କରିପାରିବ ନାହିଁ । ଆମେ ଯୁବକ · ଆମେ ଉଦ୍ଭ୍ରାନପାଦ ।

(୩) ଆମେ ଯୁବକ, ଶାନ୍ତିର ମହାବାଣୀ ପ୍ରଚାର କରିବା ଆମର କାମ ନୁହେଁ । ଆମେ ବିପ୍ଳବର ପ୍ରଖ୍ୟାପକ । ଆମ ଭିତରେ ଥିବା ଅନୀତି, ଦୁର୍ନୀତି, ସଙ୍କୀର୍ଣ୍ଣତା, ଅନ୍ଧବିଶ୍ୱାସର ମୂଳୋତ୍ପାଟନ ଆମେ କରିବୁ । ସ୍ୱାଧୀନତା ପଥର ସମସ୍ତ ପ୍ରତିବନ୍ଧକକୁ ଆମେ ଦୂର କରିଦେଇ ପାରିଲେ ମୁକ୍ତିପଥର ସୈନିକମାନେ ଅବାଧରେ ଅଗ୍ରଗତି କରିପାରିବେ ।

(୪) ଶିଶୁର କ୍ରନ୍ଦନ ହେଉଛି ସାଂସାରିକ ବାଧାବନ୍ଧନ ବିରୁଦ୍ଧରେ ପ୍ରତିବାଦ । କ୍ରନ୍ଦନ ହିଁ ଶିଶୁର ବଳ । ଆତ୍ମଶକ୍ତି ହିଁ ଯୁବକର ବଳ । ତା'ର ମାଧ୍ୟମରେ ସେ ସମସ୍ତ ବାଧା-ବନ୍ଧନକୁ ଛିନ୍ନ କରିଦେଇପାରିବ ।

(୫) ମନୁଷ୍ୟଜୀବନ ଏକ ମହାନ୍ ସତ୍ୟ । ମୁକ୍ତିହିଁ ତାର ଧ୍ୟେୟ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ମୁକ୍ତିର ମନ୍ତ୍ର ପ୍ରଚାର କରିବାକୁ ଆମେ ଅଭିପ୍ରେତ । ସାମାଜିକ, ଆଧ୍ୟାତ୍ମିକ, ଆର୍ଥନୀତିକ ଏବଂ ରାଜନୈତିକ—ଏ ପ୍ରତ୍ୟେକ ସ୍ତରରେ ଆମକୁ ସତ୍ୟ ଆନନ୍ଦ ତଥା ଅନ୍ତର୍ଦୃଷ୍ଟିର ଆଲୋକ ବିଚ୍ଛୁରିତ କରିବାକୁ ହେବ ।

(୬) ଭାରତର ନୂତନ ଜାଗ୍ରତ ଆତ୍ମା ମୁକ୍ତି ପାଇଁ କ୍ରନ୍ଦନ କରୁଛି । ଚାଲ, ଆମେ ସମସ୍ତେ ଭ୍ରାତୃତ୍ୱର ବନ୍ଧନରେ ଆବଦ୍ଧ ହୋଇ ଭାରତର ମୁକ୍ତି ଏବଂ ତାର ଅତୀତର ମହାନ୍ ପରମ୍ପରା ଓ ସଂସ୍କୃତିର ସୁରକ୍ଷା ପାଇଁ ଶପଥ ନେବା ।

(୭) ଯେପରି ମନୁଷ୍ୟ ପୁନର୍ଜନ୍ମର ଅଧିକାରୀ ହୁଏ, ସେହିପରି କୌଣସି ଜାତିର ମୃତ୍ୟୁ ହେଲେ ସେ ପୁଣି ନୂତନ ଜୀବନର ଅଧିକାରୀ ହୁଏ । ତେବେ ବ୍ୟକ୍ତି ଓ ଜାତିର ଭିତରେ ଗୋଟାଏ ବଡ଼ ପ୍ରଭେଦ ଅଛି—ପ୍ରତ୍ୟେକ ଜାତି ମୃତ୍ୟୁପରେ ପୁନର୍ଜନ୍ମ ପାଇପାରନ୍ତି ନାହିଁ ।

(୮) ଭାରତୀୟ ସଭ୍ୟତା ତଥା ସଂସ୍କୃତି ଭିତରେ ଏପରି କିଛି ମହାନ୍ ଆଲୋକ ଅଛି, ଯାହା ମାନବସଭ୍ୟତାର ଅସ୍ତିତ୍ୱ ରକ୍ଷାପାଇଁ ଅପରିହାର୍ଯ୍ୟ । ବହୁ ବିପର୍ଯ୍ୟୟ ଭିତରେ ମଧ୍ୟ ଭାରତର ମୁନିଋଷିମାନେ ଯୁଗ-ଯୁଗର ଅନ୍ଧକାର ମଧ୍ୟରେ ସେହି ଜ୍ଞାନାଲୋକକୁ ପ୍ରଜ୍ଜ୍ୱଳିତ କରି ରଖିଛନ୍ତି ।

(୯) ମଣିଷ ମୃତ୍ୟୁଶୀଳ; କିନ୍ତୁ ତାର ଆତ୍ମା ଅବିନାଶୀ । ଗୋଟିଏ ଜାତିପାଇଁ ମଧ୍ୟ ଏହି ସତ୍ୟ ଅଲଙ୍ଘନୀୟ । କୌଣସି ଜାତିର ମୃତ୍ୟୁ ହେଲେ ମଧ୍ୟ ତାର ଆତ୍ମା ସେ ଜାତିର ସଭ୍ୟତା, ସଂସ୍କୃତି ତଥା ପରମ୍ପରା ରୂପରେ ବଞ୍ଚିରହେ ।

(୧୦) ପୃଥିବୀର ପ୍ରତ୍ୟେକ ବିରାଟ ସଫଳତା ହେଉଛି ବ୍ୟକ୍ତିର ନିଜ ଉପରେ ତଥା ନିଜର ସୃଜନଶକ୍ତି ଉପରେ ଏକାନ୍ତ ବିଶ୍ୱାସର ଫଳ । ଯାହାର ନିଜ ଉପରେ କିମ୍ବା ନିଜ ଜାତି ଉପରେ ବିଶ୍ୱାସ ନାହିଁ, ସେ ସୃଷ୍ଟିକ୍ଷମ ନୁହେଁ ।

(୧୧) ଯେଉଁ ଜାତି ଆଦର୍ଶର ଆତ୍ମଶକ୍ତିରେ ଶକ୍ତିମାନ, ଯେତେ ଦୁଃଖ-ଯନ୍ତ୍ରଣା ଭୋଗକରିବାକୁ ପଡ଼ୁ ନା କାହିଁକି, ଆଦର୍ଶର ପ୍ରତିଷ୍ଠା ପାଇଁ ଆନନ୍ଦର ସହିତ ସେ ତାର ସମ୍ମୁଖୀନ ହୋଇଥାଏ ।

(୧୨) ପ୍ରତ୍ୟେକଙ୍କ ଭିତରେ ଆନନ୍ଦର ଏକ ଶାଶ୍ୱତ ଉତ୍ସ ନିହିତ ଅଛି । ଯାତନା ଭିତରେ ଯନ୍ତ୍ରଣା ଥିଲେ ମଧ୍ୟ ଆନନ୍ଦର ଶାଶ୍ୱତମା ତା'ଭିତରେ ପ୍ରଚ୍ଛନ୍ନ ଭାବରେ ରହିଛି । ଏହାର ସ୍ୱାଦ ଯେ ଜୀବନରେ ଥରେ ଚାଖିଛି, ସେ ଜର୍ଜରିତ ହେବା ପରିବର୍ତ୍ତେ ଅଧିକ ଶକ୍ତିଶାଳୀ ଓ ମହାନ୍ ହେବାର ସୁଯୋଗ ପାଇଥାଏ । ଯନ୍ତ୍ରଣା ହିଁ ଆପେ ଆନନ୍ଦରେ ରୂପାନ୍ତରିତ ହୁଏ ।

(୧୩) କୌଣସି ଏକ ଆଦର୍ଶର ପରିପୂର୍ତ୍ତି ପାଇଁ ତୁମେ ଯେତେବେଳେ ଆତ୍ମୋତ୍ସର୍ଗ କରିବ, ସେତେବେଳେ ତୁମର ଆତ୍ମୋପଲବ୍ଧି ହେବ ଓ ଜୀବନର ରହସ୍ୟ ଯବନିକା ଅପସରିଯିବ ।

(୧୪) ନେତା ଶୂନ୍ୟରୁ ଖସନ୍ତି ନାହିଁ । କର୍ମପ୍ରବାହ ଭିତରୁ ନେତା ଉଠିଆସି ଥାଆନ୍ତି । ଯେ କର୍ମୀ, ସେ ନେତୃତ୍ୱର ଶୂନ୍ୟତା ଅନୁଭବ କରେ ନାହିଁ ।

(୧୫) କୌଣସି ଜାତିର କେବଳ ବିଶିଷ୍ଟ ଲୋକମାନଙ୍କୁ ଦେଖି ସେ ଜାତିର ବଡ଼ପଣିଆକୁ ବିଚାରକୁ ନିଆଯାଏ ନାହିଁ; ରାସ୍ତାକଡ଼ ମଣିଷର ଅବସ୍ଥାକୁ ମଧ୍ୟ ବିଚାରକୁ ନେବାକୁ ହେବ ।

(୧୬) ଯେଉଁ ଜାତିର ଲୋକମାନେ ପରିଭ୍ରମଣକୁ ଭଲପାଆନ୍ତି ନାହିଁ କିମ୍ବା ନିଜର ସଙ୍କୀର୍ଣ୍ଣ ପରିସର ମଧ୍ୟରୁ ବାହାରକୁ ଯିବାକୁ ଚାହାନ୍ତି ନାହିଁ, ସେ ଜାତି କେବେହେଲେ ସମୃଦ୍ଧ ହୋଇ ପାରିବ ନାହିଁ । 'ମୁଁ ଏଇ ଦେଶରେ ଜନ୍ମ ହୋଇଛି ଏବଂ ଏଇ ମାଟିରେ ମରିବି ।'—ଏପ୍ରକାର ଆଦର୍ଶ ଗ୍ରହଣୀୟ ନୁହେଁ; 'ମୁଁ ଅନନ୍ତ ପ୍ରକୃତିର ସନ୍ତାନ ଓ ଅନନ୍ତ ପ୍ରକୃତି ମୋତେ ଆହ୍ୱାନ ଜଣାଉଛି···ମୁଁ ତା'ରି କୋଳକୁ ଚାଲିଯିବି ।'—ବରଂ ଏପ୍ରକାର ମନୋଭାବ ସୃଷ୍ଟି ହେବା ଉଚିତ ।

(୧୭) ମଣିଷଜୀବନର ଅନେକ ଛୋଟ ଛୋଟ ଘଟଣାରୁ ତାର ବ୍ୟକ୍ତିତ୍ୱର ମହନୀୟତା ମପାଯାଇପାରେ ।

(୧୮) ଦୁଃଖ-ନିର୍ଯାତନା ନ ଭୋଗିଲେ ମଣିଷ ତା ନିଜର ଆଦର୍ଶ ସହିତ ଆତ୍ମିକ ସମ୍ପର୍କ ସ୍ଥାପନ କରିପାରିବ ନାହିଁ । ସେ କେବଳ କଠିଣ ପରୀକ୍ଷାର ସମ୍ମୁଖୀନ ହେଲେ, ଅମାପ ଆତ୍ମଶକ୍ତିର ପରିଚୟ ପାଇପାରିବ ।

(୧୯) ପ୍ରତ୍ୟେକ ଦାନର ପ୍ରତିଦାନ ରହିବା ଉଚିତ; ନତୁବା ଏହା ବ୍ୟକ୍ତିର ଆତ୍ମସମ୍ମାନ ଉପରେ ଆଞ୍ଚ ଆଣିବ ।

(୨୦) ରାଜନୈତିକ ଆନ୍ଦୋଳନ ଓ ନଦୀର ପ୍ରବାହ ଭିତରେ ବିଶେଷ ପ୍ରଭେଦ ନାହିଁ । ସମୟେ ସମୟେ ଏହା ଅତି ସ୍ୱଚ୍ଛ ଓ ଅନ୍ୟ ସମୟରେ ଏହା କର୍ଦ୍ଦମାକ୍ତ ହୋଇଥାଏ ।

(୨୧) କର୍ମ ମଣିଷର ବିଶୃଙ୍ଖଳାକୁ ଦମନ କରେ ଓ ତାର ବାହ୍ୟ ଆଚରଣକୁ ସଂଯମିତ କରେ; କିନ୍ତୁ ଅଧ୍ୟୟନ ତଥା ଧ୍ୟାନ ମଣିଷର ଆତ୍ମଶୃଙ୍ଖଳା ଦିଗରେ ସାହାଯ୍ୟ କରିଥାଏ ।

(୨୨) ପ୍ରେମ ମଣିଷର ହୃଦୟକୁ ପ୍ରସାରିତ କରେ ଓ ସମସ୍ତ ସଙ୍କୀର୍ଣ୍ଣତାକୁ ପରିହାର କରି ବିଶ୍ୱର ବିସ୍ତୃତ ବଳୟରେ ନିମଜ୍ଜିତ କରେ ।

(୨୩) ମଣିଷ ତା ଭାବନାର ରୂପକଳ୍ପ । ନିଜକୁ ଶ୍ରେଷ୍ଠ ବୋଲି ଭାବିଲେ ସେ ଶ୍ରେଷ୍ଠ ହୋଇଯାଏ ଓ ବଡ଼ ବୋଲି ଭାବିଲେ ବଡ଼ପଣିଆ ପ୍ରକାଶିତ ହୁଏ ।

(୨୪) ମଣିଷର ପଞ୍ଚେନ୍ଦ୍ରିୟ ହେଉଛି ପଞ୍ଚ ପ୍ରଦୀପ ଓ ଆଲୋକର ଉତ୍ସ । ଏହାରି ମାଧ୍ୟମରେ ମାତୃଶକ୍ତିର ଆରାଧନା କରିବା ଉଚିତ । ମାତୃଶକ୍ତିର ଆଧାର ଦେବୀଙ୍କ ପାଖରେ ପଶୁ ବଳି ଦେବାର ଅର୍ଥ ନିଜର ଭୋଗ-ଅଭିଳାଷକୁ ବଳି ଦେବା ବୁଝାଇଥାଏ । ପଶୁ ହିଁ ମଣିଷ ଭିତରର ପାଶବିକତାର ପ୍ରତୀକ ।

(୨୫) ପ୍ରତିଦିନ କିଛି ସମୟ ପାଇଁ ଧ୍ୟାନ କର । ଏହା ମନରେ ଶାନ୍ତି, ଶକ୍ତି ଓ ଆନନ୍ଦ ସୃଷ୍ଟି କରି ପାରିବ ।

(୨୬) ମଣିଷ କେବଳ ତାର ଦୈନନ୍ଦିନ କର୍ତ୍ତବ୍ୟ ସମ୍ପାଦନରେ ପରିତୃପ୍ତ ହେବା ଉଚିତ ନୁହେଁ । ଆତ୍ମୋନ୍ନତି ପ୍ରତ୍ୟେକ କର୍ମର ନିହିତ ଉଦ୍ଦେଶ୍ୟ ।

(୨୭) ପାଠ୍ୟ ପୁସ୍ତକ ଉପରେ ଶିକ୍ଷାର ସଫଳତା ନିର୍ଭର କରେନାହିଁ । ଶିକ୍ଷକଙ୍କର ଉଦ୍ଦମ ଚରିତ୍ର ଓ ବ୍ୟକ୍ତିତ୍ୱ ଉପରେ ଏହା ମୁଖ୍ୟତଃ ନିର୍ଭର କରେ ।

(୨୮) ସାଂସାରିକ ଆମୋଦ-ପ୍ରମୋଦ ତଥା ସୁଖ-ସମୃଦ୍ଧିକୁ ନେଇ ମଣିଷ ଜୀବନର ସଫଳତା ତଥା ବିଫଳତାକୁ ବିଚାର କରାଯାଏ ନାହିଁ । ମଣିଷ ଶାରୀରିକ ଶକ୍ତିକୁ ନେଇ ସଂଗ୍ରାମ କରେ ନାହିଁ କିମ୍ବା ଜୀବନସଂଗ୍ରାମ କେବଳ ପାର୍ଥିବତାର ଅଭିବୃଦ୍ଧି ପାଇଁ ଅଭିପ୍ରେତ ନୁହେଁ ।

(୨୯) ଏ ସଂସାରରେ ପ୍ରତ୍ୟେକ ବ୍ୟକ୍ତି ଭଲ ଓ ମନ୍ଦର ସମାହାର । କାହାପ୍ରତି ଶ୍ରଦ୍ଧା ପୋଷଣ କରିବାକୁ ହେଲେ ବା କାହାକୁ ଭଲପାଇବାକୁ ହେଲେ ତାର ସମସ୍ତ ଦୋଷ-ଦୁର୍ବଳତା ସତ୍ତ୍ୱେ ତାକୁ ଭଲପାଇବାକୁ ପଡ଼ିବ ।

(୩୦) ଲୋକଶକ୍ତିକୁ କାମରେ ବିନିଯୋଗ କରିବାକୁ ହେଲେ ସେମାନଙ୍କ ରୁଚି ଅନୁକୂଳ କାମ ଯୋଗାଇଦେବା ଉଚିତ ! କୌଣସି ନିର୍ଦ୍ଦିଷ୍ଟ ପ୍ରକାରର କାମକୁ ସବୁଲୋକ କରିପାରିବେ ନାହିଁ ।

(୩୧) କୌଣସି ଏକ ଲକ୍ଷ୍ୟ ସାଧନ ପାଇଁ ଦୁଃଖ ନିର୍ଯାତନା ଶେଷରେ ସଫଳତା ଏକ ପ୍ରସ୍ଫୁଟିତ ବର୍ଣ୍ଣାଭ ପୁଷ୍ପରେ ପରିଣତ ହୁଏ ।

(୩୨) ଆତଙ୍କବାଦ, ଅରାଜକତା, ବିଶୃଙ୍ଖଳା ଉପରେ ମୋର ବିଶ୍ୱାସ ନାହିଁ କିମ୍ବା ଭୟ ମଧ୍ୟ ନାହିଁ । ମଣିଷ ଭିତରେ ଥିବା ଦେବତ୍ୱ ଓ ମାନବିକ ମୌଳିକତା ନେଇ ମୁଁ ଆସ୍ଥାବାନ । 'ମନୁଷ୍ୟ ଭିତରେ ଦେବତ୍ୱ ନିହିତ ଅଛି'—ଆମର ଏ ଧାରଣାରେ ସତ୍ୟତା ଥିଲେ, ମନୁଷ୍ୟ କେବେହେଲେ ବିପଥଗାମୀ ହୋଇପାରିବ ନାହିଁ ।

(୩୩) ଭାରତର ସ୍ୱାଧୀନତାପଥରେ ଦୃଢ଼ତାର ସହିତ ଅଗ୍ରେଇଯାଅ । ତ୍ରୁଟି-ବିଚ୍ୟୁତି, ଭୁଲ-ଭ୍ରାନ୍ତିକୁ ଭୟ କରନାହିଁ । ଆମର ସ୍ୱାଧୀନତା ଲାଭ କରିବାର ଅଧିକାର ଭିତରେ ଭୁଲକରି ଶିଖିବାର ଅଧିକାର ମଧ୍ୟ ଅନ୍ତର୍ଭୁକ୍ତ ।

✓(୩୪) ହେ ଯୁବବନ୍ଧୁଗଣ ! ନିଜ ହୃଦୟରେ ସ୍ୱରାଜର ବର୍ତ୍ତିକା ପ୍ରଜ୍ୱଳିତ କରିରଖ ଏବଂ ସେହି ଆଲୋକଶିଖାକୁ ନେଇ ପ୍ରତି ଘରେ ଘରେ ପହଞ୍ଚାଇଦିଅ । ଲୋକମାନଙ୍କର ହୃଦୟ ମୁକ୍ତିର ଆଲୋକରେ ଆଲୋକିତ ହେଉ ।

(୩୫) ବିଦେଶୀ ଶାସକର ନିର୍ଯାତନା ଆମେ ଭୋଗକଲେ ମଧ୍ୟ ସ୍ୱରାଜଲାଭ ପାଇଁ ଆମେ ଯେ ତା' ଭିତରେ ତାଲିମ ପାଉଛୁ, ଏଥିରେ ସନ୍ଦେହ ନାହିଁ ।

(୩୬) ମଣିଷଜୀବନରେ ଜାଗରଣ ସୃଷ୍ଟି ହେଲେ ତା' ସାରା ବ୍ୟକ୍ତିତ୍ୱର ସମ୍ପ୍ରସାରଣ ଘଟିଥାଏ । ତା' ଜୀବନର ପ୍ରତ୍ୟେକ ସ୍ତରରେ ନବଜୀବନର ସଞ୍ଚାର ଅନୁଭୂତ ହୁଏ ।

(୩୭) ସ୍ୱାଧୀନତା ଲାଭକରିବାର ଯୋଗ୍ୟତା ସ୍ୱରୂପ ମଣିଷ ପ୍ରଥମେ ତା' ନିଜକୁ ଜଣେ ସ୍ୱାଧୀନ ବ୍ୟକ୍ତି ବୋଲି ଭାବିବା ଉଚିତ । ସେ ସ୍ୱାଧୀନ ବୋଲି ଅନ୍ତରର ସହିତ ଅନୁଭବ କରିବା ଉଚିତ । ବନ୍ଧନମୁକ୍ତ ହେବାହିଁ ମଣିଷଜୀବନର ଏକମାତ୍ର ଲକ୍ଷ୍ୟ ।

(୩୮) ସ୍ୱାଧୀନତାର ପଥ ସରଳ ନୁହେଁ । ଏହା ଅତ୍ୟନ୍ତ ଦୁର୍ଗମ ଓ ବିପଦସଙ୍କୁଳ । ଏହାକୁ ଅତିକ୍ରମ କରିପାରିଲେ ମଣିଷ ଶାଶ୍ୱତ ଗୌରବର ଚରମ ଶିଖରରେ ପହଞ୍ଚି ପାରିବ ।

(୩୯) ବାର୍ଦ୍ଧକ୍ୟ ମଣିଷକୁ ବୃଦ୍ଧ କରି ଦେଇପାରେନା । ଯାହା ପାଖରେ ଅନ୍ତର୍ନିହିତ ଯୁବସୁଲଭ ସରସତା ଅଛି, ସେ ବୃଦ୍ଧ ହେଲେ ବି ଯୁବକ ଓ ଯାହା ପାଖରେ ଏହା ନାହିଁ ସେ ତରୁଣ ଯୁବକ ହେଲେ ବି ବୃଦ୍ଧ ।

(୪୦) ପୁଷ୍ପ ଯେତେବେଳେ ପ୍ରସ୍ଫୁଟିତ ହୁଏ ସେତେବେଳେ ତାର ପ୍ରତ୍ୟେକ ପାଖୁଡ଼ାରେ ସୌନ୍ଦର୍ଯ୍ୟ-ତଥା ସୁବାସ ମହକିଉଠେ । ମଣିଷ ଯେତେବେଳେ ତାର ଶୈଶବ, କୈଶୋର ଅତିକ୍ରମ କରି ଯୌବନରେ ପୂର୍ଣ୍ଣ-ମାନବତ୍ୱ ଗ୍ରହଣ କରେ, ସେତେବେଳେ ପ୍ରକୃତି ତା' ଭିତରେ ବହୁ ପ୍ରାକୃତିକ ବିଭବ ଭରିଦିଏ । ଶାରୀରିକ, ମାନସିକ ତଥା ନୈତିକ ପରିପୁଷ୍ଟି ଭିତରେ ମଣିଷ ତାର ଅଭିବୃଦ୍ଧିକୁ ଉପଭୋଗ କରେ ।

(୪୧) ମଣିଷଭିତରେ ଅନ୍ତର୍ନିହିତ ଆତ୍ମାର ଅଭ୍ୟୁତ୍ଥାନ ଥରେ ଆରମ୍ଭ ହେଲେ ତାହା ଅପରନ୍ତ କର୍ମର ଉତ୍ସରୂପେ ପ୍ରତ୍ୟେକ ଦିଗକୁ ବିସ୍ତାରିତ ହୋଇଥାଏ । ଆମ ଭିତରେ ଥିବା ସୁପ୍ତ ସୃଜନୀଶକ୍ତିର ରହସ୍ୟ କେବଳ ଉଦ୍‌ଘାଟନ କରିବାର ଆବଶ୍ୟକତା ରହିଛି ।

(୪୨) ପୃଥିବୀରେ ଯଦି କେବେ ଶାନ୍ତି ପ୍ରତିଷ୍ଠିତ ହେବ, ତା'ହେଲେ ତାହା କେବଳ ଯୁବସମାଜର ପ୍ରଚେଷ୍ଟାରେ ସମ୍ଭବ ହେବ ।

(୪୩) ସାରା ପୃଥିବୀରେ ମଣିଷର ପ୍ରକୃତି ପ୍ରାୟ ସମାନ । ସବୁ ଯୁଗରେ ସବୁ ଦେଶରେ ମଣିଷର ସମସ୍ୟା ମଧ୍ୟ ପ୍ରାୟ ସମାନ । ଯଦି ବିଭିନ୍ନ ଦେଶର ଯୁବସମାଜ ଭିତରେ ଆନ୍ତର୍ଜାତିକ ସହଯୋଗ ଓ ବୁଝାମଣା ଅତୁଟ ରହିବ, ତା'ହେଲେ ପ୍ରତ୍ୟେକେ ପ୍ରତ୍ୟେକର ଉନ୍ନତିରେ ସାହାଯ୍ୟ କରିପାରିବେ ।

(୪୪) ଆମ୍ଭମାନଙ୍କର ଦେଶ ପାଇଁ କମ୍ବା ଦେଶବାସୀଙ୍କ ପାଇଁ ପ୍ରକୃତ ପ୍ରେମ ନାହିଁ; ଫଳରେ ଆମ୍ଭମାନଙ୍କର ଅନ୍ତର୍ଦ୍ୱନ୍ଦ୍ୱର ମଧ୍ୟ ଅନ୍ତ ନାହିଁ । ଯୁଗେ ଯୁଗେ ମିର୍ଜାଫର ଓ ଉମୀଚାନ୍ଦଙ୍କ ପରି କୃତଘ୍ନ ଆମ ଭିତରେ ଜନ୍ମ ହେଉଛନ୍ତି ଓ ବଂଶ-ବିସ୍ତାର କରୁଛନ୍ତି । ଆମେ ଯଦି ମାତୃଭୂମି ପ୍ରତି ପ୍ରକୃତ ପ୍ରେମଭାବ ପୋଷଣ କରିପାରନ୍ତୁ, ତା'ହେଲେ ଭାରତୀୟ ଉତ୍କର୍ଷ ସଙ୍ଘଟିତ ହୁଅନ୍ତା ।

(୪୫) 'ଅଜ୍ଞାତ' ପ୍ରତି ଆମର ଭୟ ଅଧିକ; ତେଣୁ ଆମେ ବାହାର ପୃଥିବୀର ବିସ୍ତୃତ ଅପେକ୍ଷା ଘରର ପରିସରକୁ ବରଂ ପସନ୍ଦ କରୁ—ଫଳରେ ଆମେ ଦୁଃସାହସିକ ହୋଇ ପାରୁନାହିଁ । ହେ ଯୁବବନ୍ଧୁଗଣ ! ଅଜ୍ଞାତ, ଅପରିଚିତ, ଅପ୍ରକଟ ତଥା ବିଶ୍ୱର ଆବିଷ୍କାର ପାଇଁ ପାଗଳ ହୁଅ । ନିଜ ଘର ଅନ୍ଧକାର କୋଣରେ ବସିରହିବାର ଆଉ ସମୟ ନାହିଁ । ଦୂର ଦିଗ୍‌ବଳୟ ତୁମକୁ ହାତଠାରି ଡାକୁଛି । ଅସୀମର ଆହ୍ୱାନ ପ୍ରତି କର୍ଣ୍ଣପାତ କର ।

(୪୬) ଚାକିରି ଜୀବନ-ସମସ୍ୟାର ସମାଧାନ କରି ପାରିବ ନାହିଁ । ଚାକିରି ପାଇଁ ଆଶାୟୀ ବ୍ୟକ୍ତିଙ୍କ ତୁଳନାରେ ଚାକିରିସଂଖ୍ୟା ଯଥେଷ୍ଟ ଅଳ୍ପ; ତେଣୁ ଆମକୁ ଚାକିରିରୁ ଦୃଷ୍ଟି ଫେରାଇ ଧନ୍ଦାଗତ ଶିକ୍ଷା ଉପରେ ଆବଦ୍ଧ କରିବାକୁ ହେବ । ଆଗାମୀ ବଂଶଧରଙ୍କ ପାଇଁ ବ୍ୟବସାୟ-ବାଣିଜ୍ୟ ବୃତ୍ତିଗତ କାର୍ଯ୍ୟର ନୂତନ ଦିଗ୍‌ବଳୟ ସୃଷ୍ଟି ନକଲେ ଆମକୁ କ୍ଷୁଧା, ଅନାହାର ଭିତରେ ମୃତ୍ୟୁବରଣ କରିବାକୁ ହେବ । ଏଥିପାଇଁ ଧନ୍ଦାଭିତ୍ତିକ ଶିକ୍ଷାର ଆବଶ୍ୟକତା ରହିଛି ।

(୪୭) ଆମେ ଅନନ୍ତ ତଥା ଶାଶ୍ୱତ ସତ୍ତା ଭିତରୁ ଜନ୍ମଗ୍ରହଣ କରିଥିଲେ ମଧ୍ୟ ସ୍ୱାର୍ଥର ଖୋଳ ଭିତରେ ଆବଦ୍ଧ ହୋଇ ରହିଛୁ । ନିଜ ଭିତରେ ଥିବା ସେହି ପ୍ରଚ୍ଛନ୍ନ ମହାଶକ୍ତିରୁ ତିଳେମାତ୍ର ଉପଯୋଗ କରିବାକୁ ଆମେ ଅକ୍ଷମ ।

(୪୮) ମୋର ଧାରଣା, ସ୍ୱାଧୀନତା ପାଇଁ ଆରମ୍ଭ ହୋଇଥିବା କଂଗ୍ରେସର କାର୍ଯ୍ୟକ୍ରମ ଭାରତର ସ୍ୱାଧୀନତା ଯଥାଶୀଘ୍ର ଆଣିପାରିବ ନାହିଁ । ଯେଉଁ କାର୍ଯ୍ୟକ୍ରମ ଭାରତର ଆଶୁ ସ୍ୱାଧୀନତା ଆଣିପାରିବ, ତାର ସୂଚନା ତଳେ ଦିଆଗଲା :

(କ) ସାମ୍ୟବାଦୀ ଭିତ୍ତିରେ କୃଷକ ତଥା ଶ୍ରମିକମାନଙ୍କର ଏକ ସଂଗଠନ ସୃଷ୍ଟି କରିବା ।

(ଖ) କଠୋର ଶୃଙ୍ଖଳା ଭିତରେ ଯୁବସଂଗଠନ ମାଧ୍ୟମରେ ସ୍ୱେଚ୍ଛାସେବୀ ସଂସ୍ଥା ଗଠନ କରିବା ।

(ଗ) ସମାଜରୁ ଜାତିପ୍ରଥାର ସଂପୂର୍ଣ୍ଣ ବିଲୋପସାଧନ କରିବା ଓ ସମସ୍ତ ପ୍ରକାରର ସାମାଜିକ ତଥା ଧାର୍ମିକ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା ।

(ଘ) ବିଦେଶୀ ଜିନିଷ ବର୍ଜନ କରିବା ।

(ଙ) ନାରୀ ସଂଗଠନ ସୃଷ୍ଟି କରି ସେମାନଙ୍କୁ ନୂତନ କାର୍ଯ୍ୟକ୍ରମ ପ୍ରତି ଆକର୍ଷଣ କରିବା ।

(ଚ) ନୂତନ ଚିନ୍ତା, ଚେତନା ଓ କାର୍ଯ୍ୟକ୍ରମର ପ୍ରସାର ପାଇଁ ସାହିତ୍ୟ ସୃଷ୍ଟି କରିବା ।

(୪୯) ସାମ୍ୟବାଦର ନୂତନ ଭାବଧାରା ପାଶ୍ଚାତ୍ୟ ଜଗତରୁ ଭାରତକୁ ପ୍ରବେଶ କରୁଛି ଏବଂ ଅନେକଙ୍କ ଚିନ୍ତାଧାରାରେ ବିପ୍ଳବର ପଦଧ୍ୱନି ସୃଷ୍ଟି ହୋଇଛି । କିନ୍ତୁ ମନେରଖିବାକୁ

ହେବ, ସାମ୍ୟବାଦ ଏ ଦେଶ ପାଇଁ ଆଦୌ ନୂଆ ନୁହେଁ । କୌଣସି ଏକ ଚନ୍ତାଧାରାକୁ ସଂପୂର୍ଣ୍ଣ ତ୍ରୁଟିଶୂନ୍ୟ କିମ୍ବା ଏକାନ୍ତଭାବରେ ଯଥାର୍ଥ ବୋଲି ଭାବିବା ଉଚିତ ନୁହେଁ ।

(୫୦) ଜୀବନରେ ଯଦି ସଂଘର୍ଷ ନାହିଁ ଏବଂ ବିପଦକୁ ସମ୍ମୁଖୀନ ହେବାର ସୁଯୋଗ ନାହିଁ, ତା'ହେଲେ ଜୀବନର ସ୍ୱାଦୁ ପ୍ରାୟ ଅଧା କମିଯାଏ ।

(୫୧) ମୋର କାହିଁକି ମନେହୁଏ, ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଆଲ୍ସ ମନୋଭାବ ଆଦୌ ଅଭିନନ୍ଦନୀୟ ନୁହେଁ । ଏହା ମନୁଷ୍ୟର ଜୀବନ-ଲକ୍ଷ୍ୟକୁ ବ୍ୟାହତ କରେ ଓ ତାକୁ ନିମ୍ନଗାମୀ କରିଥାଏ ।

(୫୨) ମାନବର ବ୍ୟକ୍ତିଗତ ଜୀବନ ବିଶ୍ୱଜୀବନ ପାଇଁ ଏକ ପ୍ରତିଶ୍ରୁତି ।

(୫୩) ମଣିଷ ସବୁ ସମୟରେ ତା ଭାଗ୍ୟର ରୂପକାର ନୁହେଁ; ସମୟ-ସମୟରେ ସେ ମଧ୍ୟ ତା' ପରିସ୍ଥିତିର ଦାସ ।

(୫୪) ବିନା ବିପ୍ଳବରେ ମଣିଷ ଜୀବନରେ କୌଣସି ଗୌରବାବହ ସଫଳତା ହାସଲ କରିପାରେ ନାହିଁ ।

(୫୫) ଜୀବନର ଅସୁମାର ସନ୍ଦେହ ଓ ତାକୁ ଦୂର କରିବା ପାଇଁ ଅବିଶ୍ରାନ୍ତ ଚେଷ୍ଟାର ଅନ୍ୟ ନାମ ହେଉଛି ଅଗ୍ରଗତି ବା ପ୍ରଗତି ।

(୫୬) ଆଦୌ ଚେଷ୍ଟା ନକରିବା ଅପେକ୍ଷା, ଚେଷ୍ଟାକରି ସଫଳ ନହେବା ବରଂ ଶ୍ଳାଘଣୀୟ ।

(୫୭) ମହାତ୍ମା ଗାନ୍ଧିଙ୍କର ମୋ ଉପରେ କି ଧାରଣା ସୃଷ୍ଟି ହୋଇଛି, ମୁଁ ଜାଣେନା । ସେ ଯାହା ଧାରଣା କରିଥାନ୍ତୁ ନା କାହିଁକି, ତାଙ୍କର ଶ୍ରଦ୍ଧା ବିଶ୍ୱାସ ତଥା ଆଶୀର୍ବାଦ ମୋର କାମ୍ୟ । ଯଦି ଲୋକମାନଙ୍କର ଆସ୍ଥାଭାଜନ ହେବା ଦିଗରେ ମୁଁ ସଫଳ ହୋଇ ପାରିବି ଅଥଚ ଭାରତର ମହାନ୍ ନେତା ଜାତିର ଜନକ ବାପୁଜୀଙ୍କର ଆସ୍ଥାବାନ୍ ହୋଇ ପାରିବି ନାହିଁ, ତା'ହେଲେ ଏହା ହେବ ମୋପାଇଁ ସବୁଠାରୁ ବଡ଼ ଦୁର୍ଭାଗ୍ୟଜନକ ।

(୫୮) ବିଦେଶୀ ଶାସକକୁ ସ୍ୱାଧୀନତାର ଭିକ୍ଷା ମାଗି ଭାରତକୁ ସ୍ୱାଧୀନ କରାଯାଇ ନପାରେ । ବଳପୂର୍ବକ ଆମକୁ ଆମର ସ୍ୱାଧୀନତା ହାସଲ କରିବାକୁ ପଡ଼ିବ । ସ୍ୱାଧୀନତାର ମୂଲ୍ୟ ହେଉଛି ରକ୍ତ । ଏହି ମୂଲ୍ୟ ଦେଇ ଆମକୁ ସ୍ୱାଧୀନତା ହାସଲ କରିବାକୁ ହେବ । ତେବେ କେତେ ମୂଲ୍ୟ ଦେବାକୁ ହେବ ସେଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ ।

(୫୯) ଭାରତର ସ୍ୱାଧୀନତା ହାସଲ କରିବା ପାଇଁ ସଂଗ୍ରାମ କରିବାକୁ ଏକ ମୁକ୍ତି-ବାହିନୀ ଗଠନ କରିବାର ସ୍ୱପ୍ନ ମୁଁ ସାରା ଜୀବନ ଦେଖିଛି । ସ୍ୱାଧୀନତା ଲାଭ ପାଇଁ ଆମେ ସବୁ ଦିଗରୁ ଯୋଗ୍ୟ ହୋଇଥିଲେ ମଧ୍ୟ କେବଳ ଏଇ ଗୋଟିଏ ଦିଗରେ ଆମେ ପଛେଇ ଯାଇଛୁ ।

(୬୦) ବ୍ରିଟିଶ ଶାସନର ଭସ୍ମସ୍ତୂପ ଭିତରୁ ସ୍ୱାଧୀନ ଭାରତ ଜନ୍ମଲାଭ କରିବ । ଅତୀତରେ ଭାରତ ଯେପରି ସ୍ୱାଧୀନ, ସ୍ୱାଭିମାନୀ ଏବଂ ସମୃଦ୍ଧ ଥିଲା, ସେହିପରି ଭବିଷ୍ୟତ ଭାରତ ସ୍ୱାଧୀନ ଓ ସମୃଦ୍ଧ ହୋଇ ରହିବ ଏବଂ ଭାରତୀୟମାନେ ପୃଥିବୀର ଅନ୍ୟାନ୍ୟ ଜାତି ସହିତ ନିବିଡ଼ ଭ୍ରାତୃବନ୍ଧନ ଭିତରେ ଆବଦ୍ଧ ରହିବେ ।

(୬୧) ପ୍ରତ୍ୟେକ ଭାରତୀୟ ସ୍ୱାଧୀନତା ପାଇଁ ସାହସର ସହିତ ସଂଗ୍ରାମ କରିବା ଉଚିତ । ସେମାନଙ୍କର ଏକ ଦୃଢ଼ ଧାରଣା ରହିବା ଉଚିତ ଯେ ଆମ ପିତୃପୁରୁଷର ଏବଂ ଆମର ଜନ୍ମ ତଥା କର୍ମ ଭୂମି ଭାରତର ମୁକ୍ତି ପ୍ରଭାତ ଆସନ୍ନ ପ୍ରାୟ । ସ୍ୱାଧୀନ-ସୂର୍ଯ୍ୟର ଅରୁଣ ଆଭା ପୂର୍ବାଶାରେ ପ୍ରକଟିତ ହେଲାଣି ।

(୬୨) ସାରାଜୀବନ ମୁଁ ଭାରତମାତାର ସେବକ ଏବଂ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ମଧ୍ୟ ମାତୃଭୂମିର ସେବାରେ ଅନୁରକ୍ତ ରହିବି । ମୋର ବିଶ୍ୱସ୍ତତା ଭାରତ ପ୍ରତି ଅତୀତରେ ଥିଲା ଏବଂ ଚିରଦିନ ପାଇଁ ରହିବ ମଧ୍ୟ ।

(୬୩) ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ରେ ଉଦ୍‌ଘାଟିତ ହେଲାଦିନଠାରୁ ଭାରତରେ ଏକ ନବଜାଗରଣର ସୂତ୍ରପାତ ହେଲା । ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ପାଇଁ ବିଭିନ୍ନ ନୂତନ ସୂତ୍ର ପ୍ରୟୋଗ କରାଗଲା । ପ୍ରଥମ ଅବସ୍ଥାରେ ଅର୍ଥନୈତିକ ବାସନ୍ଦ (Economic boycott) ସ୍ୱରୂପ ବିଦେଶୀ ଜିନିଷର ବହିଷ୍କାର ଓ ଅନ୍ୟ ଦିଗରେ ଭାରତୀୟ ବିଦ୍ରୋହୀମାନଙ୍କର ଆତଙ୍କରାଜ । ଏହା ବିଫଳ ହେବାପରେ ମହାତ୍ମା ଗାନ୍ଧୀ ସେହି ମନସ୍ତାତ୍ତ୍ୱିକ ମୁହୂର୍ତ୍ତରେ ସତ୍ୟାଗ୍ରହ ତଥା ଅହିଂସ ଆନ୍ଦୋଳନକୁ ସଂଗ୍ରାମର ଅସ୍ତ୍ରରୂପେ ଗ୍ରହଣକଲେ । ମହାତ୍ମାଜୀଙ୍କ ସାର୍ଥକ ନେତୃତ୍ୱ ନେଇ ସାରା ଦେଶରେ ଏକ ଶକ୍ତିଶାଳୀ ଅନୁଷ୍ଠାନ ମୁଣ୍ଡ ଟେକିଲା । ବିନା ଅସ୍ତ୍ରରେ ଏକ ଦୁର୍ଦ୍ଧର୍ଷ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରି ତାହାକୁ କିପରି ଅଚଳ କରାଯାଇପାରିବ, ସେ ଦିଗରେ ମଧ୍ୟ ଶିକ୍ଷା ମିଳିଲା । ଏହା ହେଉଛି ଭାରତୀୟ ସ୍ୱାଧୀନତା-ସଂଗ୍ରାମର ବିଶେଷତ୍ୱ ।

(୬୪) ସ୍ୱାଧୀନତା କେହି କାହାକୁ ଦିଏନାହିଁ । ଭାରତୀୟମାନଙ୍କୁ ତ୍ୟାଗ ତଥା ସଂଗ୍ରାମ ବଳରେ ନିଜର ସ୍ୱାଧୀନତା ହାସଲ କରିବାକୁ ପଡ଼ିବ ।

(୬୫) ଭାରତୀୟ ଜୀବନଧାରାରେ ମୁସଲମାନମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ହିନ୍ଦୁ ମୁସଲମାନ ଭାରତର ଦୁଇଟି ଅବିଚ୍ଛିନ୍ନ ପ୍ରବାହ । ସେମାନଙ୍କ ଭିତରେ ଯେଉଁ ପ୍ରଭେଦ ବା ବିଭେଦ ଥିବା କଥା କୁହାଯାଉଛି, ତାହା କୃତ୍ରିମ ମନଗଢ଼ା ତଥା ସ୍ୱାର୍ଥ-ପ୍ରଣୋଦିତ ।

(୬୬) ନୈତିକତା ଓ ରାଜନୀତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ରାଜନୀତିରୁ ନୈତିକତାକୁ ବାଦ୍ ଦିଆଯାଇ ପାରିବନାହିଁ । ନୀତିହୀନ ରାଜନୀତି ରାଜନୀତି ନୁହେଁ ।

(୬୭) ମୁଁ ବର୍ତ୍ତମାନ ବୁଝୁଛି ଯେ ମଣିଷର ଜୀବନ ସମନ୍ୱିତ ଭାବରେ ଏକ। ଆମେ ଯଦି କୌଣସି ଏକ ଆଦର୍ଶ ଗ୍ରହଣ କରିବା, ତା' ହେଲେ ସେଥିପାଇଁ ସାରା ଜୀବନକୁ ଉତ୍ସର୍ଗ କରିବା ଉଚିତ; ଫଳରେ ତାହା ଆମର ଜୀବନକୁ ଆଲୋକିତ ତଥା ରୂପାନ୍ତରିତ କରିଦେଇ ପାରିବ।

(୬୮) ଯେଉଁ ଶିକ୍ଷା ପ୍ରଣାଳୀ ଭାରତୀୟ ଅବସ୍ଥା, ଭାରତୀୟ ଆବଶ୍ୟକତା, ଭାରତୀୟ ଇତିହାସ ଓ ସାମାଜିକତାକୁ ଉପେକ୍ଷା କରେ, ତାହା ବିଜ୍ଞାନସମ୍ମତ ନୁହେଁ ଓ ଏହା ଜନସାଧାରଣଙ୍କର ସମର୍ଥନ ଲାଭ କରିପାରିବ ନାହିଁ । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ମଧ୍ୟରେ ସାଂସ୍କୃତିକ ସମ୍ପର୍କ ସ୍ଥାପନ ପାଇଁ ଏବଂ ମନସ୍ତାତ୍ତ୍ୱିକ ଆଭିମୁଖ୍ୟ ଦୃଷ୍ଟିରୁ ଇଂରାଜୀଶିକ୍ଷା ଭାରତୀୟ ଶିଶୁମାନଙ୍କ ଉପରେ ଲଦିଦେବା ଆଦୌ ଉଚିତ ନୁହେଁ । ମାନସିକ ଅବସ୍ଥାର ପୂର୍ଣ୍ଣ-ବିକାଶପରେ ପାଶ୍ଚାତ୍ୟ ସମ୍ପର୍କରେ ଛାତ୍ରମାନେ ଆସିବାର ସୁଯୋଗ ପାଇଲେ, ସେମାନେ ଉଭୟ ସଭ୍ୟତା ତଥା ସଂସ୍କୃତିର ଭଲ ମନ୍ଦ ଦିଗ ବିଚାର କରି ପାରିବେ ।

(୬୯) ପରିସ୍ଥିତିର ତାଡ଼ନାରେ ମଣିଷ ଯେତେବେଳେ ନିଜର ଆତ୍ମୀୟ ତଥା ପ୍ରିୟ ବ୍ୟକ୍ତିମାନଙ୍କ ଗହଣରୁ ବିଦାୟ ନେବାକୁ ବାଧ୍ୟହୁଏ, ସେତେବେଳେ ସେ ସ୍ନେହ-ଶ୍ରଦ୍ଧାର ପ୍ରଭାବ ପ୍ରକୃତରେ ଉପଲବ୍ଧି କରେ ।

(୭୦) ପ୍ରକୃତି ପାଖରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କର ଓ ପ୍ରକୃତି ସହିତ କଥୋପକଥନ କର । ଆତ୍ମାର ଭାଷା ହିଁ ପ୍ରକୃତିର ଭାଷା । ତାହା ତୁମକୁ ନିଶ୍ଚୟ ଆନନ୍ଦ ଦେବ; ହୃଦୟରେ ଶାନ୍ତି ଦେବ ଏବଂ ମନୋବଳ ନିଶ୍ଚୟ ସୃଷ୍ଟି କରିବ । ମୋ ଜୀବନରେ ମୁଁ ଏହା ଉପଲବ୍ଧି କରିଛି । ପ୍ରକୃତିର ଲୁକ୍‌କାୟିତ ବିଭବ ମୁଁ ଅନୁସନ୍ଧାନ କରିଛି, ଏହା ମୋର ମାନସିକ ଏକାଗ୍ରତା ରକ୍ଷାଦିଗରେ ସାହାଯ୍ୟ କରିଛି । ପ୍ରସ୍ଫୁଟିତ ପୁଷ୍ପ, ନବୋଦ୍ୟମ କିଶଳୟ, ତଥା ବିକାଶୋନ୍ମୁଖୀ ଉଦ୍ଭିଦ ଭିତରେ ଯେଉଁ ଅବର୍ଣ୍ଣନୀୟ ଆନନ୍ଦ ଭରପୂର ହୋଇ ରହିଛି, ତାହା କେତେ ଯେ ମୋତେ ଆନନ୍ଦ ଦେଇଛି, ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ ।

(୭୧) କାରଣ ଅଜ୍ଞାତ ଥିବା ପର୍ଯ୍ୟନ୍ତ ମାନସିକ ଦୁର୍ବଳତା ତଥା ଶାରୀରିକ ରୋଗ ବୃଦ୍ଧିଲାଭ କରିଥାଏ । କାରଣର ପ୍ରକାଶରେ ଏହା ପ୍ରଶମିତ ହୁଏ । ମାନସିକ ବିଶ୍ଳେଷଣ ମାଧ୍ୟମରେ ମଣିଷ ଯେଉଁ ମୁହୂର୍ତ୍ତରେ ତାର ମାନସିକ ଦ୍ୱନ୍ଦ୍ୱ ତଥା ସଂଘର୍ଷର ମୂଳ କାରଣ ଜାଣିପାରେ, ସେହି ମୁହୂର୍ତ୍ତରେ ତାହା ଦୂର ହୋଇଯାଇପାରେ ।

(୭୨) ଯେତେବେଳେ ଜ୍ଞାତ ଏବଂ ଅଜ୍ଞାତ ସମ୍ପୂର୍ଣ୍ଣ ଭାବରେ ଏକ ହୋଇଯାଆନ୍ତି ଏବଂ ଉଭୟ ଭିତରେ ଭିନ୍ନତା ରହେ ନାହିଁ, ସେତିକିବେଳେ ମଣିଷ ପ୍ରକୃତ ଜ୍ଞାନର ଅଧିକାରୀ ହୋଇପାରେ । ମଣିଷର ଉନ୍ନତ ଅବଚେତନା ମଧ୍ୟରେ ଏହାହିଁ ସମ୍ଭବ ।

(୭୩) ସ୍ୱାମୀ ବିବେକାନନ୍ଦଙ୍କ ମତ ସହିତ ମୁଁ ଏକମତ ଯେ ମନୁଷ୍ୟର ଗତି ମିଥ୍ୟାରୁ ସତ୍ୟ ଆଡ଼କୁ ନୁହେଁ; ବରଂ ସତ୍ୟରୁ ମହାସତ୍ୟ ଆଡ଼କୁ ସେ ଅଗ୍ରସର ହୋଇଥାଏ ।

(୭୪) ପ୍ରେମ ହେଉଛି ବାସ୍ତବତାର ସର୍ବଶ୍ରେଷ୍ଠ ବିଭବ । ଏହା ବିଶ୍ୱ ସୃଷ୍ଟିର ମୂଳମନ୍ତ୍ର ଓ ମାନବ ଜୀବନର ସର୍ବୋତ୍ତମ ଅବଲମ୍ବନ । ମୁଁ ମୋ ଚତୁଃପାର୍ଶ୍ୱରେ ପ୍ରେମର ପରିପୂର୍ତ୍ତି ଦେଖିବାକୁ ପାଉଛି । ମୋ ନିଜ ଭିତରେ ମଧ୍ୟ ମୁଁ ପ୍ରେମ-ପ୍ରବୃତ୍ତିର ପ୍ରସ୍ପନ୍ଦନ ଅନୁଭବ କରୁଛି । ମୋ ନିଜର ପୂର୍ଣ୍ଣତା ପାଇଁ ତଥା ଜୀବନର ପୁନର୍ଗଠନ ପାଇଁ ମୁଁ ପ୍ରେମ ଆବଶ୍ୟକ କରେ ।

(୭୫) "ଏ ସଂସାର ମରଣଶୀଳ ଓ ଏଠାରେ ପ୍ରତ୍ୟେକଙ୍କୁ ମୃତ୍ୟୁର ସମ୍ମୁଖୀନ ହେବାକୁ ପଡ଼େ । ମନୁଷ୍ୟ ମୃତ୍ୟୁବରଣ କଲେ ମଧ୍ୟ ତାର ଆଦର୍ଶ, ନୀତି ଓ ସ୍ୱପ୍ନ କେବେହେଲେ ଲୋପ ପାଏ ନାହିଁ ।"

# ସହାୟକ ପୁସ୍ତକ


| | |
|---|---|
| 1. Subhash Chandra Bose | Dr. Girija Ku. Mukharjee |
| 2. Selected Speeches of Subhash Bose | S. A. Ayer<br>Publication Division of India |
| 3. Mission of Life | Subhash Ch. Bose<br>Thacker Spink & Co. Ltd. Calcutta. |
| 4. Netaji's Life and Writing | Thacker Spink & Co. Ltd. Calcutta |
| 5. ମୁକ୍ତିପଥେ ସୈନିକ | ପବିତ୍ରମୋହନ ପ୍ରଧାନ |
| 6. ମହାନିଷ୍କ୍ରମଣ | କଣଲସ୍ଥ ବାନାଜୀ |
| 7. ଆଜାଦ ହିନ୍ଦ୍ ଫୌଜର କାହାଣୀ | National Book Trust of India |
| 8. Collected Works of Mahatma Gandhi | Publication Division of India. |


---